# ଚର୍ଚ୍ଚିତ ବ୍ୟଙ୍ଗ
# ଭୂପେନ୍ ମହାପାତ୍ର

ଭୂପେନ୍ ମହାପାତ୍ର


ପବ୍ଲିଶିଂ ହାଉସ୍
ଭୁବନେଶ୍ୱର

Email : contact@gyanajuga.com Website : www gyanajuga.com

# ଚର୍ଚ୍ଚିତ ବ୍ୟଙ୍ଗ

ଲେଖକ
ଭୂପେନ୍ ମହାପାତ୍ର

ପ୍ରକାଶନ ଉପଦେଷ୍ଟା
ଶ୍ରୀ ବିନୋଦ ବିହାରି ବିଶୋଇ
ମୋବାଇଲ୍ : ୯୯୩୭୬୯୪୭୮୧

ପ୍ରକାଶକ
ପବ୍ଲିଶିଂ ହାଉସ୍
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୩୬୨୦୯୧

ପ୍ରଥମ ପ୍ରକାଶ - ୨୦୧୪

ଅକ୍ଷର ବିନ୍ୟାସ :
ବି. ଏନ. ଗ୍ରାଫିକ୍ସ
ଏନ୍-୫/୨୩୮, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫

ମୁଦ୍ରକ
କ୍ରିଏଟିଭ୍ ଅଫସେଟ୍
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୩୬୨୦୯୧

ପ୍ରଚ୍ଛଦ
ସୌଜନ୍ୟ, 'କଥା'

ମୂଲ୍ୟ : ଟ. ୧୫୦/-

---

Published by Smt. Lizashree Bisoi on behalf of Publishing House
N-6/428, IRC Village, Nayapalli, Bhubaneswar-751015, Odisha
Ph. : (0674) 2362091

# ମୁଖବନ୍ଧ

ସାହିତ୍ୟରେ ବ୍ୟଙ୍ଗ ଏକ ଶକ୍ତିଶାଳୀ ମାଧ୍ୟମ । ଏ କଥା ସମସ୍ତେ ସ୍ୱୀକାର କରନ୍ତି । କାରଣ ତାହା ପାଠକ ପାଖରେ ଖୁବ ଶୀଘ୍ର ପହଞ୍ଚିଯାଏ ଓ ଏକାତ୍ମ ମଧ୍ୟ ହୋଇଯାଏ । ଭାରତୀୟ ସାହିତ୍ୟରେ ବ୍ୟଙ୍ଗର ଗୋଟାଏ ଉଚ୍ଚ ପରମ୍ପରା ରହିଛି । କୃଷଣଚନ୍ଦ୍ର, ପ୍ରେମଚାନ୍ଦ, ହରିଶଙ୍କର ପରସାଇ, ଇଂରାଜୀରେ ଲେଖୁଥିବା ଆର. କେ. ନାରାୟନ ଏବଂ ଖ୍ୟାତନାମା ହିନ୍ଦୀ ସାହିତ୍ୟିକ କମଲେଶ୍ୱର ପ୍ରଭୃତିଙ୍କ ଗଳ୍ପୋପନ୍ୟାସ ସବୁ ବ୍ୟଙ୍ଗର ନୂତନ ଦିଗନ୍ତ ଉନ୍ମୋଚିତ କରିଛି । ଓଡ଼ିଆ ସାହିତ୍ୟରେ ମଧ୍ୟ ସେ ଉଦାହରଣର ଅଭାବ ନାହିଁ । ଆଧୁନିକ କଥା ସାହିତ୍ୟର ଜନକ ଫକୀର ମୋହନଙ୍କଠାରୁ ଏ ଯାବତ୍ ବହୁ କବି ଓ ଲେଖକ ତାଙ୍କ ସାହିତ୍ୟରେ ବ୍ୟଙ୍ଗକୁ ଗୋଟାଏ ଶକ୍ତିଶାଳୀ ମାଧ୍ୟମ ହିସାବରେ ଗ୍ରହଣ କରିଛନ୍ତି । କିନ୍ତୁ କେମିତି କେଜାଣି ଗୋଦାବରୀଶ ମହାପାତ୍ରଙ୍କ ପରେ ମନେ ହେଉଛି ଆମେ ଯେମିତି ସେଠୁ ଦୂରେଇ ଯାଉଛୁଁ । କାହିଁକି ? ଆମେ ହସିପାରୁନୁ ନା ଆମଠୁ ହସ କିଏ ଛଡ଼େଇ ନେଇଛି ? ବ୍ୟଙ୍ଗ ଏଇ କାରଣ ଓ କର୍ତ୍ତାମାନଙ୍କୁ ଭିଡ଼ିଆଣି ପାଠକ ସାମନାରେ ଠିଆ କରାଏ ଏବଂ ଚାବୁକରେ ପ୍ରହାର କରେ ।

ମୋର ଅନେକଗୁଡ଼ିଏ ବ୍ୟଙ୍ଗ ଗଳ୍ପ ଅଛି । ପ୍ରଥମରୁହିଁ ମୁଁ ଆମ ବ୍ୟଙ୍ଗ ପରମ୍ପରା ଦ୍ୱାରା ଅନୁପ୍ରାଣିତ ହୋଇଯାଇଥିଲି ବୋଲି ବୋଧେ ମୋର ପ୍ରାୟ ପ୍ରତ୍ୟେକ ଗଳ୍ପରେ ବ୍ୟଙ୍ଗର ଛିଟା ଥାଏ । ହେଇପାରେ, ଏହାହିଁ ଗୋଟାଏ କାରଣ ଯେ ମୋର ଗଳ୍ପଗୁଡ଼ିକ ସହଜରେ ପାଠକୀୟ ଶ୍ରଦ୍ଧା ପାଇଥାଏ । ବ୍ୟଙ୍ଗ ଭିତ୍ତିଭୂମିରେ ଗଠିତ ମୋର 'ଏମ.କେ. ଗାନ୍ଧୀ' ଏଥିପାଇଁ ସାରା ଭାରତ ବୁଲିସାରିଲାଣି ଅବଶ୍ୟ 'ଇଣ୍ଡିଆନ ଲିଟରେଚରରେ' ପ୍ରକାଶ ପାଇଲାପରେ । ମୁଁ ସେ ଧାରା ବଜାୟ ରଖିଛି ।

୧୯୯୭ରୁ ୨୦୦୦ ଭିତରେ ପ୍ରକାଶିତ ଦୁଇଟି ବ୍ୟଙ୍ଗ ଗଳ୍ପ ସଂକଳନ ମୋର ଅଛି । 'ଭାରତ ଭାଗ୍ୟ ବିଧାତା' ଓ 'ଚନ୍ଦ୍ରସେଣାର ଚନ୍ଦ୍ରାଲୋକ' । ତାପରେ ମୋର ଆହୁରି ଅନେକ ବ୍ୟଙ୍ଗ ଗଳ୍ପ ଗତ ଦଶ-ବାର

ବର୍ଷ ଭିତରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି । ସେସବୁ ପ୍ରଚୁର ପାଠକୀୟତା ହାସଲ କରିଛି । ସେସବୁକୁ ଏକାଠି କରିବାକୁ ଚେଷ୍ଟା କରୁଥିଲାବେଳେ ପୁରୁଣା ଅତ୍ୟନ୍ତ ଲୋକପ୍ରିୟ ଗଳ୍ପଗୁଡ଼ିକୁ ପୁଣି ଥରେ ପ୍ରକାଶ କରିବାକୁ ଅନୁରୋଧ ଆସିଲା । ମୋର ଏ 'ଚର୍ଚ୍ଚିତ ବ୍ୟଙ୍ଗ'ରେ ସେମାନଙ୍କ ଭିତରୁ କିଛି ଆଣି ମିଶାଇ ଦିଆଯାଇଛି । ପ୍ରତ୍ୟେକ ଗଳ୍ପର ପ୍ରକାଶକାଳ ଓ ପତ୍ରିକାର ନାମ (ଅଳ୍ପ କେତୋଟିକୁ ବାଦ୍‌ଦେଇ) ଏଥିରେ ଉଲ୍ଲେଖ ଅଛି । ମୁଁ ଦୀର୍ଘଦିନ ଧରି ପ୍ରଜାତନ୍ତ୍ରର 'ଲଘୁପାକ' ସ୍ତମ୍ଭରେ ଲେଖୁଥିଲି । ତେଣୁ ଏ ସଂକଳନର ଅଳ୍ପ କେତୋଟି ଗଳ୍ପକୁ ଛାଡ଼ି ଅନ୍ୟସବୁ ପ୍ରଜାତନ୍ତ୍ରରେ ପ୍ରକାଶିତ । ଅନ୍ୟଗୁଡ଼ିକ ସମ୍ବାଦ, କଥା, ଧରିତ୍ରୀ ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ । ସଂକଳନର ପ୍ରଥମ କେତୋଟି ଗଳ୍ପରେ ପ୍ରକାଶନ ବିଷୟ ଲେଖା ନ ଥିଲେ ମଧ୍ୟ ସେଗୁଡ଼ିକ ସେଇ 'ଲଘୁପାକ'ରେ ପ୍ରକାଶିତ । ତେଣୁ ମୋର ବ୍ୟଙ୍ଗ ଲେଖା ପଛରେ 'ଲଘୁପାକ'ର ଗୋଟାଏ ବଡ଼ ଭୂମିକା ଥିଲା । ତାର ପାଠକୀୟ ଶ୍ରଦ୍ଧା (ଚିଠି) ଏବେବି ମୋ ପାଖରେ ଅମଳିନ ହୋଇ ରହିଛି ।

ଆଜି ଅନେକ ଦିନ ପରେ ପୁଣିଥରେ ସେସବୁ ପାଠକମାନଙ୍କ ସାମନାକୁ ଆସୁଥିବାରୁ ମୁଁ ପ୍ରକାଶକ ବଂଧୁ ବିନୋଦ ବିହାରି ବିଶୋଇଙ୍କୁ ଧନ୍ୟବାଦ ଜଣାଉଛି ।

ଭୂପେନ୍ ମହାପାତ୍ର

# ସୂଚିପତ୍ର

***

# କାଲମାନଙ୍କ ରାଜ୍ୟରେ

ସେଦିନ ଚନ୍ଦ୍ରଲୋକର ମୁଖ୍ୟମନ୍ତ୍ରୀ ତାଙ୍କ ମନ୍ତ୍ରୀମଣ୍ଡଳର କେତେଜଣ ପାଖ ଲୋକଙ୍କୁ ରାତି ପ୍ରାୟ ଦଶଟାବେଳେ ନିଜ ବାସଭବନକୁ ଡକାଇଲେ । ସେମାନେ ଆସିବାରୁ ମୁଖ୍ୟମନ୍ତ୍ରୀ ସେମାନଙ୍କୁ କହିଲେ, 'ଗୋଟିଏ ଜରୁରୀ କଥାରେ ମୁଁ ତୁମମାନଙ୍କୁ ଡକାଇଲି । କଥାଟା ପ୍ରଘଟ କରିବ ନାହିଁ । ମାନେ, ଅନ୍ତତଃ ସାମ୍ବାଦିକମାନେ ଯେମିତି ତୁମ ପେଟରୁ କଥାଟା ବାହାର କରି ନ ଦିଅନ୍ତି । ତେଣୁ ଟିକିଏ ସାବଧାନ ଥିବ ।'

ତା'ପରେ ସମସ୍ତଙ୍କୁ ପାଖକୁ ଡାକିଲେ । ସମସ୍ତେ ପାଖକୁ ଘୁଞ୍ଚି ଆସିବାରୁ ସେ ଖୁବ୍ ଧୀର ଗଳାରେ କହିଲେ, ମୁଁ ଶୁଣୁଚି ଆମ ରାଜ୍ୟରେ ଏବେ ମରୁଡ଼ି ପଡ଼ିଚି । ତମେମାନେ ଏ ବିଷୟରେ କିଛି ଜାଣିଚ କି ?

ଅର୍ଥମନ୍ତ୍ରୀ କହିଲେ, 'କେଉଁଠି ପଡ଼ିଚି ?'

ଅବକାରୀ ମନ୍ତ୍ରୀ ପଚାରିଲେ, 'କେବେ ପଡ଼ିଲା ?'

ଖାଦ୍ୟମନ୍ତ୍ରୀ କହିଲେ, 'ମୁଁ ତ ଆଜି ପୁରୀ ଜଗନ୍ନାଥ ମନ୍ଦିରରୁ ଫେରୁଚି । ସେଠି ମୋ ନାତିର ବ୍ରତ ପାଇଁ ଗୋଟିଏ କାଙ୍ଗାଳ ଭୋଜନର ଆୟୋଜନ କରିଥିଲି । ହଜାରେରୁ ବେଶୀ ଲୋକ ଖାଇଲେ । ସେଠି ତ ମୁଁ ମରୁଡ଼ିକୁ ଦେଖିନି ।' କେହି ବି କିଛି କହୁ ନଥିଲେ ସେ କଥା ।

ରେଭନ୍ୟୁ ମନ୍ତ୍ରୀ କହିଲେ, 'ମୁଁ ତ ଏବେ ଏବେ ଦିଲ୍ଲୀରୁ ଆସିଲି ବିମାନରେ । କାହିଁ ରାସ୍ତାରେ ତ ମୁଁ ତାକୁ ଦେଖିନି । କେହି ସେ କଥା କଥାବାର୍ତ୍ତା ହେଉଥିବାର ମଧ୍ୟ ଶୁଣିନି ।'

ମୁଖ୍ୟମନ୍ତ୍ରୀ ଟିକିଏ ବିରକ୍ତ ହେଲେ ବୋଧେ । ସେ କହିଲେ, ମୁଁ ଦେଖୁଛି ତମେମାନେ ମୋଟେ ରାଜ୍ୟର କିଛି ଖବର ରଖୁନା । ଏଇଟାତ ମୋଟେ ଶୁଭ

ଲକ୍ଷଣ ନୁହେଁ । ଯେଉଁମାନେ ତମକୁ ଭୋଟ ଦେଇଛନ୍ତି, ସେମାନେ ତମଠୁ ଅନେକ କିଛି ଆଶା କରନ୍ତି ।

ଅର୍ଥମନ୍ତ୍ରୀ କହିଲେ, ମୁଁ ତ ଏଇ କେତେ ଦିନ ହେଲା ଟିକିଏ କାମରେ ବ୍ୟସ୍ତ ଥିଲି । ମୋତେ ଟିକିଏ ସମୟ ଦିଅନ୍ତୁ । ମୁଁ କାଲି ଖବର ନେଇ କହିବି ।

ଅନ୍ୟମାନେ ବି ସେଇକଥା କହିଲେ । ମୁଖ୍ୟମନ୍ତ୍ରୀ କିନ୍ତୁ ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ସେ କହିଲେ ଏହା ଉଚିତ୍ ହେଉ ନାହିଁ । ତଥାପି ତମେମାନେ ଯେତେବେଳେ କହୁଚ ମୁଁ କାଲି ପର୍ଯ୍ୟନ୍ତ ସମୟ ଦେଉଚି । କିନ୍ତୁ ମନେରଖ ଖବର କାଗଜବାଲାଙ୍କ ସହିତ ଏ ବିଷୟରେ ମୋଟେ କଥା ହେବ ନାହିଁ । ସେମାନେ କଥାଟାକୁ ତିଳକୁ ତାଳ କରିଦେବେ । ତା' ହେଲେ ଆମ ଉଦ୍ଦେଶ୍ୟ ପଣ୍ଡ ହେବ ।

ସମସ୍ତେ ଏକାଥରେ କହି ଉଠିଲେ ଆମେ ସେମାନଙ୍କୁ ପାଖ ପୂରେଇ ଦେବୁ ନାହିଁ ।

ମୁଖ୍ୟମନ୍ତ୍ରୀ ଅର୍ଥମନ୍ତ୍ରୀଙ୍କୁ ପାଖରେ ଥିବା ଟେଲିଫୋନ୍ ଆଡ଼କୁ ଆଙ୍ଗୁଳି ଦେଖାଇ କହିଲେ, ଟିକିଏ ଚିଫ୍ ସେକ୍ରେଟାରୀଙ୍କୁ ଫୋନ ଲଗେଇଲେ ।

ଅର୍ଥମନ୍ତ୍ରୀ ଫୋନ୍ ଲଗେଇ ମୁଖ୍ୟମନ୍ତ୍ରୀଙ୍କୁ ଧରାଇଦେଲେ । ମୁଖ୍ୟମନ୍ତ୍ରୀ ତାଙ୍କୁ ପଚାରିଲେ, 'ଆପଣ ଆମ ରାଜ୍ୟକୁ ମରୁଡ଼ି ଆସିଥିବା କଥା କିଛି ଜାଣନ୍ତି କି ?

ଚିଫ୍ ସେକ୍ରେଟାରୀ ଟିକିଏ ଚିନ୍ତା କରି କହିଲେ, 'ଆଜି ତ ଡାଇରେକ୍ଟର ଅଫ୍ ଇଣ୍ଟେଲିଜେନ୍‌ସ ମୋ ପାଖରେ ଆସି ଘଣ୍ଟାଏ କାଳ ବସି ବସି ଗଲେ । କାହିଁ, ସେ କଥା ତ କିଛି କହିଲେନି ।' ଟିକିଏ ରହି ସେ କହିଲେ, 'ମୁଁ କେତେଥର କହିଲିଣି ଆମ ରାଜ୍ୟର ସୀମାଗୁଡ଼ିକ ପୂରାପୂରି ସିଲ୍ କରି ଦେବାକୁ ।'

ମୁଖ୍ୟମନ୍ତ୍ରୀ ଏଥିରେ ଆହୁରି ବିରକ୍ତ ହେଲେ । ସେ କହିଲେ ଆପଣ ବୋଧେ ମରୁଡ଼ି ବିଷୟରେ ମୋଟେ କିଛି ଜାଣନ୍ତି ନି । ସେ ଟେଲିଫୋନ ଛାଡ଼ି ଦେଲେ ।

କଥାଟା ଚିଫ୍‌ଙ୍କୁ ବଡ଼ ବାଧିଲା । ସେ ତ ସେତେବେଳେ ଶୋଇବାକୁ ଯାଉଥିଲେ । ଆଉ ଶୋଇବେ କ'ଣ ? ଗୋଟିଏ ରାଜ୍ୟର ଚିଫ୍ ସେକ୍ରେଟାରୀ

ହୋଇ ସେ ମରୁଡ଼ି କଥା ମୋଟେ କିଛି ଜାଣି ନାହାନ୍ତି ଅଥଚ ଚିଫ୍ ମିନିଷ୍ଟର ଜାଣିଲେଣି । ତାଙ୍କୁ ବଡ଼ ଖରାପ ଲାଗିଲା ।

ସେ ସଂଗେ ସଂଗେ ସେକ୍ରେଟାରୀ କଲଚରଙ୍କୁ ଫୋନ୍ କଲେ । ତାଙ୍କୁ ସେତେବେଳେ ଛାଇ ନିଦ ଆସି ଯାଇଥିଲା । ଚିଫ୍ ତାଙ୍କୁ ପଚାରିଲେ, 'ହଇଓ ତମେ ସବୁ କଅଣ ଆଜିକାଲି ବହୁତ ଲେଖାଲେଖି କରୁଚ ପରା ?

ସେକ୍ରେଟାରୀ କହିଲେ, ବହୁତ ଆଉ କ'ଣ ସାର ! ଏଇ ସପ୍ତାହକୁ ମାତ୍ର ଚାରି ପାଞ୍ଚଟା । ସେମାନେ ମାଗୁଛନ୍ତି ଯେତେବେଳେ ମୁଁ ଆଉ ମନା କରନ୍ତି କେମିତି ଯେ ? କହୁଚନ୍ତି ମୋ ଲେଖା ଗୋଟିଏ ସପ୍ତାହ ନ ଦେଖିଲେ ପାଠକମାନେ ବାରମ୍ବାର ଫୋନ କରୁଛନ୍ତି ।'

ଚିଫ୍ କହିଲେ, 'ଭଲ ଭଲ । କିନ୍ତୁ ଏ ମରୁଡ଼ି କଥା କଅଣ କିଓ ?'

ସେକ୍ରେଟାରୀ କହିଲେ, 'ମୁଁ ତ ସାର ମରୁଡ଼ି କଥା କିଛି ଲେଖିନି । ସେସବୁ କଣ୍ଟ୍ରୋଭରସିଆଲ୍ କଥାରେ ମୁଁ ପଶେନା ।'

ଚିଫ୍ କହିଲେ, 'ତୁମେ କଅଣ ଫକୀର ମୋହନଙ୍କ କଥା ଲେଖିଚ ପରା । କିଏ ଜଣେ ମୋତେ କହୁଥିଲା ବୋଧେ ।'

ସେକ୍ରେଟାରୀ ଟିକିଏ ଶଙ୍କି ଗଲେ ଓ କହିଲେ, 'ସାର ମୁଁ ଫକୀର ମୋହନଙ୍କ କଥା ଲେଖିଚି ସତ । କିନ୍ତୁ ସେଥିରେ ମରୁଡ଼ି କଥା ଥିଲା କିନା ମୁଁ ଟିକେ ଚେକ୍ କରି କହିବି ।'

ଚିଫ୍ କହିଲେ କୋଉଠୁ ଚେକ୍ କରିବ ?

ସେକ୍ରେଟାରୀ କହିଲେ, 'ଅସଲ କଥାଟା ହେଲା ଅଫିସରେ ଆଜି କାଲି ଏତେ କାମର ଚାପ ପଡୁଛି ଯେ ମୁଁ ସେସବୁ ଲେଖାଲେଖି କାମ ଦୁଇଟା କିରାଣୀକୁ ଦେଇ ଚଳେଇ ନିଏ । ଯଦି ସେମାନେ କିଛି ପୃଷ୍ଠା ଓଲଟପାଲଟ କରି ଦେଇଥିବେ ।'

ଚିଫ୍ କହିଲେ, 'ଏତେବେଳେ ବୁଝିଲି ଗୋଳମାଳଟା ତାହେଲେ ଏଇଠି ହେଇଛି । ତମେ ଟିକେ ଭଲ ଲୋକ ଦେଖି ଏ ସବୁକାମ କରାଅ । ଜାଣିଚନା କଥାଟା ଚିଫ୍ ମିନିଷ୍ଟରଙ୍କ କାନକୁ ଗଲାଣି ।

ସେକ୍ରେଟାରୀ କହିଲେ କିନ୍ତୁ ସାର ଫକୀରମୋହନଙ୍କ ସମୟରେ ମରୁଡ଼ିକୁ ରେଭେନ୍‌ସା ସାହେବଙ୍କ ଲୋକମାନେ ମଧ୍ୟ ସ୍ୱୀକାର କରୁ ନ ଥିଲେ ବୋଲି ମୋ ପାଖରେ ନିର୍ଦ୍ଦିଷ୍ଟ ପ୍ରମାଣ ଅଛି ।

ଚିଫ୍ କହିଲେ, 'ଧେତ୍ ତମେ କଥାଟା ମୋତେ ବୁଝୁନା । ଆଜି କାଲି ପଲିଟିକ୍‌ସ୍‌ର ତ ହେଡ ଏଣ୍ଡ ଟେଲ୍ କିଛି ନ ଥାଏ । ହେଇ ଦେଖୁନ କେତେ ଦିନର ପୁରୁଣା କେଶ୍ ସବୁକୁ ଏବେ କୋର୍ଟକୁ ଟଣା ହେଲାଣି । ସେଇ ଦୃଷ୍ଟିରୁ ତମ ଫକୀରମୋହନଙ୍କ ମରୁଡ଼ି ପାଇଁ ଆମକୁ ଯେ ଦୋଷୀ ସାବ୍ୟସ୍ତ କରା ନ ଯିବ ସେ କଥା କିଏ କହିବ ?'

ସେକ୍ରେଟାରୀ ହସିଲେ । କହିଲେ, 'ସାର୍ ଏ କଥାଟା ଅସମ୍ଭବ ପରି ଲାଗୁଛି । ମୋର ମନେ ହେଉଚି ଏଇଟା ଆଉ ଗୋଟିଏ କୌଣସି ମରୁଡ଼ି କଥା ।'

ଚିଫ୍ କହିଲେ, 'ମୋତେ ବି ସେମିତି ଲାଗୁଚି । ଆଚ୍ଛା, ତମେ ଟିକେ କଲେକ୍ଟରକୁ ପଚାରି ମୋତେ କାଲି କହିବ । ଆଜି ମୋତେ ନିଜ ମାଡ଼ିଲାଣି ।'

ସେକ୍ରେଟାରୀ ମନେ ମନେ ବିରକ୍ତ ହେଲେ । ଭାବିଲେ ଶେଷରେ ଭାଲୁ ଲାଙ୍ଗୁଡ଼ଟା ମୋତେ ଧରାଇ ଦେଲେ । କିନ୍ତୁ ଉପାୟ କ'ଣ । ଚିଫ୍ ଯେତେବେଳେ କହୁଛନ୍ତି କରିବାକୁ ପଡ଼ିବ ।'

ସେ କଲେକ୍ଟରଙ୍କୁ ଫୋନ୍ କଲେ । କଲେକ୍ଟର ଧଡ଼ପଡ଼ ହୋଇ ବିଛଣାରୁ ଉଠି ବସିଲେ । ସବୁକଥା ସେକ୍ରେଟାରୀଙ୍କଠାରୁ ଶୁଣି କହିଲେ, 'ମୁଁ ବୁଝି କାଲି ନଅଟା ବେଳକୁ ନିଶ୍ଚୟ ଫୋନ କରିବି । ସେକ୍ରେଟାରୀ ଏକଥା ମଧ୍ୟ ଜଣେଇ ଦେଲେ ଯେ କଥାଟା ଦିନ ୧୦ଟା ସୁଦ୍ଧା ଚିଫ୍ ସେକ୍ରେଟାରୀଙ୍କ ମାଧ୍ୟମରେ ଚିଫ୍ ମିନିଷ୍ଟରଙ୍କ ପାଖକୁ ଯିବ ।'

କଲେକ୍ଟର ଥିଲେ ଅଣଓଡ଼ିଆ । ସେ ଫୋନ ସିନା ଛାଡ଼ିଦେଲେ କିନ୍ତୁ ତାଙ୍କୁ ନିଦ ହେଲାନି । ସେ ସଂଗେ ସଂଗେ ତାଙ୍କ ପି.ଏ.କୁ ଫୋନ କଲେ । ତାଙ୍କୁ କହିଲେ, ମରୁଡ଼ି ମାନେ କଅଣ ? ସେ ବିଷୟରେ କିଛି ମେସେଜ୍ ଆସିଚି କି ? ତମେ କାହିଁ ମୋତେ କହିନ ସେ କଥା ।

ପି.ଏ. ଆଶ୍ଚର୍ଯ୍ୟ ହେଲେ । ସେ କହିଲେ, 'ଆମେ ତ ସବୁକାମ ଆଜି କାଲି ଓଡ଼ିଆରେ କରୁଛୁଁ । କିନ୍ତୁ ଫ୍ୟାକ୍‌ସ୍ ମେସେଜ ସବୁ ଇଂରାଜୀରେ ଆସୁଛି ।

ଆମର ସେ ରିସିଭ୍ ସେକ୍ସନ କ୍ଲର୍କଟା ମୋଟେ ଇଂରାଜୀ ବୁଝେନା । ତାକୁ କହି କହି ମୁଁ ଥକିଲିଣି । ତେବେ ସାର୍ ସବୁ ମେସେଜ୍ ତ ମୁଁ ନିଜେ ଦେଖୁଚି । କାହିଁ ମରୁଡ଼ି ବିଷୟରେ ତ ମୁଁ କେଉଁଠି କିଛି ଦେଖିନି ।' ଟିକିଏ ରହି ସେ ପୁଣି କହିଲେ, 'ଯଦି ମେସେଜ୍‌ଟା ଚିଫ୍ ମିନିଷ୍ଟରଙ୍କ ଅଫିସରୁ ଆସିଥାଏ ମୁଁ କାଲି ନିଜେ ଯାଇ ତାଙ୍କ ଅଫିସରୁ କପିଟା ନେଇ ଆସିବି । ସେ ହେଡ୍ ଆସିଷ୍ଟାଣ୍ଟ ମୋ ନିଜ ଲୋକ ।'

କଲେକ୍ଟର ବିରକ୍ତ ହୋଇ କହିଲେ 'ଧେତ୍ ତୁମେ ମରୁଡ଼ିକୁ ଇଂରାଜୀରେ କଅଣ କୁହାଯାଏ ମୋତେ କହୁନ ?'

ପି.ଏ.ଙ୍କ ପାଟି ଖନି ମାରିଗଲା । ସେ କହିଲେ, 'ସାର ! ଆପଣ ମୋତେ ବ୍ୟସ୍ତ ହୁଅନ୍ତୁନି । ଓଡ଼ିଆରୁ ଇଂରାଜୀ ଡିକ୍‌ସନାରୀଟା ମୁଁ ଏଣିକି ଅଫିସରେ ରଖି ଦେଇଛି । ସେଠି ବେଶୀ କାମରେ ଲାଗୁଚି । ତେବେ ମୁଁ ସକାଳ ସାତଟା ବେଳକୁ ଆପଣଙ୍କୁ ଫୋନ୍ କରିବି ।'

ପରଦିନ ମୁଖ୍ୟମନ୍ତ୍ରୀ ଦିନ ବାରଟା ଯାଏ ଅପେକ୍ଷା କଲେ । କୋଉଁଠୁ ତାଙ୍କୁ କୌଣସି ପ୍ରକାର ଖବର ନ ଆସିବାରୁ ସେ ମନେ ମନେ ଖୁବ୍ ରାଗିଗଲେ ଏବଂ ପୋଲିସ୍ ଡି.ଜିଙ୍କୁ ଡକେଇଲେ । ସେ ଆସିବାରୁ ତାଙ୍କୁ କହିଲେ ଆପଣ ଏଇନେ ଶହେ ଖଣ୍ଡେ ପୋଲିସ୍ ଫୋର୍ସ ନେଇ ଆସନ୍ତୁ ।

ଡି.ଜି. ଆଶ୍ଚର୍ଯ୍ୟ ହୋଇ ପଚାରିଲେ, 'କଅଣ ହେବ ସାର୍ ? ମୋତେ ଟିକିଏ ଆଗରୁ ନ କହିଲେ...'

ମୁଖ୍ୟମନ୍ତ୍ରୀ କହିଲେ, 'ଆମେ ଏବେ ଏବେ ମରୁଡ଼ି ବିରୁଦ୍ଧରେ ଯୁଦ୍ଧ ଯାତ୍ରାରେ ବାହାରିବୁଁ ।'

***

# ମରୁଡ଼ି ଆଲୋଚନା

ଚନ୍ଦ୍ରଲୋକର ମୁଖ୍ୟମନ୍ତ୍ରୀ ଯେତେବେଳେ କହିଲେ ଫୋର୍ସ ଆଣ, ଆମେ ଏବେ ମରୁଡ଼ି ବିରୁଦ୍ଧରେ ଯୁଦ୍ଧ ଯାତ୍ରାରେ ବାହାରି ଯିବା, ସେତେବେଳେ ପୁଲିସ୍ ମୁଖ୍ୟ ବଡ଼ ଲଜ୍ଜିତ ହୋଇ ପଡ଼ିଲେ । ସେ କହିଲେ ଆମେ ସବୁ ଥାଉଁ ଥାଉଁ ଆପଣ ନିଜେ ଯୁଦ୍ଧ ଯାତ୍ରାରେ ଯିବେ ଏକଥା କିପରି ସମ୍ଭବ ହେବ ସାର୍ । ମୋ ଜୀବ ଥିବା ଯାକେ ଏ କଥା କରେଇ ଦେବି ନାହିଁ । ଆପଣ କେବଳ ନିର୍ଦ୍ଦେଶ ଦିଅନ୍ତୁ ଏବଂ ଦେଖନ୍ତୁ ମୁଁ ତାକୁ ଠିକ୍ ମତେ ତୁଲେଇ ପାରୁଚି କିନା । ଆପଣଙ୍କ ସେବାରେ ତ ମୁଁ ଜୀବନ ଉତ୍ସର୍ଗ କରି ଦେଇଚି ଆପଣ ରାମ ହେଲେ ମୁଁ ହନୁମାନ । ଯଦି କହିବେ ଏଇନେ ଛାତି ଖୋଲି....

ମୁଖ୍ୟମନ୍ତ୍ରୀ କହିଲେ, 'ଧେତ୍ ମୁଁ ଏତେ କଥା ଶୁଣିବାକୁ ଚାହୁଁନି । ତୁମେ ଖାଲି କୁହ ତୁମେ ଏ ଦାୟିତ୍ୱ ତୁଲେଇ ପାରିବ କି ? ମରୁଡ଼ିକୁ ଦମନ କରି ପାରିବ ?

ଆପଣ କଅଣ କହୁଛନ୍ତି ସାର୍ ? ପାରିବିନି ମାନେ ? ମୋତେ ମାତ୍ର ଗୋଟିଏ ଦିନ ସମୟ ଦିଅନ୍ତୁ । ସତ କଥା କହିବାକୁ ଗଲେ ମୁଁ ତ ମରୁଡ଼ିକୁ ଆରେଷ୍ଟ କରିବାର ସମସ୍ତ ପଦକ୍ଷେପ ନେଇ ସାରିଚି ।

ମୁଖ୍ୟମନ୍ତ୍ରୀ ଖୁସି ହେଇ ଗଲେ । ସେ ତାଙ୍କ ପାଖକୁ ଲାଗିଆସି ତାଙ୍କ କାନ୍ଧରେ ହାତ ପକେଇଲେ ଏବଂ କହିଲେ, ସମସ୍ତ ରାଜ୍ୟରେ ମୁଁ ତମ ପରି ଆଉ ଜଣେ ଦେଖିଲି ନାହିଁ । ଏକାନ୍ତ ନିଜର ଲୋକ ନଥିଲେ ଶାସନ ଯେ କେତେ କଷ୍ଟକର ବ୍ୟାପାର ହେଇ ପଡ଼େ ସେ କଥା ମୁଁ କେବଳ ଜାଣେଁ । ଟିକିଏ ରହି ସେ ପୁଣି କହିଲେ, ତୁମେ ଫୋର୍ସକୁ ଦେଶ ଚାରି ଦିଗକୁ ପଠେଇ ଦିଅ । ତାପରେ ମୋ ସହିତ ଆସ । ଆମେ ହେଲିକପ୍ଟରରେ ମରୁଡ଼ିକୁ ଠାବ କରିବାକୁ ଯିବା ।

ତାହାହିଁ ହେଲା । ହେଲିକପ୍‌ଟର ମୁଖ୍ୟମନ୍ତ୍ରୀ ଏବଂ ପୁଲିସ୍ ମୁଖ୍ୟଙ୍କୁ ନେଇ ଆକାଶ ମାର୍ଗରେ ଉଡ଼ିଲା । ମୁଖ୍ୟମନ୍ତ୍ରୀ ହାତରେ ଗୋଟିଏ ବାଇନାକୁଲର ଧରି ଏପାଖ ସେପାଖ ଦେଖୁ ଥାଆନ୍ତି । ହଠାତ୍ ଗୋଟାଏ ଜାଗାରେ ସେ ଅଟକି ଗଲେ । ପାଖରେ ବସିଥିବା ପୁଲିସ୍ ମୁଖ୍ୟଙ୍କୁ ସେ ପଚାରିଲେ, ଏଇଟା କଅଣ ?

ପୁଲିସ୍ ମୁଖ୍ୟ କହିଲେ ଖଣ୍ଡେ ମେଘ ଭାସି ଯାଉଚି ସାର୍ ।

ମୁଖ୍ୟମନ୍ତ୍ରୀ କହିଲେ, ଭଲ କରି ଦେଖ ।

ପୁଲିସ୍ ମୁଖ୍ୟ ସେତେବେଳେ ଦେଖିଲେ ମୁଖ୍ୟମନ୍ତ୍ରୀ ମେଘଟାକୁ ମେଘ ବୋଲି ସ୍ୱୀକାର କରିବାକୁ ଚାହୁଁନାହାନ୍ତି । ସେ ସଂଗେ ସଂଗେ କହିଲେ ସାର୍ ବୁଝିଲି, ଏଇଟା ମେଘ ଭଳିଆ ଦେଖାଯାଉଚି, କିନ୍ତୁ ମେଘ ନୁହେଁ ।

'ତେବେ କଅଣ ହେଇ ପାରେ ?'

ପୁଲିସ୍ ମୁଖ୍ୟ ଟିକିଏ ଚିନ୍ତା କରିବାକୁ ଲାଗିଲେ ।

ମୁଖ୍ୟମନ୍ତ୍ରୀ କହିଲେ, 'ତୁମେ ତା ତଳକୁ ଦେଖୁଚ ?'

'ଦେଖୁଚି ସାର୍, ରସାତଳ ଯାଏ ମୋତେ ଦେଖାଯାଉଚି ।'

'କିନ୍ତୁ ସେଠି ଗୋଟାଏ କଳା ଛାଇ । ସେଇ ମେଘର ହୋଇଥିବ ।'

'ଭୁଲ କଥା । ତମେ ସେ କଥାର ରହସ୍ୟ ବୁଝି ପାରିନ ବୋଧେ ।'

'କୋଉ କଥା ସାର୍ ?'

'ଏଇ ଦେଖ ।' ମୁଖ୍ୟମନ୍ତ୍ରୀ ଖଣ୍ଡେ ଖବର କାଗଜ ପୁଲିସ୍ ମୁଖ୍ୟଙ୍କ ହାତକୁ ବଢ଼ାଇ ଦେଲେ ଏବଂ କହିଲେ, 'ପଢ଼, କଅଣ ଲେଖା ଯାଇଚି ସେ ଶିରୋନାମାରେ ? ପଢ଼, ବଡ଼ ପାଟିରେ ପଢ଼ ।'

ପୁଲିସ୍ ମୁଖ୍ୟ ପଢ଼ିଲେ, 'ମରୁଡ଼ିର କରାଳ ଛାୟା ଦେଶର ସର୍ବତ୍ର ଦେଖା ଗଲାଣି ।'

ମୁଖ୍ୟମନ୍ତ୍ରୀ କହିଲେ, ଏବେ ଚିନ୍ତା କରି କୁହ ଏଇଟା ସେଇ କରାଳ ଛାୟା କି ନୁହେଁ ।' ତାପରେ ଟିକିଏ ରହି ସେ କହିଲେ ଏ 'କରାଳ' ମାନେ କଅଣ କିଓ ?

ପୁଲିସ୍ ମୁଖ୍ୟ ଚମକି ପଡ଼ିଲେ । କଅଣ କହିବେ ସେ ମୁଖ୍ୟମନ୍ତ୍ରୀଙ୍କୁ ହଠାତ୍ ତାଙ୍କ ପାଟିରୁ ବାହାରି ପଡ଼ିଲା, 'ସେଇଟା ଗୋଟାଏ ବିଶେଷଣ ସାର୍ । ସେମିତି କିଛି ମାରାତ୍ମକ ଶବ୍ଦ ନୁହେଁ ।

ମୁଖ୍ୟମନ୍ତ୍ରୀ କିଛି ନ କହିବାର ଦେଖି ସେ ପୁଣି ଥରେ କହିଲେ ଆପଣ ତ ଜାଣନ୍ତି ସେ ପେପାରଟା ସବୁବେଳେ ମୁଖ୍ୟମନ୍ତ୍ରୀଙ୍କୁ ବିରୋଧ କରେ । ଆପଣ ମହାନ୍ ବୋଲି ଆପଣ ସେମାନଙ୍କ ପ୍ରତି ଆଖି ବୁଜି ଦେଉଛନ୍ତି । ତେଣୁ ଆମେ ବାଧ ହେଇ ଚୁପ୍ ହେଇ ଯାଉଛୁ । ନଚେତ୍ ..... ।

ମୁଖ୍ୟମନ୍ତ୍ରୀ ଟିକିଏ ହସି ଦେଲେ ଏବଂ କହିଲେ, 'ମୁଁ ଗଣତନ୍ତ୍ରରେ ବିଶ୍ୱାସ କରେଁ । ରାଜନୀତି ଏକ ପବିତ୍ର କାର୍ଯ୍ୟ । ତୁମେତ ଦେଖିଥିବ, ଇତିହାସରୁ ମଧ ଜାଣିଥିବ, ଆମ ପୂର୍ବ ପୁରୁଷ ବରାବର ରାଜନୀତି କରିଥିଲେ ଏବଂ ସବୁବେଳେ ଗଣତନ୍ତ୍ରରେ ବିଶ୍ୱାସ ରଖିଥିଲେ । ଏପରିକି, ଯିଏ ଯାହା କହୁନା କାହିଁକି, ଜାତୀୟ ଜରୁରୀକାଳୀନ ପରିସ୍ଥିତିରେ ମଧ ଆମେ ଶପଥ ନେଇଥିଲୁ ଯେ ଆମେ ଗଣତନ୍ତ୍ରକୁ ଦୃଢ଼ କରିବୁ ।'

ଏତିକିବେଳେ ହେଲିକପ୍ଟରର ପାଇଲଟ୍ ପଚାରିଲେ, ଏବେ କୁଆଡ଼େ ଯିବା ସାର୍ ?

'ଯୋଉଠି ମରୁଡ଼ି ପଡ଼ିଚି ସିଧା ସେଇଠାକୁ ନେଇ ଚାଲ ।' ମୁଖ୍ୟମନ୍ତ୍ରୀ କହିଲେ ।

ପାଇଲଟ୍ ପଚାରିଲେ, 'ସେଇଟା କେତେ ଡିଗ୍ରୀ ଅକ୍ଷାଂଶ / ଦ୍ରାଘିମା ସାର୍ ?

ମୁଖ୍ୟମନ୍ତ୍ରୀ ପୁଲିସ୍ ମୁଖ୍ୟଙ୍କୁ ଅନେଇଲେ ।

ପୁଲିସ୍ ମୁଖ୍ୟ କହିଲେ, ମୁଁ ପାଇଲଟ୍‌ଙ୍କୁ ବୁଝେଇ ଦେଉଚି ।'

ମୁଖ୍ୟମନ୍ତ୍ରୀ କହିଲେ, ହଁ, ତାଙ୍କୁ ଭଲ କରି ବୁଝେଇ ଦିଅ । ସେ ନୂଆ ଲୋକ କିନା । ତାଙ୍କୁ ଏ କଥା ମଧ କହି ଦିଅ ମୁଖ୍ୟମନ୍ତ୍ରୀ ଅଯଥାଟାରେ ସରକାରୀ ଅର୍ଥରେ ବୁଲାବୁଲି କରିବାକୁ ପସନ୍ଦ କରନ୍ତି ନାହିଁ । ସିଧା ମରୁଡ଼ି ପାଖରେ ଓହ୍ଲାଇ ପଡ଼ନ୍ତୁ ।

ହେଲିକପ୍ଟର ଗୋଟିଏ ଜାଗରେ ତଳକୁ ଓହ୍ଲେଇଲା । ପ୍ରଶାସନ ତରଫରୁ କେତେ ଜଣ ବରିଷ୍ଠ ଅଫିସର ସେଠି ଉପସ୍ଥିତ ହେଲେ । ସେମାନେ ମୁଖ୍ୟମନ୍ତ୍ରୀଙ୍କୁ ପାଛୋଟି ନେଉଥିବାବେଳେ ଅସ୍ଥାୟୀ ଲାଉଜ୍ ସାମନାରେ ଜଣେ ପରିଚାରିକା ଗୋଟିଏ ଟ୍ରେରେ ଚାରିଟି ଗ୍ଲାସ୍‌ରେ ପାନୀୟ ଆଣି ଛିଡ଼ା ହେଲେ । ଜଣେ ବରିଷ୍ଠ ଅଫିସର ମୁଖ୍ୟମନ୍ତ୍ରୀଙ୍କୁ କହିଲେ, ଏଥିରେ ଗୋଟିଏ ଗ୍ଲାସ୍‌ରେ ପଇଡ଼ ପାଣି, ଦ୍ୱିତୀୟଟିରେ ଲାଇମ୍ ଜୁସ୍, ତୃତୀୟରେ କୋକାକୋଲା ଏବଂ ଚତୁର୍ଥ ଗ୍ଲାସ୍‌ରେ ... । ତାଙ୍କ ପାଟିରୁ କଥା ସରିଲା ପୂର୍ବରୁ ମୁଖ୍ୟମନ୍ତ୍ରୀ ଚତୁର୍ଥ ଗ୍ଲାସ୍‌ଟା ଉଠେଇ ନେଇ ଭିତରକୁ ଚାଲିଗଲେ ।

ସେଇଠି ମୁଖ୍ୟମନ୍ତ୍ରୀ ଜଣେ ଅଫିସରଙ୍କୁ ତାଙ୍କ କାର୍ଯ୍ୟକ୍ରମ ବିଷୟରେ ପଚାରନ୍ତେ ସେ କହିଲେ ଏଇଠି ଗୋଟିଏ ହାୟ ଟି'ର ବ୍ୟବସ୍ଥା ହେଇଚି । ସେତିକିବେଳେ ମାନ୍ୟବର ମୁଖ୍ୟମନ୍ତ୍ରୀ ରାଜ୍ୟ ବାହାରୁ ଅଣା ଯାଇଥିବା ସାମ୍ବାଦିକମାନଙ୍କୁ ଭେଟିବେ । ସେମାନେ ସମସ୍ତେ ଅପେକ୍ଷା କରିଛନ୍ତି ।

ମୁଖ୍ୟମନ୍ତ୍ରୀ ଟିକିଏ ବିରକ୍ତ ହେଲେ ବୋଧେ । ସେ କହିଲେ ଏଇ ମୁହୂର୍ତ୍ତରେ ମୋର ସେମାନଙ୍କୁ କିଛି କହିବାର ନାହିଁ । ତେବେ ତାଙ୍କୁ କହିଦିଅ ଯେ ଆସନ୍ତା କାଲି ସନ୍ଧ୍ୟାରେ ରାଜ୍ୟ ଅତିଥିଶାଳାରେ ମୁଁ ସେମାନଙ୍କୁ ଭେଟିବି ।

ପରଦିନ ମୁଖ୍ୟମନ୍ତ୍ରୀ ତାଙ୍କ ମନ୍ତ୍ରୀମଣ୍ଡଳର ଗୋଟିଏ ଜରୁରୀ ବୈଠକ ଡକାଇଲେ ।

ଆଲୋଚନା ଆରମ୍ଭ କରି ସେ କହିଲେ, ମରୁଡ଼ିର କରାଳ ଛାୟା ମୁଁ ନିଜେ ଦେଖି ଆସିଚି । ତେଣୁ ତାର ମୁକାବିଲା ପାଇଁ ଆମକୁ ରାସ୍ତା ବାହାର କରିବାକୁ ପଡ଼ିବ । ସେ ସଦସ୍ୟମାନଙ୍କର ମତାମତ ପଚାରିଲେ ।

ପୂର୍ତ୍ତମନ୍ତ୍ରୀ କହିଲେ ମରୁଡ଼ି ଭବିଷ୍ୟତରେ ଯେପରି ଆମ ଦେଶରେ ମୋଟେ ପ୍ରବେଶ କରି ନ ପାରେ ସେଥିପାଇଁ ଆମ ବିଭାଗ ଗୋଟିଏ ବିରାଟ କାର୍ଯ୍ୟ ହାତକୁ ନେଇଚି । ଆମେ ଆମ ରାଜ୍ୟର ଚାରିପଟେ ଗୋଟିଏ ପାଚେରୀ ତିଆରି କରିବାକୁ ଏବେ ଚିନ୍ତା କରୁଛୁ ।

ରାଜସ୍ୱ ମନ୍ତ୍ରୀ କହିଲେ ଫସଲ ନ ହେବାକୁ ମରୁଡ଼ି କହିବା ଠିକ୍ ନୁହେଁ । ଆମ ରାଜ୍ୟରେ ଏପରି କେତେକ ସ୍ଥାନ ଅଛି ଯେଉଠି ବର୍ଷଯାକ ମୋଟେ ଚାଷ ହୁଏନି । ତାକୁ ଆମେ ମରୁଡ଼ି ବୋଲି କହୁନୁ । ତେବେ ଆମ ବିଭାଗ

ଏବେ କୃଷି ଗବେଷଣା କେନ୍ଦ୍ର ସହ ମିଶି ଏପରି ଗୋଟିଏ ଯୋଜନା ପ୍ରସ୍ତୁତ କରିବା କଥା ଚିନ୍ତା କରୁଚି ଯେ ବର୍ଷ ବର୍ଷ ଧରି ବର୍ଷା ନ ହେଲେ ମଧ ଏବଂ ଆମର କୃଷି ଉତ୍ପାଦନ ମୋଟେ ନ ହେଲେ ମଧ ମୋଟେ ମରୁଡ଼ି ହେବ ନାହିଁ ।

ଖାଦ୍ୟମନ୍ତ୍ରୀ କହିଲେ ମରୁଡ଼ି ଶହ ଶହ ବର୍ଷ ଧରି ଲାଗି ରହିଲେ ମଧ ଆମର ଗୋଟିଏ ଲୋକ ଅନାହାରରେ ଯେପରି ନ ମରିବେ ତାର ବ୍ୟବସ୍ଥା ପାଇଁ ଆମେ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦେଇ ସାରିଚୁ । ସେ ନିର୍ଦ୍ଦେଶନାମାର ଗୋଟିଏ କପି ଆମେ ପ୍ରତ୍ୟେକ ଜିଲ୍ଲା ମୁଖ୍ୟ ମେଡିକାଲ୍ ଅଫିସରଙ୍କୁ ମଧ ଦେଇଚୁଁ ।

ସଂସ୍କୃତି ମନ୍ତ୍ରୀ କହିଲେ ଅନାବୃଷ୍ଟିକୁ ରୋକିବା ପାଇଁ ଆମ ବିଭାଗ ରାଜ୍ୟର ବିଭିନ୍ନ ସ୍ଥାନରେ ନିୟମିତ ଭାବେ ଯାଗଯଜ୍ଞାଦି କରି ଇନ୍ଦ୍ର ଦେବତାଙ୍କୁ ସନ୍ତୁଷ୍ଟ କରିବାକୁ କାର୍ଯ୍ୟକ୍ରମ ଆରମ୍ଭ କରି ସାରିଲୁଣି ।

ଯୋଜନାମନ୍ତ୍ରୀ କହିଲେ ଆମ ବିଭାଗ ମରୁଡ଼ି ସହ ଲଢ଼ିବା ପାଇଁ ଦୀର୍ଘ ମିଆଦି ଯୋଜନାମାନ ପ୍ରସ୍ତୁତ କରିଚି । ସେସବୁ ସରକାରଙ୍କ ମଂଜୁରୀ ପାଇଲା ମାତ୍ରେ କାର୍ଯ୍ୟ ଆରମ୍ଭ ହେବ ।

ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ କହିଲେ ମରୁଡ଼ି ଅଞ୍ଚଳରେ ଲୋକଙ୍କ ମନୋବଳ ଯେପରି ଭାଙ୍ଗି ନ ଯାଏ ସେଥିପାଇଁ ସେ ଅଞ୍ଚଳରେ ଟି.ଭି. ଯୋଗାଇ ଦେଇ ଦିନ ରାତି ସବୁ ଚାନେଲ୍ ସେମାନଙ୍କ ପାଇଁ ଖୋଲି ଦିଅଯିବ । ଆବଶ୍ୟକ ପଡ଼ିଲେ ମିଡ୍ ନାଇଟ୍ ସୋ' ଗୁଡ଼ିକୁ 'ମିଡ୍ ଡେ ମିଲ୍' ପରେ ପ୍ରଦର୍ଶନ କରାଯିବ ।

ସେଦିନ ମିଟିଂ ସରିଲାବେଳକୁ ରାତି ପ୍ରାୟ ଆଠଟା ବାଜି ଯାଇଥିଲା । ଶହ ଶହ ସାମ୍ବାଦିକ ସେତେବେଳକୁ ସେମାନଙ୍କ କ୍ୟାମେରା ଓ ଟି.ଭି. କ୍ୟାମେରାମାନ ଧରି ବାହାରେ ଅପେକ୍ଷା କରିଥିଲେ ।

ମୁଖ୍ୟମନ୍ତ୍ରୀ ତାଙ୍କ ସାତ ଚଉତା ଚଦରଟିକୁ ଲମ୍ବ ଭାବେ ବେକରେ ପକେଇ ବାହାରକୁ ଆସିଲେ ଏବଂ ସମସ୍ତଙ୍କୁ ନବବର୍ଷର ଶୁଭେଚ୍ଛା ଜଣେଇଲା ପରେ ସାମ୍ବାଦିକମାନଙ୍କୁ ସମ୍ବୋଧନ କରି କହିଲେ, ମୁଁ ତ ଏବେ ଖୁବ୍ ବ୍ୟସ୍ତ ଅଛି । ତେବେ ମରୁଡ଼ି ବିଷୟରେ ମୁଁ କେବଳ ଆପଣମାନଙ୍କୁ ଏତିକି କହିବାକୁ ଚାହେଁ ଯେ ଆଜି ଆମ ମନ୍ତ୍ରୀମଣ୍ଡଳର ଗୋଟିଏ ଜରୁରୀ ବୈଠକରେ ସବୁକଥା ପୁଂଖାନୁପଂଖ ଭାବେ ଆଲୋଚନା ହେଇଚି ଏବଂ ଆଲୋଚନା ସଫଳ ହେଇଚି ।

***

# ମରୁଡ଼ି ସହ ଲଢ଼ିବାର ଏକ ସୂକ୍ଷ୍ମ ଉପାୟ

ସେଦିନ ରାତି ପ୍ରାୟ ଦଶଟାବେଳେ ମୁଖ୍ୟମନ୍ତ୍ରୀଙ୍କ ବାସଭବନରୁ ଡାକରା ଆସିବାରୁ ମୁଁ ଟିକିଏ ଚିନ୍ତିତ ହୋଇ ପଡ଼ିଲି । ଏମିତି କଥାଟା କଣ ଥାଇପାରେ ଯୋଉଥିପାଇଁ ସେ ମୋତେ ଏତେ ରାତିରେ ଡକେଇଲେ । ଅବଶ୍ୟ ଗତ ମାସକ ଭିତରେ ତାଙ୍କ ସହିତ ମୋର ଦେଖା ହେଇନି । ଭେଟିବାର ସେମିତି କିଛି କାରଣ ମଧ ନଥିଲା । ମୋର ଯାହା କାମ ସବୁ ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ମାଧ୍ୟମରେ ହୋଇଯାଏ । ତେଣୁ ମୁଁ ତାଙ୍କୁ (ଅର୍ଥାତ୍ ସେଇ ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ) ପଚାରିଲି ହଠାତ୍ ଏମିତି କଅଣ ଦରକାର ପଡ଼ିଲା ଯେ ? ସେ କହିଲେ ସେ କଥା ମୁଁ କେମିତି କହିବି ? ଆପଣଙ୍କ ତାଙ୍କ ସହ, କ୍ଷୀର ନୀର ସମ୍ପର୍କ । ମୁଁ ନିମିତ୍ତ ମାତ୍ର ।

ମୁଁ ଅଡୁଆରେ ପଡ଼ିଲି । ସାଧାରଣତଃ ଏମିତି ଡାକରା ପାଇବା ପୂର୍ବରୁ ପ୍ରାଇଭେଟ୍ ସେକ୍ରେଟାରୀ ମୋତେ ଟିକିଏ ସୂଚନା ଦେଇ ଥାଆନ୍ତି । ମୁଁ ସେଇ ଅନୁସାରେ ପ୍ରସ୍ତୁତ ହୋଇଯାଏ ।

ମୋ ସ୍ତ୍ରୀ କହିଲେ, ତମେ ଟିକିଏ ଜଲଦି ଫେରିବ । ନଚେତ୍ ତୁମେ ଗେଟ୍‌ର ବାହାରୁ ତାଲା ଦେଇଯାଅ । ମୁଁ ଏତେ ରାତିଯାଏ ଅପେକ୍ଷା କରି ପାରିବିନି ।

ମୁଁ ଅନେକ ଗୁଡ଼ିଏ କଥା ଚିନ୍ତା କରୁ କରୁ ଯାଇ ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ପହଞ୍ଚିଲା ମାତ୍ରେ ପ୍ରାଇଭେଟ୍ ସେକ୍ରେଟାରୀ ମୋତେ ବସିବାକୁ କହି କଫି ମଗେଇଲେ । କାରଣ ସେ ଜାଣନ୍ତି ମୁଁ କଫି ଛଡ଼ା ଅନ୍ୟ କିଛି ପିଏନା । ତାପରେ କହିଲେ ଆଉ ଜଣେ ଦି ଜଣ ଭିତରେ ଅଛନ୍ତି । ତେଣୁ ଏଇଠୁ ଟିକିଏ ଉଷୁମ୍ ହେଇ ଯାଆନ୍ତୁ ।

ମୁଁ କଫି ପିଇ ସାରିଲା ପରେ ସେ ମୋତେ କହିଲେ ଏଥର ଆପଣ ଯାଆନ୍ତୁ ।

ମୁଁ ଆଶ୍ଚର୍ଯ୍ୟ ହେଇ ପଚାରିଲି, ସେମାନେ କୋଉ ବାଟେ ଗଲେ ? ଏ ବାଟେ ତ ଆସି ନାହାନ୍ତି ।

ସେ କହିଲେ ଏତେ ବଡ଼ ବିଶାଳ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କ ବାସଭବନର ଯିବା ଆସିବା ରାସ୍ତା କଣ ଗୋଟିଏ ? ସେ ହସିଲେ ।

ମୁଁ ଭିତରକୁ ପଶିଗଲି । ମୁଖ୍ୟମନ୍ତ୍ରୀ ବେଶ ଗୋଟିଏ ଭାବାବିଷ୍ଟ ହେଇ ବସିଥିବାର ଦେଖିଲି । ମୋତେ ଦେଖି ସେ ଟିକିଏ ହସିଦେଲେ ଏବଂ କହିଲେ କେତେବେଳୁ ଆସିଲଣି ? ବସ ।

ମୁଁ ବସିଲି । ସେ କହିଲେ ତମେ ସାମ୍ବାଦିକମାନେ ତ ମୋତେ ଆଉ ରଖେଇ ଥୋଇ ଦବନି ଦେଖୁଚି ।

ମୁଁ ଲାଜେଇ ଯାଇ କହିଲି, ମୁଁ ତ ଆପଣଙ୍କୁ କେବେ ଅସୁବିଧାରେ ପକେଇନି ।

ସେ କହିଲେ ତମ କଥା ଅଲଗା । ତାପରେ ଟିକିଏ ରହି ସେ କହିଲେ ଆମ ମନ୍ତ୍ରୀମଣ୍ଡଳ ପ୍ରତି ଏବେ କିଛି ବିପଦ ଦେଖା ଦେଇଛି କି ?

ମୁଁ କହିଲି କି ବିପଦ ? କଅଣ ପାଇଁ ? ତା ପରେ କହିଲି ମୁଁ ତ କହିଛି ଆପଣ ପୂରା ପାଞ୍ଚବର୍ଷ ନିଶ୍ଚୟ ରହିବେ ।

ସେ କହିଲେ ଏଇ ମରୁଡ଼ି ହୋ ହାଲ୍ଲାଟା..... । ଦେଖୁନ କେମିତି ପ୍ରତି ଦିନ ଫାର୍ସ ସବୁ ଚାଲିଛି । ତମ ବନ୍ଧୁମାନେ ବି ତାକୁ ତିଳକୁ ତାଳ କରି ଦେଉଛନ୍ତି ।

କରନ୍ତୁ ! ଆପଣ ସେଗୁଡ଼ାକୁ ମୋଟେ ଶୁଣନ୍ତୁ ନାହିଁ । ମୁଁ ବରଂ ଆଜି ଲେଖି ଦଉଛି ଯେ, ସମସ୍ତ ବିରୋଧାଭାଷ ସତ୍ତ୍ୱେ ଆପଣଙ୍କ ମନ୍ତ୍ରୀମଣ୍ଡଳ ପ୍ରତି ଏବେ କୌଣସି ବିପଦ ନାହିଁ ।

ଏଇଟା ତୁମେ ମୋ ନାଁରେ ଲେଖିବ ? କ୍ଷତି କଅଣ ? ଗୋଟିଏ ବିଶେଷ ସାକ୍ଷାତକାରରେ ମୁଖ୍ୟମନ୍ତ୍ରୀ କହିଲେ ବୋଲି ଲେଖାଯିବ ।

ନା, ନା ବରଂ ତୁମେ ଲୋକସମ୍ପର୍କ ମନ୍ତ୍ରୀଙ୍କ ନାଁରେ ଲେଖିଦିଅ । ମୁଁ ତାଙ୍କୁ କହି ଦେଉଛି ।

ତା ପରେ ସେ ଫୋନ୍ ଉଠାଇଲେ ଏବଂ କହିଲେ ସେ ରାଧେଶ୍ୟାମ ବାବୁ ଆସିଛନ୍ତି । ମୁଁ ତାଙ୍କୁ ଆପଣଙ୍କ ନାଁରେ ଗୋଟିଏ ଖବର ଛାପିବାକୁ କହିଛି । ତା ପରେ ସେ ପଟୁ କିଛି ଶୁଣିଲା ପରେ ପୁଣି କହିଲେ ଆପଣ ପ୍ରତି ପନ୍ଦର କୋଡ଼ିଏ ଦିନରେ ଥରେ ସେମିତିକା ଷ୍ଟେଟ୍‌ମେଣ୍ଟ ଗୋଟାଏ ଦେଇ ଦଉଥିବେ । ମୋତେ ପଚାରିବା ଦରକାର ନାହିଁ । ମୋଟ କଥା ଲୋକେ ଜାଣନ୍ତୁ ଯେ, ଆମ ମନ୍ତ୍ରୀମଣ୍ଡଳ ଖୁବ୍ ଦୃଢ଼ ଅଛି । ଏବେ ମୋଟେ ଭାଙ୍ଗିବାର ସମ୍ଭାବନା ନାହିଁ ।

ସେ ଟେଲିଫୋନ ଥୋଇ ଦେଲେ ଏବଂ ମୋତେ କହିଲେ ଅଯଥାଟାରେ ମରୁଡ଼ି ଭିତରେ ରାଜନୀତି ପୂରେଇବା କଅଣ ଉଚିତ୍ ? ଏ ସବୁ ମୋଟେ ରାଜନୈତିକ ପରମ୍ପରା ନୁହେଁ । ଆମ ବାପା ଅଜା ଅମଳରୁ ଆମେ ରାଜନୀତି କରି ଆସୁଛୁ । ତମେତ ଦେଖୁଚ, ଆମେ ସେମିତି କେବେ କରୁ ? ଏଥିରେ କାହାର ଲାଭ ହେବ ? ପ୍ରକୃତ ମରୁଡ଼ି ଇଲାକାର କିଛି ଲାଭ ହେବ ?

ମୁଁ କହିଲି ଏଇଟା ସତକଥା । ମରୁଡ଼ି ଭିତରେ ରାଜନୀତି ପୂରେଇବା ମୋଟେ ଠିକ୍ ନୁହେଁ । ମରୁଡ଼ିକୁ ଜାତି, ଧର୍ମ, ଦଳ ଓ ପ୍ରାନ୍ତୀୟତା ଏ ସବୁରୁ ଊର୍ଦ୍ଧ୍ୱରେ ରଖିବା ଉଚିତ୍ ।

ମୁଖ୍ୟମନ୍ତ୍ରୀ କହିଲେ, କି ମରୁଡ଼ି ହୋ ? କାହିଁ ? କେଉଁଠି ମରୁଡ଼ି ପଡ଼ିଛି । ହେଇତ ସେ ଦିନ ଆମ ରାଜସ୍ୱମନ୍ତ୍ରୀ ହେଲିକପ୍‌ଟରରେ ସାରା ରାଜ୍ୟ ବୁଲି ଦେଖି ଆସିଲେ । ସେ ଯାହା ନିଜେ ଦେଖିଛନ୍ତି ତାକୁ ତ ମିଛ କହି ହେବନି । ମୁଁ ତାଙ୍କ କଥା ସତ ମଣିବି ନା ଖବର କାଗଜକୁ ସତ ମଣିବି ? ଏଥିରେ ବି ଆମେ ଜିଲ୍ଲାପାଳମାନଙ୍କୁ କେମିତି ଦୋଷ ଦେବା ?

ଟିକିଏ ରହି ସେ ପୁଣି କହିଲେ, ଆଚ୍ଛା କହିଲ ଯେଉଁଠି ବର୍ଷ ବର୍ଷ ଧରି ଦୁବ ଘାସଟିଏ ମଧ କଅଁଳେ ନାହିଁ ସେ ଯାଗାଟାକୁ ତୁମେ ଯଦି ମରୁଡ଼ି ବୋଲି କହିବ.....

ମୁଁ ଦେଖିଲି ସେ ଏକଦମ୍ ଭାଙ୍ଗି ପଡ଼ିଛନ୍ତି । ତାଙ୍କୁ ଟିକିଏ ସାନ୍ତ୍ୱନା ଦେବାକୁ ମୁଁ କହିଲି, ଯା ହେଲେ ମଧ ସେଥିପାଇଁ ଆପଣଙ୍କୁ ଦାୟୀ କରାଯିବା

ଉଚିତ୍ ନୁହେଁ । ବର୍ଷା ନ ହେଲେ ଆପଣ କଅଣ କରିବେ ? ଦୈବୀ ଦୁର୍ବିପାକକୁ କାହାର ହାତ ଅଛି ?

ସେ ଟିକିଏ ନରମି ଯାଇ କହିଲେ ତମ ବନ୍ଧୁମାନେ ତ ବି ସେମିତି । ହଇଓ, ଲେଖିବାକୁ କଅଣ ଆଉ କିଛି ନାହିଁ । ଯୋଉଗୁଡ଼ାକ ସ୍ଥାୟୀ ସମସ୍ୟା, ମାନେ ଏଇ ମନେକର ଯୌତୁକ ସମସ୍ୟା, ସାକ୍ଷରତା ଅଭିଯାନ, ନାରୀ ଜାଗରଣ କଥା ଫେମିଲି ପ୍ଲାନିଂ, ବେକାରୀ ସମସ୍ୟାଠାରୁ ଆରମ୍ଭ କରି ପଲ୍ସ ପୋଲିଓ, ରକ୍ତଦାନ ପ୍ରଭୃତି ଏତେ କଥା ଥାଉ ଥାଉ ବାର ବର୍ଷରେ ଥରେ ଗୋବିନ୍ଦ ଦ୍ୱାଦଶୀ ପରି କୋଉଠି କାଁ ଭାଁ ଟିକେ ମରୁଡ଼ି ଆସିଥିବ କି ନାହିଁ, ସେଥିରେ କାଗଜ ଭର୍ତ୍ତି ହୋଇଯାଉଛି । ଏ ସାମ୍ବାଦିକତାରେ କି ମୂଲ୍ୟବୋଧ ଅଛି ?

ମୁଁ କହିଲି, ମୁଁ କିନ୍ତୁ ଆପଣଙ୍କୁ ନ ପଚାରି କିଛି ଲେଖିନି । ଲେଖିବା ବି ଉଚିତ୍ ନୁହେଁ ।

ସେ କହିଲେ, ଆଜି ସେଇଥି ପାଇଁ ତ ତୁମକୁ ଡକାଇଲି । ଆଚ୍ଛା ଛାଡ଼ ସେ କଥା । ତମ କଥା କୁହ । ହଁ ଶୁଣ । ହାଉସିଂ ବୋର୍ଡ ଏବେ ନୂଆ ପ୍ଲଟ୍ ସବୁ ବିକ୍ରୀ କରିବ । ତମେ ସେଥିରୁ ଖଣ୍ଡେ ନଉନ ?

ମୁଁ କୃତକୃତ୍ୟ ହୋଇ କହିଲି, ଖଣ୍ଡେ ତ ଆଗରୁ ନେଇଥିଲି ଯେ, ଏଯାଏ ପଇସା ଅଭାବରୁ ଘର ତିଆରି କରି ପାରୁନି । ଏବେ ଆଉ ପଇସା ନାହିଁ ।

ଆରେ ତୁମକୁ ପଇସା କିଏ ମାଗୁଛି ? ଯାଅ କାଲି ଖଣ୍ଡେ ଦରଖାସ୍ତ ପଠେଇ ଦିଅ ।

ସେ ଉଠିଲେ ଏବଂ କହିଲେ ମୁଁ କାଲି ସକାଳେ ବାଙ୍ଗାଲୋର ଚାଲି ଯିବି । ଅମିତାଭ ମୋତେ ବାରମ୍ବାର ଫୋନ କରୁଛି । ସେଠି ତିନିଚାରି ଦିନ ଖଣ୍ଡେ ରହିବାକୁ ହେବ । ବିଶ୍ୱସୁନ୍ଦରୀମାନଙ୍କ ସହିତ ମୋର ଚା ପାନର ବ୍ୟବସ୍ଥା ହେଉଛି ।

* ସେ ଭିତରକୁ ପଶି ଯାଉଥିଲେ । ପୁଣି ଫେରି ଆସି ମୋତେ କହିଲେ, ତୁମେ ଏ ମରୁଡ଼ି ଫରୁଡ଼ି କଥା ଟିକେ ଦେଖୁଥିବ ବୁଝିଲ ?

***

# ମରୁଡ଼ି ଏକ ଜାତୀୟ ସମ୍ପତ୍ତି

ମୁଖ୍ୟମନ୍ତ୍ରୀ ସେଦିନ ଅଫିସରେ ଫାଇଲ୍ ଦେଖୁଦେଖୁ ତାଙ୍କ ମୁଣ୍ଡ ଗରମ ହୋଇଗଲା । ସେ ନୋଟ୍‌ଟିକୁ ବାରମ୍ବାର ପଢ଼ିଲେ । ସେଇ ଗୋଟିଏ ଶବ୍ଦ ପାଖରେ ପହଞ୍ଚିଲା ବେଳକୁ ତାଙ୍କୁ ଚିଆଁ ଲାଗୁଥିଲା ପରି ଲାଗୁଥାଏ । ନିଜେ ବି ପ୍ରକୃତ କଥାଟା କଅଣ ହୋଇଥିବ ବୋଲି ମନେ ପକାଇବାକୁ ଚେଷ୍ଟା କଲେ । ସେ ବୁଝି ପାରିଲେନି କେନ୍ଦ୍ରମନ୍ତ୍ରୀଙ୍କ କହିବାରେ ଭୁଲ କି ଏମାନଙ୍କର ବୁଝିବାରେ ଭୁଲ ରହିଲା । ଘଟଣାଟା ମାତ୍ର ତିନିଦିନର କଥା । ଅସଲ କଥା ହେଉଚି ଯେ, କେନ୍ଦ୍ରମନ୍ତ୍ରୀ ଯେତେବେଳେ ଏଇ ବିଷୟ ଉପରେ ସିନିୟର ଅଫିସର ଓ ମନ୍ତ୍ରୀମଣ୍ଡଳର ଅନ୍ୟ କେତେକ ସଦସ୍ୟଙ୍କ ଗହଣରେ ମରୁଡ଼ି ଉପରେ ମନ୍ତବ୍ୟ ଦେଉଥିଲେ ସେତେବେଳେ ସେ ଟିକିଏ ଅନ୍ୟ ମନସ୍କ ଥିଲେ । ତେଣୁ ସେ ହୁଏତ ସେ ସେଇ ନିର୍ଦ୍ଦିଷ୍ଟ ଶବ୍ଦଟିକୁ ଠିକ୍ ଭାବେ ଶୁଣି ପାରି ନାହାନ୍ତି । ତେବେ ଯେତେ ଦୂର ତାଙ୍କର ମନେ ହେଉଛି କେନ୍ଦ୍ର କୃଷିମନ୍ତ୍ରୀ 'ମରୁଡ଼ିକୁ ଏକ ଜାତୀୟ ବିପତ୍ତି' ବୋଲି କହିଥିଲେ । ଅଥଚ ତାଙ୍କ ଅଫିସ୍ ତାଙ୍କୁ ନୋଟ୍‌ରେ ଲେଖିଛି ମନ୍ତ୍ରୀ କୁଆଡ଼େ ତାଙ୍କୁ 'ଜାତୀୟ ସମ୍ପତ୍ତି' ବୋଲି କହିଲେ ।

ମୁଖ୍ୟମନ୍ତ୍ରୀ ଭାବିଲେ କେନ୍ଦ୍ର କୃଷିମନ୍ତ୍ରୀ ଜଣେ ବିଜ୍ଞ ଲୋକ । ସେ ତାଙ୍କର ସମଗ୍ର ଛାତ୍ରଜୀବନ ଇଂଲଣ୍ଡ ଓ ଆମେରିକାରେ କଟେଇ ଥିଲେ ବୋଲି ସେ ଜଣେ ବିଶ୍ୱସ୍ତ ଲୋକଠାରୁ ଶୁଣିଥିଲେ ବୋଲି ତାଙ୍କର ମନେ ପଡୁଛି । ଆଜିକାଲି ସଚରାଚର ସାହିତ୍ୟରେ ଅର୍ଥାତ୍ ଖାସ କରି ଗଳ୍ପ ଓ କବିତାରେ ଯେମିତି ଶବ୍ଦ ପ୍ରୟୋଗ କରାଯାଉଛି ସେଥିରେ ଗୋଟିଏ ଗୋଟିଏ ଶବ୍ଦର କୁଆଡ଼େ ଚାରି ପାଞ୍ଚଟା ଅର୍ଥ ପ୍ରକାଶ ପାଉଛି । ତେଣୁ ଫରେନ୍ ଡିଗ୍ରୀ ନେଇ ପାଣ୍ଡିତ୍ୟ ଲାଭ କରିଥିବା ଜଣେ କେନ୍ଦ୍ରମନ୍ତ୍ରୀ ଯେ ସେମିତି ତାଙ୍କ ଭାଷଣରେ ଶବ୍ଦର ତରଙ୍ଗଟିଏ ସୃଷ୍ଟି କରି ନଥିବେ ସେ କଥା କିଏ କହିବ ? ଆଜିକାଲି ଆଧୁନିକ କବିତା ପଢ଼ି ବୁଝି ନ ପାରିଲେ ଯେମିତି ଅନ୍ୟ କୌଣସି ପାଠକ କିମ୍ବା କବିଙ୍କୁ ପଚାରି ହୁଏନି ନିଜର ବୋକାମି ଧରା ପଡ଼ିଯିବା ଭୟରେ, ମୁଖ୍ୟମନ୍ତ୍ରୀ ସେମିତି ଗୋଟିଏ ଅଡୁଆ ବୁଢ଼ିଆଣୀ ଜାଲ ଭିତରେ ପଡ଼ି ଛଟପଟ ହେଲେ ।

କିନ୍ତୁ ନ ପଚାରି ରହି ହଉଛି କୋଉଁଠି ? ତାଙ୍କୁ ତ ସେଥିରେ ଦସ୍ତଖତ କରିବାକୁ ହେବ । ସେ ରିପୋର୍ଟ ପୁଣି କେନ୍ଦ୍ରକୁ ଯିବ । ଗୋଟିଏ କଥା ନ ବୁଝି ସେଥିରେ ଦସ୍ତଖତ କରିବା ମୁଖ୍ୟମନ୍ତ୍ରୀ ଅନ୍ତତଃ ଇଏ ନୁହନ୍ତି । ସେ ସବୁ କଥାକୁ ଭଲ ଭାବେ ବୁଝିବେ, ଜାଣିବେ, ସେ ନୋଟ୍ କିଏ ତିଆରି କରିଛି ସେ କଥା ମଧ୍ୟ ଦେଖିବେ ଏବଂ ବିଶେଷ କରି ନୋଟ୍‌ର ବର୍ତ୍ତମାନ ଓ ଭବିଷ୍ୟତ କଥା ଭଲ ଭାବେ ଚିନ୍ତା କରି ଦସ୍ତଖତ କରିବେ । ଦରକାର ହେଲେ ତାର ଆଇନ୍‌ଗତ ଅର୍ଥ, ରାଜନୈତିକ ଉଦ୍ଦେଶ୍ୟ ଇତ୍ୟାଦି ବିଷୟରେ ମଧ୍ୟ ପରାମର୍ଶ କରିବେ । ସେଥିପାଇଁ ଥରେ ମୁଖ୍ୟମନ୍ତ୍ରୀଙ୍କ ଅଫିସ୍‌କୁ ଫାଇଲ ଗଲେ ତାର ଭାଗ୍ୟ କଅଣ ହେବ ସେ କଥା ସ୍ୱୟଂ ଭଗବାନ ମଧ୍ୟ ସ୍ଥିର କରି ପାରନ୍ତିନି ବୋଲି ସେକ୍ରେଟାରୀଏଟ୍‌ରେ ସମସ୍ତେ ଜାଣନ୍ତି । ମୁଖ୍ୟମନ୍ତ୍ରୀ କୁଆଡ଼େ କହନ୍ତି କୋଟି କୋଟି ଜନଗଣଙ୍କ ଭାଗ୍ୟ ସହିତ ଜଡ଼ିତ ଥିବା ଏହି ଛୋଟ ନୋଟ୍‌ଟିରେ ଦସ୍ତଖତ କରି ଦେବା ଏତେ ସହଜ କଥା ନୁହେଁ ।

ସେ ବେଲ ଟିପିଲେ । ବ୍ୟକ୍ତିଗତ ସଚିବ ଆସିଲେ । 'ଏ ନୋଟ୍ କିଏ ତିଆରି କରିଛି ?' ମୁଖ୍ୟମନ୍ତ୍ରୀ ପଚାରିଲେ । ସଚିବ ଚିନ୍ତାରେ ପଡ଼ିଲେ । ଏମିତି ଗୋଟିଏ ଅର୍ଡିନାରୀ ନୋଟ ଉପରେ ଏ ପ୍ରକାର ପ୍ରଶ୍ନ ଆସିବ ବୋଲି ସେ ଚିନ୍ତା କରି ନଥିଲେ । ସେ କହିଲେ ଫାଇଲ୍‌ଟା ଚିଫ୍ ସେକ୍ରେଟାରୀଙ୍କ ଅଫିସରୁ ଆସିଥିଲା ।

ମୁଖ୍ୟମନ୍ତ୍ରୀ କହିଲେ - ଫାଇଲ ଭଲ ଭାବରେ ପଢ଼, ବୁଝ ଏବଂ ତା ପରେ ମୋତେ ଦିଅ ।

ବ୍ୟକ୍ତିଗତ ସଚିବ ଫାଇଲ ଧରି ନୋଟ୍‌ଟା ଆଉ ଥରେ ପଢ଼ିବା ଆରମ୍ଭ କରିବାରୁ ମୁଖ୍ୟମନ୍ତ୍ରୀ କହିଲେ, ସେଇ ଗୋଟିଏ ଶବ୍ଦ ଉପରେ ମୋର ସନ୍ଦେହ । ଆଉ ସବୁ ଠିକ୍ ଅଛି ।

'କୋଉ ଶବ୍ଦ ସାର୍ ?'

'ସେଇ ଯୋଉ ଦ୍ୱିତୀୟ ଧାଡ଼ିରେ ଅଛି । ସେଇଟା 'ସମ୍ପତ୍ତି' ହେବ ନା 'ବିପତ୍ତି' ହେବ ?'

ସଚିବ କହିଲେ ଯଦି କହିବେ ତେବେ କାଟି ବିପତ୍ତି ବୋଲି ଦେବି ।

ତୁମେ କେମିତି କାଟିବ ? ଯାଅ ଆଗ ଟିକିଏ ବୁଝିଦିଅ ।

ବ୍ୟକ୍ତିଗତ ସଚିବ ସଂଗେ ସଂଗେ ଚିଫ୍ ସେକ୍ରେଟାରୀଙ୍କ ଅଫିସକୁ ଗଲେ ଏବଂ ପଚାରିଲେ 'ଏଇଟା କ'ଣ ହେବ ସାର୍ ?' ମୁଖ୍ୟମନ୍ତ୍ରୀ ସନ୍ଦେହରେ ଅଛନ୍ତି ।

ଚିଫ୍ ଅଡୁଆରେ ପଡ଼ିଲେ । ସେ ତ ଆଗରୁ ଦସ୍ତଖତ କରି ସାରିଛନ୍ତି । ଯାହା ଥରେ ଦସ୍ତଖତ ହେଇ ସାରିଚି ତାକୁ ଏବେ ଭୁଲ କହିବା ତାଙ୍କ ଜାତକରେ ନାହିଁ । କିନ୍ତୁ ଖୋଦ୍ ମୁଖ୍ୟମନ୍ତ୍ରୀ ଯେତେବେଳେ ପ୍ରଶ୍ନଟା ଉଠାଇଛନ୍ତି ତେବେ ଉପାୟ କଅଣ ଅଛି । ସେ କହିଲେ ଫାଇଲଟା କୃଷି ବିଭାଗରୁ ଆସିଥିଲା । ଥରେ ତାଙ୍କ ସେକ୍ରେଟାରୀଙ୍କୁ ପଚାରିଲେ ଭଲ ହେବ । ସେ ନିଶ୍ଚୟ ଭଲ ଭାବେ ବୁଝିଥିବେ । ତାଙ୍କ ଦକ୍ଷତାରେ ମୋର ସନ୍ଦେହ ନାହିଁ । ତାଙ୍କ ନୋଟ୍‌ରେ ମୁଁ ଆଖିବୁଜି ଦସ୍ତଖତ କରିଦିଏ । ସେହି ଦକ୍ଷତା ଯୋଗୁଁ ତାଙ୍କୁ ଏବେ ଅନ୍ୟ ପାଞ୍ଚଜଣଙ୍କୁ ଟପେଇ ପ୍ରମୋଶନ ଦିଆଯାଇଛି । ତାଙ୍କୁ ନ ପଚାରି ମୁଁ ସଂଶୋଧନ ମଧ କରିବାକୁ ଚାହୁଁନି । ତମେ ଟିକିଏ ତାଙ୍କୁ ପଚାରି ଦିଅ ।

ଅନ୍ୟ ଉପାୟ ନ ଦେଖି ସେ କୃଷି ସଚିବଙ୍କ ପାଖକୁ ଗଲେ । ସେ ସେତେବେଳେ ଗୋଟିଏ ଜରୁରୀ ମିଟିଂକୁ ଯାଉଥିଲେ । ସେ ଫାଇଲ୍‌କୁ ଦେଖି କହିଲେ ଏଇଟା କେବେ ଭୁଲ ହେଇ ନ ପାରେ । କିନ୍ତୁ ମୁଖ୍ୟମନ୍ତ୍ରୀ ପଚାରୁଛନ୍ତି ଜାଣି ସେ ଟିକିଏ ଚିନ୍ତାରେ ପଡ଼ିଗଲେ । ଏତେ ବଡ଼ ଭୁଲ କେମିତି ସମ୍ଭବ ? 'ବିପତ୍ତି'ଟା 'ସମ୍ପତ୍ତି' କେମିତି ହେବ ? ସମ୍ପତ୍ତି ବି ବିପତ୍ତି ହେଇ ପାରେନା । ଦୁଇଟାର ଅର୍ଥରେ ଆକାଶ ପାତାଳ ଫରକ ଅଛି । ତେଣୁ ସେ ପ୍ରଥମେ ପଚାରିଲେ, ମୁଖ୍ୟମନ୍ତ୍ରୀଙ୍କ ମୁଣ୍ଡକୁ 'ବିପତ୍ତି' ଶବ୍ଦଟା କାହିଁକି ଆସିଲା ଶୁଣେ ?

ତାମାନେ ଆମ ନୋଟ ଭୁଲ, ତମେ ଏଇଆ କହୁଛ ? ବ୍ୟକ୍ତିଗତ ସଚିବଙ୍କ ପାଟି ଖନି ମାରିଗଲା । ସେକ୍ରେଟାରୀ କହିଲେ ଆମ ବଡ଼ବାବୁ ଜଣେ ପୋଖତ ଲୋକ । ତମ ସେକ୍ରେଟାରୀଏଟ୍‌ରେ ଏମିତି ଏଫିସିଏଣ୍ଟ୍ ଲୋକ ଦ୍ୱିତୀୟ କେହି ନାହିଁ । ସେ ଯେ ଭୁଲ କରିଥିବେ ଏକଥା କସ୍ମିନ୍ କାଳେ ମୁଁ ବିଶ୍ୱାସ କରିବିନି । ସେ ବଡ଼ବାବୁଙ୍କୁ ଡାକିଲେ ।

ବଡ଼ବାବୁ ଆସିଲେ । ସବୁ କଥା ଶୁଣିଲେ । ଆଉ ଥରେ ଫାଇଲ ଦେଖି ଟିକିଏ ହସିଲେ ଏବଂ କହିଲେ ନୋଟ୍ ଏକଦମ୍ ଠିକ୍ ଅଛି । ଆମେ ଯେତେବେଳେ ଦୁଇ ହଜାର କୋଟି ଟଙ୍କା ରିଲିଫ୍ ପାଇଁ ମାଗିଛୁ, ସେତେବେଳେ ଏଇଟା 'ସମ୍ପତ୍ତି' ନ ହେଇ 'ବିପତ୍ତି' କେମିତି ହେବ ?

***

# ଦାରୁ ଖୋଜା

ପୁରୀ ଶ୍ରୀମନ୍ଦିର ପ୍ରଶାସକଙ୍କଠାରୁ ଲିଖିତ ଏକ ଖୋଲା ଚିଠି ବୋଧେ ପୁରୀକୁ ଯିବା ବାଟ ହୁଡ଼ି ରାଉରକେଲା ଗାନ୍ଧୀ ରୋଡ ପରି ଏକ ସମ୍ପୂର୍ଣ୍ଣ ଅପନ୍ତରା ତଥା ଅଳିଆ ଗଦରେ ପଡ଼ି ମା'ବାପା ଛେଉଣ୍ଡ ପିଲା କିମ୍ବା ଆନ୍ତର୍ଜାତିକ ଶିଶୁ ଦିବସରେ ଭଡ଼ାରେ ଅଣା ଯାଇଥିବା ଗୋଟି ଶିଶୁ ଶ୍ରମିକ, ଯୋଉମାନେ ଢାବା ବା ସାଇକେଲ୍ ମରାମତି ଦୋକାନମାନଙ୍କରେ ଦିନ ଯାକ ଖଟି ରାତିରେ ମାତ୍ର ଖଣ୍ଡେ ରୁଟି ଓ ଟିକିଏ ଆଚାର ମାଲିକଠାରୁ ପାଇ ହେଁସରେ ପଡ଼ି କଇଁ କଇଁ କାନ୍ଦୁଥିବା ପରି ଚିଠିଟି କାନ୍ଦୁଥିଲାବେଳେ ଲେଖକ ତାକୁ ଉଦ୍ଧାର କରି ପ୍ରକାଶକଙ୍କ ପାଖକୁ ପଠାଇଥିଲେ । ପ୍ରକାଶ ପାଇଁ ଆସିଥିବା ଚିଠିଟି ଥିଲା ନିମ୍ନ ପରି ।

ମହାଶୟ,

ଜଗତର ନାଥ, ଜଗନ୍ନାଥ ମହାପ୍ରଭୁଙ୍କ ନବ କଳେବର ନିମିତ୍ତ ଉତ୍ତମ କ୍ୱାଲିଟି 'ଦାରୁ' ଆବଶ୍ୟକ ହେଉଥିବାରୁ ଶ୍ରୀମନ୍ଦିରର ମହାମାନ୍ୟ ପୂଜକ ଦଇତାପତିମାନେ ଏବେ ଓଡ଼ିଶାର ବଣ ଜଙ୍ଗଲରେ ମାଳ ମାଳ ହୋଇ ଖୋଳ ମାଦଳ ବଜେଇ, ବେକରେ ଧଣ୍ଡାମାଳ ପକେଇ, ମୁଣ୍ଡରେ ଚିତା ତିଲକ ମାରି, ଖାଣ୍ଟି ଅରୁଆ ସହିତ ନିରଳ ଗୁଆ ଘିଅ ସେବନ କରି, ଘୋର ବଣ ଜଙ୍ଗଲରେ ଦାରୁ ଖୋଜିବାରେ ବ୍ୟସ୍ତ ଅଛନ୍ତି ବୋଲି ସମ୍ବାଦପତ୍ରମାନଙ୍କରେ ଖବର ପ୍ରକାଶ ପାଇଛି । ସେଥିରେ ଏ କଥା ମଧ୍ୟ ପ୍ରକାଶ ପାଇଛି ଯେ, ଦାରୁ ଅମିଳକ ହେବାରୁ ସେବାୟତମାନେ ଅର୍ଥାତ ଶ୍ରୀ ସାଇଁ ମହାପାତ୍ର, ହଳଧର ଦାଶ ମହାପାତ୍ର, ନରସିଂହ ଦାଶ ମହାପାତ୍ର ଏବଂ ପତି ମହାପାତ୍ର ପ୍ରମୁଖ ଆଜ୍ଞାମାଳ ଆଣିଥିବା ସେବକମାନଙ୍କୁ ମିଶାଇ ମୋଟ୍ ପଚାଶ ଜଣ ଯାଇ କାକଟପୁର

ମା ମଙ୍ଗଳାଙ୍କଠାରେ ଅଧିଆ ପଡ଼ି ସ୍ୱପ୍ନାଦେଶକୁ ଅପେକ୍ଷା କରିଛନ୍ତି । ସେଠୁ ଆଦେଶ ପାଇଲେ ସେମାନେ ଦାରୁ ଆଣିବାକୁ ଯିବେ ।

ମହାଶୟ ମୁଁ ଗୋଟିଏ କଥା ମୋଟେ ବୁଝି ପାରୁନାହିଁ । ଜଗତର ନାଥ ଜଗନ୍ନାଥଙ୍କର ଦାରୁର ଆବଶ୍ୟକତା କଣ ପାଇଁ ଏବଂ ଯଦି ତାଙ୍କର ଦାରୁ ଲୋଡ଼ା ତେବେ ସେ କଅଣ ନିଜେ ଜାଣି ନାହାନ୍ତି, କିମ୍ବା ସେ ନିଜେ କଅଣ ସେବାୟତମାନଙ୍କୁ ସ୍ୱପ୍ନାଦେଶ ଦେଇ ନ ଥାଆନ୍ତେ । ସେ ଯେତେବେଳେ ସାରା ଜଗତର କଥା ଜାଣୁଛନ୍ତି ଏ ସାମାନ୍ୟ କଥାଟା ନ ଜାଣିଲେ କେମିତି ? ଦ୍ୱିତୀୟରେ ଏ ଦାସମହାପାତ୍ରମାନେ କଅଣ ଦାରୁ କୋଉଠୁ ମିଳେ ଜାଣି ନାହାନ୍ତି ଯେ, ସେମାନେ ଦୁନିଆ ଯାକ ବୁଲୁଛନ୍ତି । ତା ଛଡ଼ା ମା ମଙ୍ଗଳା କେମିତି ଜାଣିବେ ଦାରୁ କେଉଁଠି ମିଳେ ? ସେ କିପରି ସ୍ୱପ୍ନାଦେଶ ଦେବେ ?

ମହାଶୟ, ମୁଁ ସତକଥା କହୁଛି, ଜଗନ୍ନାଥଙ୍କ କିମ୍ବା ତାଙ୍କ ଭାଇ ଭଉଣୀଙ୍କର ଦାରୁ ଆବଶ୍ୟକତା, ଏକଥା ମୁଁ ମୋଟେ ବିଶ୍ୱାସ କରି ପାରୁନାହିଁ । ସେମାନେ ତ' ସେ ଧର୍ମାବଲମ୍ବୀ ନୁହନ୍ତି । ସେମାନଙ୍କ ଛତିଶ ଭୋଗରେ ଦାରୁ ଲାଗେ ଏକଥା ଶାସ୍ତ୍ରରେ ମଧ୍ୟ ଉଲ୍ଲେଖ ନାହିଁ । ତେବେ ପଣ୍ଡାମାନଙ୍କ ଭିତରୁ କେହି କେହି ବେଳ ଅବେଳରେ ଗ୍ରୀଷ୍ମରୁ ଉପଶମ ପାଇବା ପାଇଁ କିମ୍ବା କାନ ଥରା ଥଣ୍ଡାରୁ ମୁକ୍ତି ପାଇବା ପାଇଁ ହୁଏତ ଟିକିଏ ଅଧେ ଦାରୁ ସେବନ କରୁଥିବେ । ଶ୍ରୀମନ୍ଦିର ପ୍ରଶାସକ ମହାଶୟ କିମ୍ବା ତାଙ୍କ ଅଫିସ୍ ଷ୍ଟାଫ୍ କିମ୍ବା ତାଙ୍କ ମନ୍ଦିର ପୁଲିସ୍‌ଙ୍କ ପାଇଁ ହୁଏତ ଦାରୁ ଆବଶ୍ୟକ ହେଉଥିବ । କିନ୍ତୁ ସେଥିପାଇଁ ଜଗନ୍ନାଥଙ୍କ ନାମ ନେବା ଘୋର ଅନ୍ୟାୟ । ତେବେ ସେ ଯାହା ହେଉ ମା' ମଙ୍ଗଳାଙ୍କୁ ଦାରୁ କୋଉଠୁ ମିଳେ ବୋଲି ପଚାରିବାଠାରୁ ପାପ କଥା ଆଉ ଦୁନିଆରେ କିଛି ନାହିଁ । ମା ମଙ୍ଗଳା କିଏ ଏବଂ ଦାରୁ କିଏ ? ମା କେବେ ଦାରୁର ଧାର ଧାରୁ ନଥିବେ । ପଣ୍ଡାମାନେ ଏଥିପାଇଁ ତାଙ୍କୁ ଯାଇ ହଇରାଣ କରିବାଟା ଉଚିତ୍ ହେଲାନାହିଁ । ମା' ମଙ୍ଗଳା କଦାପି ଆମକୁ କ୍ଷମା କରିବେ ନାହିଁ । ଅବଶ୍ୟ ଏହା ସର୍ବଜନବିଦିତ ଯେ, କୈଳାଶପତି ଶିବ ନିଶା ସେବନ କରନ୍ତି । ଏଥିରେ ମଧ୍ୟ ତାଙ୍କ ସୁନାମ ଅଛି । ଏହି ସୁନାମ ଥିବାରୁ ବୋଧେ ଦୁଇ ତିନି ବର୍ଷ ତଳେ କେହି ଜଣେ ଠିକାଦାର ଚନ୍ଦନେଶ୍ୱର ଶିବଙ୍କ ଉପରେ ଗୋଟିଏ ଫରେନ୍ ଦାରୁ ବୋତଲ ଢାଳି ଦେଇ ଭୋଗ ଲଗେଇଥିଲେ ।

ସେ କୁଆଡ଼େ ଏଥିପାଇଁ ଆଗରୁ ମାନସିକ କରିଥିଲେ । ତେଣୁ ଯଦି ଶିବଙ୍କ ପାଇଁ କେହି ଦାରୁ ଖୋଜୁଥାଏ ତେବେ ଆମର କିଛି କହିବାର ନାହିଁ । କିନ୍ତୁ ମହାପ୍ରଭୁ ଜଗନ୍ନାଥଙ୍କ ପାଇଁ ଦାରୁ ଲୋଡ଼ା ଏବଂ ତାର ଖବର ପୁଣି ମା ମଙ୍ଗଳାଙ୍କଠାରେ ମିଳିବ ଏକଥା ମତେ କେମିତି ଅଡୁଆ ଅଡୁଆ ଲାଗୁଛି । ଆଜିକାଲି ତ' ସବୁ କଥାରେ ରାଜନୀତି ଥାଏ । ଏ କଥାରେ ମଧ ରାଜନୀତି ଥିଲା ପରି ଲାଗୁଛି । ତେବେ ଏଠାରେ ଗୋଟିଏ କଥା ମୁଁ ସ୍ପଷ୍ଟ କରି ଦେଇପାରେ ଯେ, ଆମ କମ୍ପାନୀର ରେକର୍ଡ ଅନୁସାରେ ଓଡ଼ିଶାର କୌଣସି ଦାସ ମହାପାତ୍ରଙ୍କୁ ଦାରୁ ଏଜେନ୍‌ସି ଦିଆଯାଇ ନାହିଁ କିମ୍ବା କାକଟପୁରରେ କିମ୍ବା ଆଖ ପାଖରେଆମ୍ଭର କୌଣସି ଚୋରା ଗୋଦାମ ନାହିଁ ।

ଏବେ ଆଉ ଗୋଟିଏ କଥା ମଧ ମୁଁ ବୁଝି ପାରୁନାହିଁ । ପୁରୀ ଏବଂ ତାର ଆଖପାଖ ଅଞ୍ଚଳରେ ସତରେ କଣ ଦାରୁର ଘୋର ଅଭାବ ଦେଖାଦେଇଛି ? ଯଦି ହୋଇଥାଏ, ତେବେ ଏହା କୃତ୍ରିମ ଅଭାବ । ମୋର ମନେ ହୁଏ ଆସନ୍ତା ନିର୍ବାଚନ ପାଇଁ ଏ କୃତ୍ରିମ ଅଭାବ ସୃଷ୍ଟି କରାଯାଇଛି । ଚୋରା ବେପାରୀମାନେ ନିଶ୍ଚୟ ଆମ କମ୍ପାନୀକୁ ବଦନାମ କରିବା ଉଦ୍ଦେଶ୍ୟରେ ମାଲ୍ ସବୁ ଲୁଚାଇ ରଖିଛନ୍ତି । କ'ଣ କରିବା ? ଦେଶରେ ସମସ୍ତଙ୍କୁ ପାରି ହେବ, କିନ୍ତୁ ଚୋରା ବେପାରୀଙ୍କୁ ପାରି ହେବ ନାହିଁ । ତାଙ୍କୁ ଯିଏ ଧରିବ, ସିଏ ଆଗ ମରିବ । ତାଙ୍କ ସହିତ ସାଲିସ୍ କରିବା ଭଲ । ଆଜିକାଲି ଚୋରା ବେପାରୀ ସବୁଠି । ମନ୍ଦିରଠାରୁ ଆରମ୍ଭ କରି ହୋଟେଲ ପର୍ଯ୍ୟନ୍ତ ଏବଂ ପଞ୍ଚାୟତଠାରୁ ଆରମ୍ଭ କରି ପାର୍ଲ୍ୟାମେଣ୍ଟ ପର୍ଯ୍ୟନ୍ତ ସବୁଠି ସେମାନଙ୍କ ରାଜତ୍ୱ । ତେବେ ତାଙ୍କୁ ମୁକାବିଲା କରିବାକୁ ଆମେ ଲିବରାଲାଇଜେସନ୍ ପଲିସିକୁ ଗ୍ରହଣ କରି ନେଇଛୁ । ଏଥିରେ ଯିଏ ଯାହା କରୁଛି କରୁ । ଯିଏ ଯେତେ ଅଭିଯୋଗ କରୁଛି କରୁ । ଅମେ କିଛି ଦେଖିବା ନାହିଁ କି କିଛି ଶୁଣିବା ନାହିଁ କି କିଛି କହିବା ନାହିଁ । ଏହାହିଁ ଲିବରାଲାଇଜେସନ୍‌ର ମୂଳ ମନ୍ତ୍ର ।

ଆପଣ ତ ଜାଣିଥିବେ ଯେ, ଦାରୁ ବିନା ଏ ଦେଶ ଅଚଳ ହୋଇଯିବ । ଦାରୁ ନ ହେଲେ ଏ ଦେଶର ଶାସନ, ସମାଜ, ସଂସ୍କୃତି ସବୁ ଅକାମି ହୋଇଯିବ । ସେସବୁ ଏବେ ଆମ ସଭ୍ୟତାର ଏକ ଅଙ୍ଗ । ବର୍ତ୍ତମାନ ଆପଣ କହିପାରନ୍ତି, ତେବେ ଆଜିକାଲି କାହିଁକି କାନ୍ଥ, ବାଡ଼ରେ ବଡ଼ ବଡ଼ ପୋଷ୍ଟରରେ

ଲେଖାଯାଉଛି 'ଦାରୁ ଖିଆ ଛାଡ଼ନ୍ତୁ ।' ଆଃ, ସେସବୁକୁ କେହି ଦେଖନ୍ତି ନାହିଁ । ସେସବୁ ମଧ ଆମରି କାମ । ଆମରି ପରି ଠିକାଦାରଙ୍କ ମହତ୍ ଦାନରେ ସେସବୁ ଲେଖାହୁଏ । ସାରା ଦେଶ ତ' ଆମରି ଇଙ୍ଗିତରେ ଚାଲିଛି ।

ଏବେ ଅସଲ କଥାକୁ ଆସୁଛି । ଦାରୁର ଯଦି ପ୍ରକୃତରେ ସେ ଅଞ୍ଚଳରେ ଅଭାବ ଦେଖା ଦେଇଥାଏ, ତେବେ ଆପଣ ହତାଶ ହୁଅନ୍ତୁ ନାହିଁ । ଆମ କମ୍ପାନୀର 'ଟୋଣ୍ଟି ପଏଣ୍ଟ ପ୍ରୋଗ୍ରାମ' ଅନୁଯାୟୀ ଦେଶ ଭିତରେ ଦାରୁ ସମସ୍ତଙ୍କୁ ସୁବିଧାରେ ସହଜରେ ଏବଂ ଉଚିତ୍ ମୂଲ୍ୟରେ ଲବ୍‌ଧ ହେବାର ଏକ ନୂତନ ଯୋଜନା ନିକଟରେ ସରକାରଙ୍କ ମଞ୍ଜୁରୀ ଲାଭ କରିଛି । ତାକୁ ଆମେ ଏବେ ବିଭିନ୍ନ ସଭା ସମିତିରେ, ପ୍ରେସ୍ କନ୍‌ଫରେନ୍‌ସରେ ଘୋଷଣା ମଧ କରି ସାରିଛୁ । ପ୍ରଧାନମନ୍ତ୍ରୀ ତଥା ଅନ୍ୟାନ୍ୟ ମୁଖ୍ୟମନ୍ତ୍ରୀଙ୍କ ମେସେଜ୍ ଥାଇ ଏହି ଯୋଜନାର ମୁଦ୍ରିତ କଳେବର ଖୁବ୍ ଶୀଘ୍ର ଆପଣଙ୍କ ହସ୍ତଗତ ହେବ ।

ଓଡ଼ିଶାର କଟକରେ ଆମର ମୁଖ୍ୟ ବିତରକ ଅଛନ୍ତି । ତାଙ୍କୁ ସମସ୍ତେ ଜାଣିଛନ୍ତି । ସେ କାରବାରରେ ନୂଆ ନୁହନ୍ତି, ସେ ଜଣେ ଉଦୀୟମାନ ଯୁବକ । ଆପଣ ତାଙ୍କୁ ଯୋଗାଯୋଗ କରନ୍ତୁ । ତାଙ୍କୁ ନ ପାଇଲେ କମ୍ପାନୀର ମୁଖ୍ୟ ଉପଦେଷ୍ଟା ଯେ କି ଏବେ ଏକ ସମ୍ମାନସ୍ପଦ ଚାକିରୀ ଛାଡ଼ି ଆମ କମ୍ପାନୀରେ ଯୋଗଦାନ କରିଛନ୍ତି, ତାଙ୍କୁ ଭେଟନ୍ତୁ । ସେ କଟକରେ ବେଶ୍ ଜଣାଶୁଣା । ସମସ୍ତେ ତାଙ୍କର ଜୟ ଜୟକାର କରୁଛନ୍ତି । ସେଠି ମାଲ୍ ନ ମିଳିଲେ ଶୀଘ୍ର ତଳ ଠିକଣାରେ ଫ୍ୟାକ୍‌ସ / ମେସେଜ୍ ପଠାନ୍ତୁ ।

ଇତି

(ପ୍ରେରକଙ୍କ ନାମ ଓ ଠିକଣା ଚିରି ଯାଇଛି)

***

# ପୁରସ୍କାରର ପଛପଟେ

ମାର୍ତ୍ତଣ୍ଡ ବାବୁ ସକାଳୁ ସକାଳୁ ମୋ ଡ୍ରଇଁ ରୁମକୁ ପଶି ଆସୁଥିବା ଦେଖି ସେଦିନର ସକାଳ ଯେ ନଷ୍ଟ ହେଉଚି ଏ କଥାରେ ମୁଁ ନିଶ୍ଚିତ ହେଇ ଯାଇଥିଲି । ମୋ ସ୍ତ୍ରୀ କହିଲେ ଆଃ, ସେ ଟିକିଏ ବସନ୍ତୁ । ତମେ ଏତେ ଛାନିଆଁ କାହିଁକି ହଉଚ ? ଚା'ଟା ଟିକିଏ ପିଇସାରି ଯାଅ । ନଚେତ ଆଜି ଦିନଯାକ ତୁମକୁ ଆଉ ଦ୍ୱିତୀୟ କପ୍ ଚା' ମିଳିବନି ।

ସହରରେ ମାର୍ତ୍ତଣ୍ଡବାବୁଙ୍କର ଖୁବ୍ ନାଁ ଅଛି । ଖୁବ୍ ପାରିବାର ଲୋକ । ଏମିତି କୋଉ କାମ ଯେ ତାଙ୍କ ଦେଇ ନ ହେବ ସେ କଥା କହି ହେବନି । ତାଙ୍କ ସାଥିରେ ଯୋଉମାନେ ଦଶ ବର୍ଷ ତଳେ ଚାକିରୀରେ ଯୋଗଦେଇଥିଲେ ସେମାନେ ଯା ଭିତରେ ପ୍ରତି ଦୁଇବର୍ଷକୁ ଥରେ ହିସାବରେ ପାଞ୍ଚ ଯାଗା ବଦଳି ହୋଇ ସାରିଲେଣି ଏବଂ ସେମାନଙ୍କ ଭିତରୁ କିଏ ଏବେ କଳାହାଣ୍ଡିରେ ତ ଆଉ କିଏ କୋରାପୁଟ୍‌ରେ । କିନ୍ତୁ ମାର୍ତ୍ତଣ୍ଡବାବୁ ସେଇ ଗୋଟିଏ ଯାଗାରୁ ହଲୁନାହାନ୍ତି । ତାଙ୍କର ଖାଲି ଅଫିସ୍ ବଦଳି ଚାଲିଛି ମାତ୍ର । ଏ ଅଫିସ୍‌ରୁ ସେ ଅଫିସ୍‌କୁ ।

ଏସବୁ କେବଳ ତାଙ୍କର ପାରିବାପଣ । ଅଫିସରମାନଙ୍କ ଭିତରୁ ଯେ ଯୋଉଠି ଥାଉନା କାହିଁକି ଦିନକୁ ଥରେ ନିଶ୍ଚୟ ଖୋଜିବେ ମାର୍ତ୍ତଣ୍ଡବାବୁଙ୍କୁ । ଦିନଟିଏ ମାର୍ତ୍ତଣ୍ଡବାବୁ ଅଫିସ୍ ଆସି ନଥିଲେ ଯିମିତି ସମସ୍ତଙ୍କୁ ଦିନରେ ମଧ ଅନ୍ଧାର ଦେଖାଯାଏ ।

ମାର୍ତ୍ତଣ୍ଡବାବୁ ଦେଶସେବୀ ମଧ । ଯୋଉଠି ଯାହାର ଯାହା ଦରକାର ସେଠି ମାର୍ତ୍ତଣ୍ଡବାବୁ ହାଜର । ତେଣୁ ଇଲେକ୍‌ସନ୍‌ବେଳେ ମାର୍ତ୍ତଣ୍ଡବାବୁଙ୍କୁ ବେଳେ ବେଳେ ଗୋଟାଏ ଦିନ ଭିତରେ ଦୁଇ ତିନିଟି କେମ୍ପରେ ଦୁଇ ତିନିଟା ପତାକା ଧରି କଥାବାର୍ତ୍ତା ହେବାର ଦେଖାଯାଏ ।

ମୁଁ ଡ୍ରଇଁ ରୁମ୍‌କୁ ପଶି ଆସିଲି । ହାତରେ ତାଙ୍କ ପାଇଁ କପେ ଚା' ଧରି । ତାଙ୍କ ହାତରେ ପୁଳାଏ କାଗଜପତ୍ର । ଚା' ପିଉ ପିଉ ସେ କଥା ଆରମ୍ଭ କଲେ- ଦେଖନ୍ତୁ ଆଜ୍ଞା, ଆମେ ଯେଉଁ ନୂଆ ଅନୁଷ୍ଠାନଟିଏ ଗଢ଼ିଛୁ ଅର୍ଥାତ୍ ଯୋଉଥିରେ ଆପଣ ଚିଫ୍ ପାଟ୍ରନ୍ ହିସାବରେ ଅଛନ୍ତି, ସେ ଅନୁଷ୍ଠାନ ତରଫରୁ ଏଥର ଠିକ୍ ହେଇଚି ଆମେ ଏଇ ବର୍ଷଠାରୁ କୌଣସି ଜଣେ ବିଶିଷ୍ଟ ଲୋକଙ୍କୁ ଗୋଟିଏ ସମ୍ମାନସୂଚକ ଉପାଧି ଦେବାକୁ । ଏଥିରେ ଆମର ଆହୁରି ସ୍ଥିର ହୋଇଛି ଯେ, ପଚାଶ ହଜାର ଟଙ୍କା ସହ ଗୋଟିଏ ତାମ୍ର ପତ୍ର ପ୍ରଦାନ କରାଯିବ ।

ଏତେ ଟଙ୍କା ଶୁଣି ମୁଁ ଚମକି ପଡ଼ିଲି । ମୁଁ ପଚାରିଲି ଏତେ ଟଙ୍କା ଆସିବ କୁଆଡୁ ? ସେ ହସି ହସି କହିଲେ - ସେ ବିଷୟରେ ଚିନ୍ତା କରନ୍ତୁନି । ତା'ର ବ୍ୟବସ୍ଥା ହେଇ ସାରିଛି । ସେ କହିଲେ ଆମେ ଏଥର ଆଉ ଚାରି ଜଣଙ୍କୁ ଆମ ଅନୁଷ୍ଠାନରେ ପାଟ୍ରନ ହିସାବରେ ଗ୍ରହଣ କରିଛୁ । ସେମାନେ ହେଲେ ହାଜୀ ମସ୍ତାନ୍‌ଙ୍କ ବଡ଼ଭାଇ, ହର୍ଷଦ ମେହେଟ୍ଟାଙ୍କ ପୁତୁରା, ଫୁଲନ୍ ଦେବୀଙ୍କ ବନ୍ଧୁ ଏବଂ ସୁଖରାମଙ୍କ ନାତି ।

ମୁଁ ଚମକି ପଡ଼ିଲି । କହିଲି ଆଗେ ଆପଣ ଏଡ଼େ ବଡ଼ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଏ କମିଟିରେ ନେବା ପୂର୍ବରୁ ମୋତେ ଟିକିଏ ପଚାରିଥାଆନ୍ତେ । ମୋର କହିବାର କଥା ଯୋଉ କମିଟିରେ ସେମାନେ ପାଟ୍ରନ୍, ମୁ ଚିଫ୍ ପାଟ୍ରନ କେମିତି ହେବି ? ସେ କହିଲେ ସାର୍, ସେଥିରେ କ'ଣ ଅଛି ? ଆପଣ ହେଲେ ଆମର ସ୍ଥାୟୀ ଲୋକ । ତା'ଛଡ଼ା ଆପଣ ମଧ କିଛି ଦିନ ତଳେ ସେମାନଙ୍କର ଓକିଲ ଥିଲେ । ତେଣୁ ନିୟମ ଦୃଷ୍ଟିରୁ କିଛି ଅସୁବିଧା ହେବନି ।

ମୁଁ ତାଙ୍କ ପ୍ରୋଗ୍ରାମର ବାକି ଅଂଶତକ ଜାଣିବାକୁ ଚାହିଁଲି ।

ସେ କହିଲେ ଆମର ଏ ଆୱାର୍ଡଟା ଯେ କୌଣସି ବିଷୟରେ ଦିଆଯାଇ ପାରେ । ମାନେ ଏଇ ଧରନ୍ତୁ ସାହିତ୍ୟ, କଳା, ଦେଶସେବା, ରାଜନୀତି,ଅର୍ଥନୀତି, ସମାଜନୀତି ପ୍ରଭୃତି ଏମିତି ଯେତେଯେତେ ନୀତି କଥା ଅଛି ସେସବୁ ପାଇଁ ଯିଏ ଯୋଗ୍ୟ ବ୍ୟକ୍ତି ତାଙ୍କୁ ଦିଆଯିବ ।

ମୁଁ କହିଲି ସବୁ ନୀତି କଥା ଯେବେ କହୁଛନ୍ତି ସେଥିରେ ଦୁର୍ନୀତିଟା ମଧ ଆସିବ ନା ନାହିଁ । ମାନେ ମୋର କହିବାର କଥା ଯୋଉଠି ଯୋଉଠି ଏଇ 'ତି'ର ସମ୍ପର୍କ ଅଛି ।

ସେ ହସି କହିଲେ, ସାର ଆପଣ ଓକିଲ ଲୋକତ । କଥାଟା ଏମିତି ବୁଲେଇ କହିଲେ ମୁଁ ଧରି ପାରୁନି ।

ମୁଁ କହିଲି ଛାଡ଼ନ୍ତୁ ସେ କଥା । ଏବେ କହିଲେ ଏଇ ସମ୍ମାନ ପାଇବା ଲୋକକୁ ବାଛିବ କିଏ ?

ସେ କହିଲେ, ଆମେ ଗୋଟିଏ କମିଟି କରି ସାରିଛୁ । କିନ୍ତୁ ତାର ନିୟମାବଳୀ ଏମିତି ରଖିବା ଯେ କମିଟି ଯାହାକୁ ବାଛିଲେ ମଧ୍ୟ ଆପଣଙ୍କ କଥା ହେବ ଫାଇନାଲ୍ । ଆପଣ ଚିଫ୍ ପାଟ୍ରନ କିନା । ଆମେ ଏମିତି ନିୟମ ରଖିଛୁ ଯେ ସମସ୍ତେ ନମ୍ବର ଦେଇସାରିଲା ପରେ ଆପଣ ଯାହାକୁ ଯେତେ ଇଚ୍ଛା ଦେଇପାରିବେ । ଏଇଟା ଆମ ଅନୁଷ୍ଠାନର ପ୍ରେଷ୍ଟିଜ୍ କିନା । ତେବେ ଆମେ ଯେ ଗଣତାନ୍ତ୍ରିକ ନିୟମର ବିରୋଧ କରିବୁ ତା ନୁହେଁ । କମିଟିର ମେମ୍ବରମାନଙ୍କୁ ଆମେ ଆଗରୁ କହି ଦେବୁ ଯେ ଚିଫ୍ ପାଟ୍ରନ ଅମୁକଙ୍କୁ ଭଲ ପାଆନ୍ତି । ତା ପରେ ବଳଦମାନେ ବଳେ ବଳେ ମେହୀ ଖୁଣ୍ଟ ଚାରିପଟେ ବୁଲିବେନି । ସେ ହୋ ହୋ ହେଇ ହସିଲେ ।

ମୁଁ କହିଲି ଆଚ୍ଛା ତା ପରେ ? ବାକି କଥାଟା କହନ୍ତୁ ।

ସେ କହିଲେ, ମୁଁ ଭାବୁଛି ଏ ବର୍ଷର ଆୱାର୍ଡଟା ଆମେ ଏଇ ମାସ ଭିତରେ ଦେଇଦେବା । ମୁଁ ସବୁ ଠିକ୍ କରି ସାରିଛି । ଟାଉନ୍‌ହଲ ରେ ସେ ବିରାଟ ଅଡିଟରିୟମ୍‌ଟା ଆମେ ରିଜର୍ଭ କରିଦେବା । ମୁଖ୍ୟମନ୍ତ୍ରୀ ବା ସେଇ ଭଳି ଜଣେ କାହାକୁ ଡାକିବା ଆୱାର୍ଡ ଦେବାକୁ । ଆପଣ ସଭାପତିତ୍ୱ କରିବେ । ଏଇ ମାସ ଶେଷ ସପ୍ତାହଟା ଭଲ ହେବ । ଭଲ ଦିନଟି ଅଛି । ଶୁଭ ଦିନରେ ହିଁ କରାଯାଏ ।

ମୁଁ କହିଲି ଆରେ, କାହାକୁ ଆୱାର୍ଡ ଦିଆଯିବ ଠିକ୍ ହୋଇନି । ମୁଖ୍ୟମନ୍ତ୍ରୀ ସେଇ ତାରିଖରେ ଆସିବେ କି ନା ସେକଥା ଠିକ୍ ହୋଇନି । ତେବେ ଜଲ୍‌ଦି କେମିତି ହେବ ?

ସେ କହିଲେ ଏଇଟା କୋଉ ବଡ଼ କଥା ସାର୍ । ସେସବୁ ଟେଲିଫୋନ୍‌ରେ ହେଇଯିବ । ବାକି ରହିଲା ଆୱାର୍ଡ କିଏ ପାଇବ । ଏଇଟା ବି ଆପଣ ଚାହିଁଲେ ଗୋଟିଏ ମିନିଟ୍‌ରେ ହୋଇଯିବ । ତେବେ ଆପଣଙ୍କ ସୁବିଧା ପାଇଁ ମୁଁ ବରଂ କହିବି ପ୍ରଥମ ବର୍ଷଟା ମୋତେ ହିଁ ଦେଇ ଦିଅନ୍ତୁ ।

***

# ଟଙ୍କା କୋଟିଏ, କଥା ଗୋଟିଏ

ସେଦିନ ସାରା ରାଜ୍ୟରେ ଟି.ଭି., ରେଡିଓ ଓ ସମ୍ବାଦପତ୍ରରେ ପ୍ରଚାରିତ ହେଇଗଲା ଯେ, ମହାରାଜ ଜଣକଠାରୁ କୋଟିଏ ଟଙ୍କା ଲାଞ୍ଚ ଗ୍ରହଣ କରିଛନ୍ତି । ସକାଳ ପ୍ରଥମ ନିଉଜ୍ ବୁଲେଟିନ୍ କାହାକୁ ବା ଖରାପ ନ ଲାଗିବ ଅନ୍ତତଃ ମହାରାଜଙ୍କୁ ଯିଏ ଜାଣିଥିବ କଥାଟା ଶୁଣି ନିଶ୍ଚୟ ଆଶ୍ଚର୍ଯ୍ୟ ହୋଇଯିବ । ଥୋକେ କହିଲେ ମହାରାଜ ଯଦି ଲାଞ୍ଚ ନେବାକୁ ଚାହାନ୍ତେ ତେବେ କୋଟିଏ କଅଣ କେତେ କୋଟି ତାଙ୍କ ପାଦ ପଦ୍ମ ପାଖରେ କୁଢ଼େଇ ହେଇ ପଡ଼ନ୍ତା । ଆଉ ଥୋକେ କହିଲେ କୋଟିଏ କମ ହେଇଚି କି ? ସେତିକିରେ ତ ଆରାମ୍‌ରେ ଜୀବନ ଯାକ ଚଳି ହେବ । ସେ ସିଂହାସନରେ ବସି ଥାଆନ୍ତୁ ବା ନ ଥାଆନ୍ତୁ ।

କଥାଟ ବଢ଼ି ବଢ଼ି ଗଲା । ରାଜାଙ୍କୁ ବିରୋଧ କରୁଥିବା ଦଳେ କହିଲେ ସେ ତୁରନ୍ତ ସିଂହାସନରୁ ଓହ୍ଲେଇ ପଡ଼ି ରାଜମୁକୁଟ ତାଙ୍କ ସାନ ଭାଇଙ୍କ ହସ୍ତରେ ଅର୍ପଣ କରନ୍ତୁ । ଆଉ ଦଳେ କହିଲେ ସେ କଥା କେମିତି ହେବ ? କଥାଟା ବରଂ ବିଚାରାଳୟକୁ ଯାଉ । ସେଥିରେ ଯଦି ତାଙ୍କର ଦଣ୍ଡ ହୁଏ ସେ ଗ୍ରହଣ କରିନେବେ । କିନ୍ତୁ ବିନା ବିଚାରରେ କାହାକୁ ଦଣ୍ଡ ଦିଆ ନ ଯାଉ । ଏହା ଆମର ପରମ୍ପରା ବିରୋଧି ।

ବାଡ଼ ମଝିରେ ବସି ଦୁଇ ପାଖରେ ଗୋଡ଼ ଝୁଲାଉଥିବା ଦଳେ କହିଲେ ଆଃ ଏତେ କଥାରୁ କଅଣ ମିଳିବ ? ରାଜା ନିଜେ କହୁନାହାନ୍ତି ସେ ନେଇଛନ୍ତି କି ନା ।

ଗୁପ୍ତଚରମାନଙ୍କଠାରୁ ରାଜା ସବୁ ଶୁଣି ପାତ୍ର ମନ୍ତ୍ରୀମାନଙ୍କୁ କହିଲେ ଆମ୍ଭେ ଆସନ୍ତା ଶୁକ୍ଳ ପକ୍ଷ ଚତୁର୍ଥୀ ଗୁରୁବାର ଇଂରାଜୀ ସାତ ତାରିଖ ସନ୍ଧ୍ୟା ପଞ୍ଚାବନ ମିନିଟ୍ ତିରିଶ ସେକେଣ୍ଡ ଗତେ ଏବଂ ୩୫ ସେକେଣ୍ଡ ମଧ୍ୟେ ଏ ବିଷୟରେ ଗୋଟିଏ ବିବୃତ୍ତି ଦେବୁଁ ।

ସମସ୍ତେ ଖୁସି ହୋଇଗଲେ । ବିରାଟ ଆୟୋଜନ ଆରମ୍ଭ ହେଲା । ଦେଶ ବିଦେଶରୁ ସମ୍ବାଦଦାତାମାନେ ଧାଇଁ ଆସିଲେ । ଟିଭି ଓ ରେଡିଓମାନେ ତାଙ୍କର ସବୁ ଚ୍ୟାନେଲ୍ ଅନ୍ କରି ସାରା ବିଶ୍ୱକୁ ଏକ ରନିଂ କମେଣ୍ଟ୍ରି ଦେବାପାଇଁ ପ୍ରସ୍ତୁତ ହେଇଗଲେ । ବିଶାଳ ଜନସମାଗମ ସାରାଦେଶ ପାଇଁ ଯୁଗାନ୍ତକାରୀ ଐତିହାସିକ ମୁହୂର୍ତ୍ତକୁ ଅନେଇ ବସିଲେ ।

ରାଜନୈତିକ ଜ୍ୟୋତିଷମାନେ ଭବିଷ୍ୟତବାଣୀ ଫୋରକାଷ୍ଟ୍ କରିବାକୁ ଆରମ୍ଭ କଲେ ।

ନିର୍ଦ୍ଦିଷ୍ଟ ସମୟ ଆସି ପହଞ୍ଚିଲା । ଠିକ୍ ସନ୍ଧ୍ୟା ୭ ବାଜି ୫୫ ମିନିଟ୍ ୨୯ ସେକେଣ୍ଡରେ ରାଜା ଦରବାର ହଲକୁ ଆସିଲେ । ସାଥିରେ ତାଙ୍କର ମନ୍ତ୍ରୀ, ସେନାପତି, କଟୁଆଳ ଏବଂ ସ୍ୱାମୀ ଅଭୟାନନ୍ଦ । ଠିକ୍ ଗୋଟିଏ ସେକେଣ୍ଡ ପରେ ରାଜା ଘଡ଼ି ଦେଖିଲେ । ଏତିକିବେଳେ ସ୍ୱାମୀଜୀ ରାଜାଙ୍କ ହାତକୁ ଖଣ୍ଡିଏ କାଗଜ ବଢ଼େଇ ଦେଲେ, ରାଜା ପଢ଼ିଲେ – 'ମୁଁ କିଛି କହିବିନି ।'

କୋଉ ବିଷୟରେ ? ଜଣେ ବିଦେଶୀ ସାମ୍ବାଦିକ ପଚାରିଲେ । ତାଙ୍କ ମାଇକ୍ରୋଫୋନଟିକୁ ଉପରକୁ ଟେକି, 'ଯାହା ଆପଣ ଜାଣିବାକୁ ଚାହାନ୍ତି ।' ପାଖରେ ବସିଥିବା ମନ୍ତ୍ରୀ ସଂଗେ ସଂଗେ ଉତ୍ତର ଦେଲେ ।

ଏତକ କଥା କହିବାକୁ ଆପଣଙ୍କୁ ଏତେ ସମୟ ଲାଗିଲା ? ଆଉ ଜଣେ ସାମ୍ବାଦିକ ପଚାରିଲେ ।

'ତାର ଉତ୍ତର ମୁଁ ଦେବି ।' ଜଣେ ମୁଖପାତ୍ର ଉଠି ପଡ଼ି କହିଲେ । ଆମର ନିୟମ ଅନୁସାରେ ଷ୍ଟେଟ୍‌ମେଣ୍ଟ୍‌ଟି ପ୍ରଥମେ ଜଣେ କିରାଣୀ ଡ୍ରାଫ୍‌ଟ କରିବ । ତାକୁ ସେକ୍‌ସନ୍ ଚେକ୍ କରି ସିନିଅରଙ୍କୁ ଦେବ । ସେ ତାଙ୍କ ଉପରକୁ ପଠେଇବ । ତାପରେ ଆଇନ୍ ବିଭାଗକୁ ଯିବ । ସେଠୁ ଯିବ ରାଜାଙ୍କ ରାଜାଙ୍କ ରାଜନୈତି ପରାମର୍ଶଦାତାଙ୍କ ପାଖକୁ । ପୁଣି ତଳକୁ ଆସିବ । ଟାଇପ୍ ହେବ, ପୁଣି ଉପରକୁ ସେଇ ସିଡ଼ିରେ । ଫାଇନାଲ ଚେକିଂ, ପୁଣି ରାଜାଙ୍କ ପାଖକୁ । ତାପରେ ଯିବ ପି.ଆର.ବିଭାଗକୁ । ସେମାନେ ସମସ୍ତଙ୍କୁ ଡାକିବେ । ତାପରେ ଦିନ ଧାର୍ଯ୍ୟ ହେବ । କିନ୍ତୁ ଏ କ୍ଷେତ୍ରରେ ଆମେ ସବୁଠୁ କମ୍ ସମୟ ନେଇଛୁ ।'

ସେ ଦିନର ସଭା ସେଇଠି ଶେଷ ହେଲା ।

କିନ୍ତୁ ଦେଶରେ ସୃଷ୍ଟି ହେଉଥିବା ଚହଳ ସେମିତି ଗୁମୁରି ଗୁମୁରି ଉଠୁଥାଏ ପଡୁଥାଏ ସମୁଦ୍ରର ଢେଉ ପରି ।

କିଛି ଦିନ ପରେ କଥାଟା କିନ୍ତୁ ବିଚାରାଳୟକୁ ଗଲା । ସମସ୍ତେ ଖୁସି ହେଲେ । ଯା ହେଉ ଗୋଟିଏ ରାସ୍ତାକୁ ଆସିଲା, କଥାଟା ଗୋଟିଏ ଅମୂର୍ହା ଦେଉଳ ଭିତରେ ଏ ଯାଏ ପଶିଥିଲା ।

କୋର୍ଟରେ ବାଦୀଙ୍କ ଓକିଲ ଯୁକ୍ତି କଲେ । ମୋ କ୍ଲାଏଣ୍ଟ ଟଙ୍କା ଦେଇଥିବାର ଅନେକ ପ୍ରମାଣ ଅଛି । ଫଟୋ ମଧ ଅଛି । ଅନେକ ଲୋକ ଦେଖିଛନ୍ତି । ସେ ସମସ୍ତଙ୍କ ସାମନାରେ କୋଟିଏ ସ୍ୱର୍ଣ୍ଣ ମୁଦ୍ରାର ଗୋଟିଏ ପେଡ଼ି ରାଜାଙ୍କୁ ଦେଖେଇ ତାଙ୍କର ସାମନାରେ ତାଙ୍କ ସେକ୍ରେଟାରୀକୁ ଅର୍ପଣ କରାଯାଇଛି । ତାପରେ ରାଜା ମୋ କ୍ଲାଏଣ୍ଟକୁ ଆଶୀର୍ବାଦ ମଧ କଲେ । ସେ ଆଶୀର୍ବାଦ ବାଣୀର ଭିଡିଓ ଟେପ୍ ମଧ ଅଛି । ଓକିଲ ମହାଶୟ ଗୋଟିଏ ଫଟୋ ଓ ଭିଡିଓ ଟେପ୍ ଜଜ୍‌ଙ୍କ ସାମନାରେ ଥୋଇ ଦେଲେ ।

ତାପରେ ରାଜାଙ୍କ ଓକିଲ ଠିଆ ହେଲେ, ସେ ରାଜାଙ୍କ ସପକ୍ଷରେ ଦୃଢ଼ ଯୁକ୍ତି ଉପସ୍ଥାପିତ କଲେ । ସେ କହିଲେ ଆମ ରାଜାଙ୍କୁ ସାରା ବିଶ୍ୱରେ ସମସ୍ତେ ଜାଣନ୍ତି ସେ ଜଣେ ସଚ୍ଚୋଟ, ଧାର୍ମିକ ଓ ଦେଶପ୍ରେମୀ ବୋଲି । ତାଙ୍କ ବିରୁଦ୍ଧରେ ଏବେ ବେଶ କିଛି ଦିନ ହେଲା ଗୋଟିଏ ଷଡ଼ଯନ୍ତ୍ର ଚାଲିଚି । ତାର ଚାକ୍ଷୁସ ପ୍ରମାଣ ମୁଁ ଆମ ଗୋଏନ୍ଦା ମୁଖ୍ୟଙ୍କ ରିପୋର୍ଟ ଧର୍ମାବତାରଙ୍କ ସାମନାରେ ପେଶ କରିବାକୁ ଚାହେଁ । ସେ ରିପୋର୍ଟରେ ପରିଷ୍କାର ଲେଖା ଅଛି ଦଳେ ସ୍ୱାର୍ଥନ୍ୱେଷୀ ରାଜାଙ୍କୁ ଗାଦିଚ୍ୟୁତ କରାଇବା ଚେଷ୍ଟାରେ ଅଛନ୍ତି । ସେମାନଙ୍କ ତାଲିକାରେ ଆଜିର ବାଦୀଙ୍କ ନାମ ମଧ ଅଛି । ସେ ଜଣେ ଦଲାଲ୍ । ଦଲାଲ୍‌ମାନେ ଦେଶର ଶତ୍ରୁ । ସେମାନେ ଧଳାକୁ କଳା ଏବଂ କଳାକୁ ଧଳା କରିବାରେ ଧୁରନ୍ଧର । ତେଣୁ ତାଙ୍କ କଥାର କୌଣସି ମୂଲ୍ୟ ନାହିଁ ।

ଏତିକିବେଳେ ଜଜ୍ ମହୋଦୟ କହିଲେ ମୋତେ ସେସବୁ କଥାର କୌଣସି ଆବଶ୍ୟକତା ନାହିଁ । ଆପଣ ପ୍ରଥମେ କହନ୍ତୁ ଆପଣଙ୍କ ଗୋଏନ୍ଦା ମୁଖ୍ୟଙ୍କ ରିପୋର୍ଟକୁ ମୁଁ ସତ୍ୟ ବୋଲି କାହିଁକି ଗ୍ରହଣ କରିବି ।

ଓକିଲ କହିଲେ, ଆମ ଗୋଏନ୍ଦା ମୁଖ୍ୟ ଜଣେ ସିନିଅର ବୁରୋକ୍ରାଟ । ତାଙ୍କ ରିପୋର୍ଟକୁ ଯୁଗେ ଯୁଗେ ସତ୍ୟ ବୋଲି ଧରି ନିଆଯାଇଛି । ତାକୁତ

ସବୁବେଳେ ବେଦର ବାଣୀ ବୋଲି ଧରାଯାଉଚି । ତାକୁ ଅସ୍ୱୀକାର କଲେ ଆମର ଗଣତନ୍ତ୍ର ଲୋପ ପାଇଯିବ । ଆମର ଏବର ଶାସନର ମୂଳଦୁଆ ଦୋହଲି ଯିବ । ତାକୁ ଛାଡ଼ି ତ ଆମର ଆଉ ଦ୍ୱିତୀୟ ରାସ୍ତା ନାହିଁ ।

ମହାମାନ୍ୟ ଜଜ୍ କହିଲେ, ଆପଣ ଏତେ କଥା କହନ୍ତୁ ନାହିଁ । ଆପଣ ଗୋଟିଏ କଥାରେ କହନ୍ତୁ ଆପଣ ଏ ଫଟୋକୁ ଅସ୍ୱୀକାର କରୁଚନ୍ତି କି ?

ଓକିଲ - ନାଁ

ଜଜ୍ - ଏ ଭିଡିଓ ଟେପ୍ ?

ଓକିଲ - ତାକୁ ମଧ ସ୍ୱୀକାର କରୁଚି । ଜଜ୍ (ଟିକିଏ ରହି) ତେବେ ବାଦୀଙ୍କ ଓକିଲ ଏବେ ଯାହା ସବୁ କହିଲେ ଆପଣ ସେସବୁ ସ୍ୱୀକାର କରୁଚନ୍ତି ?

ଓକିଲ - (ସାମାନ୍ୟ ହସି) ଇଓର ଅନର ! ବାଦୀଙ୍କ ଓକିଲ ମୋର ଗୁରୁ । ମୁଁ ତାଙ୍କଠାରୁ ଶିକ୍ଷା ଗ୍ରହଣ କରିଚି । ତେଣୁ ତାଙ୍କ କଥା ମୁଁ ସ୍ୱୀକାର କରୁଚି ।

ସାରା ବିଚାରାଳୟ ସ୍ତବ୍ଧ । ମାଛିଟିଏ ଉଡ଼ିଗଲେ ମଧ ଶବ୍ଦ ଶୁଭିବ ।

ଜଜ୍ - ତେବେ ରାଜା ଟଙ୍କା ଗ୍ରହଣ କରିଛନ୍ତି ?

ଓକିଲ - ଧର୍ମାବତାର, ଆମ ରାଜା ଟଙ୍କା ଗ୍ରହଣ କରିଛନ୍ତି ଏ କଥା ବାଦୀଙ୍କ ଓକିଲ ମୋତେ କହିନାହାନ୍ତି ।

ଜଜ୍ ଚମକି ପଡ଼ିଲେ । ସେ କହିଲେ, ଆପଣ କଥାଟାକୁ ଏ ପାଖ ସେପାଖ କରୁଛନ୍ତି । ବାଦୀଙ୍କ ଓକିଲ ପରିଷ୍କାର କହିଛନ୍ତି କୋଟିଏ ସ୍ୱର୍ଣ୍ଣ ମୁଦ୍ରାର ଗୋଟିଏ ପେଡ଼ି.....

ଓକିଲ - ସେ ପେଡ଼ି କଥା ମୁଁ ଅସ୍ୱୀକାର କରୁନି ।

ଜଜ୍ -ସେଥିରେ କଅଣ ସ୍ୱର୍ଣ୍ଣ ମୁଦ୍ରା ନଥିଲା ?

ଏତିକିବେଳେ ବାଦୀଙ୍କ ଓକିଲ ରାଗିଯାଇ ଉଠିପଡ଼ି କହିଲେ, 'ତେବେ ସେ ପେଡ଼ିରେ କଅଣ ଥିଲା ?'

ରାଜାଙ୍କ ଓକିଲ - ସେ ଫଟୋ ଦେଖେଇ ପଚାରିଲେ କହନ୍ତୁ ସେଥିରେ କଅଣ ଥିଲା ?

ବାଦୀଙ୍କ ଓକିଲ ଚମକି ପଡ଼ିଲେ । ତାଙ୍କ ଗାଲରେ ଯେମିତି ଚାପୁଡ଼ାଟିଏ କିଏ ମାରି ଦେଲା ।

କୋର୍ଟରେ ପୁଣି ଚାପା ଗୁଞ୍ଜରଣ ସୃଷ୍ଟି ହେଲା ।

ଜଜ୍ ବିରକ୍ତ ହେଇ କହିଲେ - ଆପଣ କହୁନାହାନ୍ତି ସେଥିରେ କଅଣ ଥିଲା ।

ଓକିଲ - ମି. ଲର୍ଡ, ସେଥିରେ କିଛି ଆମ୍ବ ଥିଲା । ଭଲ ପାଚିଲା ଆମ୍ବ ଭାରି ମିଠା । ସେ ଆମ୍ବ ସମସ୍ତେ ଖାଇଚନ୍ତି । ଏଇ ଦେଖନ୍ତୁ ମୁଁ ଆମ୍ବରୁ ଗୋଟିଏ ଆଣିଚି । ମାନେ.ସେଇ ଗଛର । ବାଦୀଙ୍କ ବଗିଚାରେ ଏହି ଆମ୍ବଗଛ ଅନେକ ଅଛି । ଆପଣ ଏକଥା ତାଙ୍କୁ ପଚାରି ପାରନ୍ତି । ମୋର ଗୁରୁ ବୋଧେ ମୋଟେ ଜାଣି ନଥିବେ ଯେ ସେ ବଗିଚାରେ କେତୋଟି ଆମ୍ବଗଛ ଅଛି । ସେ ଜାଣି ନଥିଲେ ମୁଁ କହିବି । ତେବେ ସେ ଆଗ କହନ୍ତୁ ।

***

# ସୁବର୍ଣ୍ଣ (ସୁଯୋଗ) ଜୟନ୍ତୀ

ଆମ ଦେଶର ଯୋଉ ଦିନ ସ୍ୱାଧୀନତାର ପଚାଶ ବର୍ଷ ହେଇଗଲା ସେଦିନ ପ୍ରଧାନମନ୍ତ୍ରୀ ସେ ବର୍ଷଟାକୁ ଅତି ସରଳ ନିରାଡ଼ମ୍ବର ତଥା ମର୍ଯ୍ୟାଦାର ସହିତ ପାଳନ କରିବାକୁ ଦେଶବାସୀଙ୍କୁ ଆହ୍ୱାନ ଦେଲେ । ଏ କଥା ସେ ଲାଲକିଲ୍ଲାରେ ଜାତୀୟ ପତାକା ଉତ୍ତୋଳନ କଲାବେଳେ ଘୋଷଣା କଲେ । କଥାଟା ସଂଗେ ସଂଗେ ଖାଲି ସାରା ଦେଶ କାହିଁକି ସାର ପୃଥିବୀରେ ପ୍ରଚାରିତ ହେଇଗଲା ।

ଆଜିକାଲି ଆମ ଦେଶରେ ଇମିତି ଅବସ୍ଥା ହେଲାଣି ଯେ ନିପଟ ଗାଁ ଗଣ୍ଡାରେ ଯୋଉଠି ସପ୍ତାହକୁ ଥରେ ଷ୍ଟେଟ୍ ଟ୍ରାନ୍ସପୋର୍ଟର ସବୁଠୁ ଥନ୍ତଡ଼ା ଗାଡ଼ି ହଜାରେ ଥର ରାସ୍ତାରେ ପଡ଼ି ଉଠି ଯାଇ ନିର୍ଦ୍ଧାରିତ ସମୟର ପାଞ୍ଚ ଘଣ୍ଟା ପରେ କୌଣସି ପ୍ରକାରେ ପହଞ୍ଚିଗଲା ପରେ ଦେଖାଯାଏ ଯେ, ଯାତ୍ରୀମାନଙ୍କ ଦେହରେ ଫାଳେ ସାର୍ଟ ନ ଥାଏ ତ ସ୍ତ୍ରୀମାନଙ୍କର ଶାଢ଼ି ଆଁ କରି ସମସ୍ତଙ୍କୁ ଦେଖୁଥାଏ କିମ୍ବା ଛୋଟ ପିଲାର କପାଳରେ ମାଡ଼ ବାଜି ଫୁଲି ଆବୁ ପରି ହେଇଯାଇଥାଏ ସେ ପ୍ରକାର ଗାଁରେ ଆଉ କୋଉଠି ନ ହେଲେ ବି ସଂସ୍କୃତିର ସଘନ ଗ୍ଲୋବାଲାଇଜେସନ୍ ପାଇଁ ହେଇଥିବା ନୂତନ ଯୋଜନାନୁଯାୟୀ ଅନ୍ତତଃ ପଞ୍ଚାୟତ ଅଫିସ କି ଦଶ ବର୍ଷ ହେଲା ଗ୍ରାଣ୍ଟ ପାଇ ନଥିବା ପ୍ରାଇମେରୀ ସ୍କୁଲରେ କିମ୍ବା ଯଦି ସେ ସୁବିଧା ନାହିଁ, ତେବେ ଅଧାରୁ ଭାଙ୍ଗି ଯାଇଥିବା ଏବଂ ତାର ମାଙ୍କଡ଼ା ପଥର ସବୁ ଏବେ ଚୋରି ହେଇ ଯାଇଥିବା ଆମର ବହୁ ପୁରାତନ ଜୟଚଣ୍ଡୀ ମନ୍ଦିରରେ ସରକାରଙ୍କ ତରଫରୁ ଭୋଟ ବେଳେ ମାଗଣାରେ ଟିଭିଟିଏ ନିଶ୍ଚୟ ଥିବ । ଯୋଉ ଟିଭି ପାଖରେ ଆଜିକାଲି ଦିନ ରାତି ସବୁବେଳେ ଭିଡ଼ (କେବଳ ମଧ୍ୟାହ୍ନ ଭୋଜନ ସମୟକୁ ଛାଡ଼ି) । ତେଣୁ ପ୍ରଧାନମନ୍ତ୍ରୀଙ୍କ ଏ ଆହ୍ୱାନର ଭାଷଣ ସାରା ଦେଶରେ ଲୋକଙ୍କ ପାଖରେ ପହଞ୍ଚିବାକୁ ମୋଟେ ବେଶୀ ସମୟ ଲାଗିବନି ।

କଥାଟା ଶୁଣି ସାରିଲା ପରେ ଖାଲି ଆମ ମନରେ କାହିଁକି ସମସ୍ତଙ୍କ ମନରେ ଗୋଟିଏ ଶିହରଣ ଖେଳିଗଲା । ସତରେ ଚାହୁଁ ଚାହୁଁ ସ୍ୱାଧୀନତାର

ପଚାଶ ବର୍ଷ ହେଇ ଗଲା । କମ୍ କଥା ନୁହେଁ । ପୃଥିବୀର କେତେଟା ଦେଶର ଲଲାଟରେ ଏ ସୌଭାଗ୍ୟ ଶିରୋନାମାଟା ଲେଖା ହେଇଚି ଯେ ? ହେଇତ ଦିନେ ଅତି ନିର୍ଲଜ ପରି ଆକ୍ରମଣ କରିଥିବା ଚୀନ୍‌ର ଭାଗ୍ୟାକାଶ ମଧ ଏକଦମ୍ ଫାଙ୍କା ଦେଖାଯାଉଚି । ଆହୁରି ଦି' ବର୍ଷ ତାକୁ ଅପେକ୍ଷା କରିବାକୁ ହେବ ଆମ ପରି ସୁବର୍ଣ୍ଣ ଜୟନ୍ତୀ ପାଳନ କରିବାକୁ । ନିଶ୍ଚିତ ଭାବେ ସେ ଦୃଷ୍ଟିରୁ ସେ ଆମ ପଛରେ ପଡ଼ିଚି ବୋଲି କୁହାଯାଇପାରେ ।

ପ୍ରଧାନମନ୍ତ୍ରୀ ସେଦିନ ସନ୍ଧ୍ୟାରେ କେବିନେଟ୍ କମିଟିର ଗୋଟିଏ ବିଶେଷ ତଥା ଜରୁରୀ ଅଧିବେଶନ ଡକାଇଲେ ।

ମିଟିଂରେ ପ୍ରଧାନମନ୍ତ୍ରୀ କହିଲେ, ମୋ ଘୋଷଣା ତ ଆପଣମାନେ ଶୁଣିଲେ । ମନ୍ତ୍ରୀମାନେ କରତାଳି ଦେଇ ପୂର୍ଣ୍ଣ ସମର୍ଥନ କରୁଛନ୍ତି ବୋଲି ଜଣାଇ ଦେଲେ । ତାପରେ ପ୍ରଧାନମନ୍ତ୍ରୀ କହିଲେ, ଏବେ କୁହନ୍ତୁ ଆମେ ସେ ଘୋଷଣାକୁ କେମିତି କାର୍ଯ୍ୟକାରୀ କରି ପାରିବା । ପ୍ରଧାନମନ୍ତ୍ରୀ କହିଲେ ଆମର ଆର୍ଥିକ ଅବସ୍ଥା ଯେତେ ଖରାପ ଥିଲେ ମଧ ଏସବୁ ଜାତୀୟତାବାଦରେ ଉଦ୍‌ବୁଦ୍ଧ କରାଇଲା ପରି ଉତ୍ସବାନୁଷ୍ଠାନକୁ ପାଳନ କଲାବେଳେ ଆମେ ଖୁବ୍ ବେଶୀ କାର୍ପଣ୍ୟ ପ୍ରଦର୍ଶନ କରିବା ଉଚିତ୍ ହେବ ନାହିଁ । କାରଣ ଏଥିରେ ଦେଶ ବାହାରେ ଆମର ଯେ ସମ୍ମାନ ବଢ଼ିବ ଏଥିରେ ସନ୍ଦେହ ନାହିଁ । ତେଣୁ କଅଣ କଲେ ଆବେ ବର୍ଷଯାକ ଏ ଉତ୍ସବକୁ ନିରାଡ଼ମ୍ବର ଅଥଚ ସମ୍ଭ୍ରାନ୍ତ ଭାବରେ ପାଳନ କରି ପାରିବା ସେ ବିଷୟରେ ଆପଣମାନେ ସୁଚିନ୍ତିତ ମତାମତ ପ୍ରଦାନ କରନ୍ତୁ ।

ମନ୍ତ୍ରିମଣ୍ଡଳର ସଦସ୍ୟମାନେ ଅନେକ ପ୍ରସ୍ତାବ ଗୋଟି ଗୋଟି କରି ଦିଅନ୍ତେ ପ୍ରଧାନମନ୍ତ୍ରୀ ସେମାନଙ୍କୁ ସୁଚାଇ ଦେଲେ ଯେ ପ୍ରସ୍ତାବ ବେଶୀ ଲମ୍ବା ହେଲେ କିମ୍ବା ଆଲୋଚନା ଲମ୍ବି ଗଲେ ଆଜି ସନ୍ଧ୍ୟାରେ ରାଷ୍ଟ୍ରପତି ଭବନରେ ହେବାକୁ ଥିବା ନୈଶ୍ୟ ଭୋଜିରେ ଆମେ ଡେରି ହେଇଯିବା । ଆଉ ମୁଁ ମଧ ଏଠି ସେସବୁ ପ୍ରସ୍ତାବକୁ ପ୍ରାଞ୍ଜଳ ଭାବରେ ଗୋଟି ଗୋଟି କରି ଲେଖି ଅଯଥା ସମୟ ତଥା କାଗଜ ନଷ୍ଟ କରିବାକୁ ଚାହୁଁନି । ଯଦିଓ ପାଠକମାନେ ସମସ୍ତେ ସେ ମୂଲ୍ୟବାନ ପ୍ରସ୍ତାବଗୁଡ଼ିକ କଅଣ ବୋଲି ଜାଣିବାକୁ ନିଶ୍ଚୟ ଇଚ୍ଛା ପ୍ରକାଶ କରୁଥିବେ ।

ପ୍ରଧାନମନ୍ତ୍ରୀ ଘଡ଼ି ଦେଖି ଦଶ ମିନିଟ୍ ଭିତରେ ମିଟିଂ ଶେଷ ହେବା ଉଚିତ୍ ବୋଲି କହିବାରୁ ଅନ୍ୟମାନେ ପ୍ରାୟ ଚୁପ୍ ହୋଇଗଲେ । ଏବଂ ନିଜ ନିଜ ଘଡ଼ି ଦେଖି କେବିନେଟ ମିଟିଂରେ ଡିସ୍‌କସନ ପାଇଁ ଆଣିଥିବା ବହୁ ଜରୁରୀ ଫାଇଲ୍ ଓ କାଗଜପତ୍ର ସବୁ ପୁଣି ଗୋଛାଗୋଛି କରି ଫାଇଲରେ ରଖି ବାନ୍ଧିବାକୁ ଆରମ୍ଭ କଲେ ଏବଂ ଆଉ କେହି କେହି ସାମ୍ନାରେ ଥିବା ମିନେରାଲ ୱାଟର୍ ବୋତଲର ଠିପି ଖୋଲି ଟିକିଏ ପିଇବାକୁ ଆରମ୍ଭ କଲେ ।

ପ୍ରଧାନମନ୍ତ୍ରୀ କହିଲେ, ଏ ମହାନ୍ ତଥା ପବିତ୍ରତମ ଉତ୍ସବ ବର୍ଷଯାକ ପାଳିତ ହେବ । ତାକୁ ସରକାରୀ ଓ ବେସରକାରୀ ସ୍ତରରେ ଯିଏ ଯେମିତି ପାଳନ କରୁଚି କରୁ । ଆମର ସେଥିରେ ଆପତ୍ତି ନାହିଁ । ଏପରି କି ବିଦେଶରେ ମଧ୍ୟ ଆମ ଲୋକ କେହି ଏହାକୁ ପାଳନ କଲେ ସେଥିରେ ଆମେ ନିୟନ୍ତ୍ରଣ ରଖିବୁ ନାହିଁ । ତେବେ ଆମ ସରକାର ତରଫରୁ ଆମେ କେବଳ ଗୋଟିଏ କାମ କରିବାକୁ ଚାହୁଁଛୁ, ତାହା ହେଲା, ଏଇ ଅବସରରେ ଆମେ ଆମ ଦେଶର ପ୍ରତ୍ୟେକ ନାଗରିକକୁ ଖଣ୍ଡିଏ ଖଣ୍ଡିଏ ଜାତୀୟ ପତାକା ଉପହାର ସ୍ୱରୂପ ଦେବା । ତାହାହିଁ ହେବ ଏ ସୁବର୍ଣ୍ଣ ଜୟନ୍ତୀର ସ୍ମାରକୀ । ଏହି ପତାକା ସେମାନେ ପାଇବା ଦିନଠାରୁ ଆସନ୍ତା ସ୍ୱାଧୀନତା ଦିବସ ଯାଏ ନିୟମିତ ବ୍ୟବହାର କରିବେ । ସମସ୍ତେ ତାଙ୍କ କୋଠାବାଡ଼ି ଘର ଏପରିକି ଛୋଟ ଚାଳଘର ଝୁମ୍ପୁଡ଼ିରେ ମଧ୍ୟ ପତାକା ଉଡ଼ାଇବେ । ଟିକିଏ ରହି ସେ ପୁଣି କହିଲେ ଜଣେ ଲୋକ ଯଦି ତା ଛାତିରେ ବା ସାର୍ଟ ପକେଟରେ କିମ୍ବା ସାଇକେଲ୍, ସ୍କୁଟର, କାର ବା ଯେ କୌଣସି ଗାଡ଼ି ଉପରେ ଜାତୀୟ ପତାକାଟିଏ ଲଗେଇ ଚାଲେ, ତା ମନରେ ମନକୁ ମନ ଦେଶ ପ୍ରେମ, ଜାତୀୟତା ଭାବ ପ୍ରଭୃତି ଚିନ୍ତାଧାରା ନିଶ୍ଚୟ ଉଦ୍ରେକ ହେବାର ସୌଭାଗ୍ୟ ସେ ଅର୍ଜନ କରି ସାରିଚି, ଏଥିପାଇଁ ତା ମନରେ ନିଶ୍ଚୟ ଗୋଟିଏ ଗର୍ବ ତାକୁ ଉଲ୍ଲସିତ କରିଦେବ ।

କଥାଟାକୁ ସମସ୍ତେ ନିଜ ନିଜ ଜଂଘରେ ବା ସୋଫାରେ ବାହୁରେ ବା ସାମନା ଟେବୁଲରେ ହାତ ବାଡ଼େଇ ସମର୍ଥନ କଲେ ।

କିନ୍ତୁ ଜଣେ ମନ୍ତ୍ରୀ କହିଲେ ଯାହାର ଘର ନଥିବ ? ମାନେ ମୋର କହିବାର ଅର୍ଥ ହେଲା ଏବେ ବି ଆମ ଦେଶରେ ......

କଥା ଛଡ଼େଇ ଆଉ ଜଣେ କହିଲେ ଆଃ, କୋଉଠି ହେଲେ ତ ମୁଣ୍ଡ ଗୁଞ୍ଜିଚି । ସେଇଠି ଉଡ଼େଇବ ।

ଆଉ ଜଣେ ମନ୍ତ୍ରୀ କହିଲେ ଏତେ ଜାତୀୟ ପତାକା ଆସିବ କୋଉଠୁ ?

ଟେକ୍‌ସ୍‌ଟାଇଲ୍ ମନ୍ତ୍ରୀ କହିଲେ ଆମ ଦେଶରେ ବର୍ଷକୁ ମାତ୍ର ଦଶରୁ ପନ୍ଦର ଲକ୍ଷ ପତାକା ତିଆରି ହୋଇ ପାରିବ । କିନ୍ତୁ ଯଦି ଧୋତୀ, ଶାଢ଼ି ପ୍ରଭୃତି ଅନ୍ୟ ଉତ୍ପାଦନ ବନ୍ଦ କରି ଦିଆଯାଏ ତେବେ.....

ଆଉ ଜଣେ କହିଲେ କିଛି କ୍ଷତି ନାହିଁ । ଗୋଟିଏ ବର୍ଷ ସେସବୁ ତିଆରି ନ ହେଲେ କଅଣ କ୍ଷତି ହେବ ଯେ ? ଗୋଟିଏ ଜାତୀୟ ପତାକା ତୁଳନାରେ ସେଇଟା ଯେମିତି କିଛି ନୁହେଁ । କିନ୍ତୁ ପ୍ରଧାନମନ୍ତ୍ରୀଙ୍କ ଇଚ୍ଛାଟା ପୂରଣ ହେବା ଉଚିତ୍ ।

ପ୍ରଧାନମନ୍ତ୍ରୀ ମନା କଲେ । ସେ କହିଲେ ମୁଁ ତା ଚାହୁଁ ନାହିଁ । ତା ଛଡ଼ା ଏପରି କଲେ ବିରୋଧୀଦଳ ଆମକୁ ଅଯଥା ସମାଲୋଚନା କରିବାକୁ ସୁଯୋଗ ପାଇବ ।

ଟେକ୍‌ସ୍‌ଟାଇଲ୍ ମନ୍ତ୍ରୀ ପୁଣି କହିଲେ ମୋ ପାଖରେ ଗୋଟିଏ ପ୍ରସ୍ତାବ ଅଛି ଆମ ହେଣ୍ଡଲୁମ୍ ସେକ୍‌ସନର ଅବସ୍ଥା ଏବେ ମୋଟେ ଭଲ ନାହିଁ ।ସାର ଅଭାବରୁ ତୁଳା ଉତ୍ପାଦନ ବରାବର କମୁଛି । ତେଣୁ ଆମ ଯୋଜନାର ସଫଳ ରୂପାୟନ ପାଇଁ ଆମେ ଏମାନଙ୍କ ଉପରେ ନିର୍ଭର କରି ପାରିବା ନାହିଁ । ମୋର ପ୍ରସ୍ତାବ ହେଉଛି ଆମର ପୂରା ଆବଶ୍ୟକତାକୁ ଆମେ ଯଦି ବାହାରୁ ଆମଦାନୀ କରିବା, ତାହେଲେ ଠିକ୍ ସମୟରେ ଏବଂ କମ୍ ଖର୍ଚ୍ଚରେ ଆମେ ସୁନ୍ଦର, ସୁଦୃଶ୍ୟ ଓ ମଜ୍‌ବୁତ୍ ପତାକାଟିଏ ପାଇ ପାରିବା । ଗ୍ଲୋବାଲ ଟେଣ୍ଡର ମାଧ୍ୟମରେ ଯୋଗାଡ଼ କଲେ ରେଟ୍ ଏତେ ଶସ୍ତା ପଡ଼ିବ ଯେ ମାଗଣାରେ ଆଣିଲା ପରି ହେବ । ତା'ଛଡ଼ା ଅଡିଟ୍ ଆକାଉଣ୍ଟ ଦିଗରୁ ମଧ୍ୟ ଏକଦମ୍ ସେଫ୍ । ସତକଥା କହିବାକୁ ଗଲେ ଏଥିରେ ଆମର ମଧ୍ୟ ଲାଭ ଅଛି । ଯଦି ଆପଣ ଚାହାନ୍ତି ।

ସେ ଟିକିଏ ରହି ପ୍ରଧାନମନ୍ତ୍ରୀଙ୍କୁ ଅନେଇଲେ, ତାଙ୍କ ପ୍ରତିକ୍ରିୟା ଜାଣିବା ପାଇଁ । ଅନ୍ୟମାନେ ମଧ୍ୟ ପ୍ରଧାନମନ୍ତ୍ରୀଙ୍କୁ ଅନେଇଲେ ।

ପ୍ରଧାନମନ୍ତ୍ରୀ ସାମାନ୍ୟ ହସି ଦେଲେ ଏବଂ କହିଲେ, ବେଶ୍ ଏଥର ତେବେ ଆମେ ଉଠିବା ସମୟ ତ ହେଇଗଲାଣି ।

***

# ଚନ୍ଦ୍ରସେଣାର ଚନ୍ଦ୍ରାଲୋକ

ସେଦିନ ମତେ ମୁଖ୍ୟମନ୍ତ୍ରୀ ଡକେଇଛନ୍ତି ଜାଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମୁଖ୍ୟମନ୍ତ୍ରୀ ମୋତେ ବା କାହିଁକି ଡକେଇବେ ? ମୋ'ଠି ତାଙ୍କର କଅଣ କାମ ଥାଇପାରେ ସେ କଥା ଚିନ୍ତା କଲାବେଳକୁ ମୋ ମୁଣ୍ଡ ବୁଲେଇ ଦେଲା । ମୋଟ କଥା ହେଲା ମୁଖ୍ୟମନ୍ତ୍ରୀ ମୋତେ ଯେ ଜାଣିଥିବେ ଏକଥା ମୁଁ ଚିନ୍ତା କରି ପାରୁ ନଥାଏ ।

ମୋର ଯେତେ ଦୂର ମନେ ପଡ଼ୁଛି ତାଙ୍କ ସହିତ ମୋର ମାତ୍ର ଦୁଇଥର ଦେଖା ହେଇଚି । ଥରେ ଟିକଟ ମିଳିବା ଦିନ ପାର୍ଟି ଅଫିସରେ । ସେତେବେଳେ ସେ 'ଉଇସ ଇଉ ଗୁଡଲକ୍' କହିବାକୁ ମାତ୍ର ତିନି ମିନିଟ୍ ପାଇଁ ଆସିଥିଲେ । ହଲ ଭର୍ତ୍ତି ଥିଲା । ଯୋଉମାନେ ଟିକେଟ ପାଇଥିଲେ ଓ ଯୋଉମାନେ ଟିକେଟ୍ ପାଇ ନଥିଲେ ସେ ସମସ୍ତେ ଥିଲେ । କେବଳ ତାଲିକାରୁ ମୋ ନାଁଟା ଜାଣିଥିବେ । କାରଣ ସେଥିରେ ପଚାଶ ପରସେଣ୍ଟ 'ନିଉବ୍ଲଡ୍' ନେବାର ଥିଲା, ତା ଭିତରୁ ମୁଁ ଜଣେ । ତେବେ ସେଦିନ ସେଇ ସେତକ କହି ସେ ହଲରୁ ଏତେ ଶୀଘ୍ର ବାହାରି ଗଲେ ଯେ ତାଙ୍କ ସହିତ ପଦେ କଥା ହେବାକୁ ଟିକଟ ପାଇ ନଥିବା ଲୋକମାନେ ଯେତେ ଜଲଦି ଦଉଡ଼ି ଦଉଡ଼ି ଗଲେ ମଧ ସେମାନେ ଗେଟ୍ ଧରିଲା ବେଳକୁ ମୁଖ୍ୟମନ୍ତ୍ରୀଙ୍କ କାର୍ ଷ୍ଟାର୍ଟ ହେଇ ସାରିଥିଲା ।

ଆଉ ଦ୍ୱିତୀୟ ଥର ସେ ମୋତେ ଯୋଉଦିନ ଭେଟିଥିଲେ ସେଦିନ ମଧ ସେଇ ପାର୍ଟି ଅଫିସ୍‌ରେ । ଆମର ସେଦିନ ବିଜୟ ପର୍ବ ପାଳନ ହେଉଥାଏ । ଆମେ ସବୁ ଗୋଟିଏ ଲମ୍ବା ଧାଡ଼ିରେ ଠିଆ ହେଇଥାଉଁ । ସେ ଜଣ ଜଣ କରି ସମସ୍ତଙ୍କ ସହିତ କର ମର୍ଦ୍ଦନ କରୁ ଥାଆନ୍ତି । ମୋ ପାଖକୁ ଆସି ମୋ ଆଡ଼କୁ ହାତ ବଢ଼େଇଲା ବେଳକୁ ମୁଁ ଲମ୍ବ ହୋଇ ତାଙ୍କ ପାଦତଳେ ପଡ଼ିଯାଇଥିଲି ଗୋଟିଏ ଅଜଣା ଆବେଗରେ । ମୋତେ ଅନ୍ୟମାନେ ଉଠେଇ

ଠିଆ କରେଇଲେ । ସେତିକିବେଳେ ମୁଁ ବୁଝିପାରିଲି ଯେ ମୁଁ ତଳେ ପଡ଼ି ଯାଇଥିଲି । ଅନ୍ୟମାନେ ମୋ ସାର୍ଟରୁ ଧୂଳି ଝାଡ଼ିବା ସମୟରେ କେତେବେଳେ ଯେ ସେ ମୋତେ ଅତିକ୍ରମ କରି ଚାଲି ଯାଇଥିଲେ ସେକଥା ମୁଁ ଜାଣି ପାରିଲିନି । ମୁଁ ଯେତେବେଳେ ବଲ ବଲ କରି ମୋ ସାର୍ଟରୁ ଧୂଳି ଝାଡ଼ୁଥିବା ବନ୍ଧୁଙ୍କୁ ଅନେଇଲି ସେ କହିଲେ ତମେ ତାଙ୍କ ପାଦ ଧରି ନେବା ଅବସ୍ଥାରେ ଏମିତି ଭାବରେ ତଳେ ପଡ଼ିଗଲ ଯେ ମୁଖ୍ୟମନ୍ତ୍ରୀ ତମ ମୁଣ୍ଡଟାରେ ଝୁଣ୍ଟି ପଡ଼ିଥାନ୍ତେ । ସୌଭାଗ୍ୟକୁ ଆମେ ତାଙ୍କୁ ଧରି ପକେଇଲୁ । ମୁଁ ତାଙ୍କ ପଚାରିଲି, "କିନ୍ତୁ ମୁଖ୍ୟମନ୍ତ୍ରୀ.. ?" ଆଉ କିଛି କହିବା ପୂର୍ବରୁ ସେ କହିଲେ, ମୁଖ୍ୟମନ୍ତ୍ରୀ ତମକୁ ଦେଖି ଭାରି ଖୁସି ହେଲେ ।

ପରେ ପୁଣି ଭାବିଲି, କିନ୍ତୁ ସେଦିନ ମୁଁ ତାଙ୍କ ପାଦ ପାଖରେ ହଠାତ୍ ପଡ଼ିଯିବା ପରେ ଆହୁରି ଅନେକ ସଦସ୍ୟ ତ ତାଙ୍କ ପାଦ ଦି'ଟାକୁ ଜାବୁଡ଼ି ଧରି ନିଜ ମୁଣ୍ଡକୁ ସେଇ ପ୍ରବଳ ଭିଡ଼ ଭିତରେ ଜୋର କରି ବାଡ଼େଇଥିଲେ, ତେଣୁ ଏ ପ୍ରକାର ପରିସ୍ଥିତିରେ ସେ ଯେ ମୋତେ ଠିକ୍ ଭାବେ ମନେ ରଖିଥିବେ ଏଥିରେ ମଧ ମୋର ସନ୍ଦେହ ଜାତ ହେଉଥିଲା ।

ମୁଁ ମୋ ସ୍ତ୍ରୀଙ୍କୁ ଥରେ ପଚାରିଲି, ତମେ ଠିକ୍ ଜାଣିଚ ମୁଖ୍ୟମନ୍ତ୍ରୀ ନିଜେ ଫୋନ୍ କରିଥିଲେ ।

ସେ କହିଲେ, ମୁଁ ମିଛ କାହିଁକି କହିବି ? ପୁଣି ମୁଖ୍ୟମନ୍ତ୍ରୀଙ୍କ ନାଁରେ ।

ମୁଁ ନିଜକୁ ଧିକ୍କାର କଲି । ଆଃ ଏତେବେଳକୁ ମୋର ବାଥ୍‌ରୁମକୁ ଯିବାର କଅଣ ଦରକାର ଥିଲା । କି ଦୁର୍ଭାଗ୍ୟ । ମୋର ମନେ ହେଲା ଯେ ଯେମିତି ମୁଖ୍ୟମନ୍ତ୍ରୀ ନ ଥିଲେ । ଥରେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଏବଂ ଆସିଥିଲେ ମୋ ଜୀବନର ଅଲିଖିତ ଗୀତ ଗୋବିନ୍ଦର ପଦପୂରଣ କରିବାକୁ । ମୋ ବଦଳରେ ମୋ ସ୍ତ୍ରୀକୁ.... ।

ମୋ ସ୍ତ୍ରୀକୁ ମୁଁ ସେଇ ଜୟଦେବ ଆଖିରେ ଦେଖୁ ଦେଖୁ ସେ ନିଜେ ସ୍ୱୟଂ ଶ୍ରୀକୃଷ୍ଣଙ୍କ ସହିତ କଥା ହେଇଥିବାର ସୌଭାଗ୍ୟ ଅର୍ଜନ କରିଥିବାରୁ ସେଇ ମୁହୂର୍ତ୍ତରେ ମୋର ତାଙ୍କ ପାଦତଳେ ଲୋଟିଯିବାକୁ ଇଚ୍ଛା ହେଉଥିଲା । ମୁଁ ଅନ୍ତତଃ ଭାବ ବିହ୍ୱଳିତ ହୃଦୟରେ ତାଙ୍କୁ ପଚାରିଲି, କୁହ ପଦ୍ମା, ଆଉ ଥରେ କୁହ, ସେ ତୁମକୁ କଅଣ କହିଲେ ? ମୁଁ ଆଉ ଥରେ ମାତ୍ର ଶୁଣିବି ତୁମ ମୁହଁରୁ ।

ସେ ଟିକିଏ ବିରକ୍ତ ହେଲେ ବୋଧହୁଏ । କହିଲେ, କହିଲି ପରା ରାତି ଦଶଟାରେ ତୁମେ ଯାଇ ତାଙ୍କ ତାଙ୍କ ବାସ ଭବନରେ ଦେଖା କରିବ ।

ରାତି ଦଶଟାରେ ପୁଣି ତାଙ୍କ ବାସଭବନ ପରି ଏକ ନିଷିଦ୍ଧ ଇଲାକାରେ ମୋ ସହିତ ମୁଖ୍ୟମନ୍ତ୍ରୀଙ୍କର କଅଣ କଥା ଥାଇପାରେ ବୋଲି ଚିନ୍ତା କଲାବେଳକୁ ମୋର ଅନ୍ତରଙ୍ଗ ବନ୍ଧୁ ତଥା ମୁଖ୍ୟ ଇଲେକ୍‌ସନ କ୍ୟାମ୍ପେନର୍ ହୟଗ୍ରୀବ କହିଲେ, ମୁଁ ଜାଣେଁ । ସେ ଠିଆ ହେଇପଡ଼ି କହିଲେ ମୁଁ ଅନ୍ଦର ମହଲ କଥା କିଛି କିଛି ଜାଣେ । ବଡ଼ ବିନୟ ଆଖିରେ ମୁଁ ତାଙ୍କୁ ଚାହିଁବାରୁ ସେ ତାଙ୍କ ପାଟିଟା ମୋ କାନ ପାଖକୁ ଆଣି କହିଲେ ଆସନ୍ତା କାଲି ସନ୍ଧ୍ୟାରେ ଏ ମାସର ଦ୍ୱିତୀୟ ଶପଥ ପାଠ ଉତ୍ସବ ଅନୁଷ୍ଠିତ ହେବ । ତା'ପରେ ସେ ଆଉ କଅଣ କଅଣ କହିଲେ ସେ କଥା ମୋତେ ଆଉ ଶୁଣା ଯାଉ ନଥିଲା । ମୁଁ କିନ୍ତୁ ତାଙ୍କ କଥାକୁ ପୂରାପୂରି ଏକ ଅବାସ୍ତବ କଥା ବୋଲି ଧରି ନେଇଥିଲି ।

ଏ ଘଟଣା ଘଟିଲାବେଳକୁ ମାନେ ମୁଖ୍ୟମନ୍ତ୍ରୀଙ୍କଠାରୁ ଫୋନ ଆସିଲା ପୂର୍ବରୁ ଆମେ କେତେଜଣ ମାନେ ମୋର ଯୋଉ ବନ୍ଧୁମାନେ ମୋତେ ଇଲେକ୍‌ସନ୍‌ରେ ସବୁ ପ୍ରକାର ସାହାଯ୍ୟ କରିଥିଲେ ସେମାନଙ୍କୁ ନେଇ ଇଲେକ୍‌ସନ୍‌ରେ ହେଉଥିବା ଖର୍ଚ୍ଚବାର୍ଚ୍ଚର ଗୋଟାଏ ମୋଟାମୋଟି ତାଲିକା ପ୍ରସ୍ତୁତ କରୁଥିଲୁଁ । ସେମାନଙ୍କ ଭିତରୁ ଜଣେ ଆମ କଥା ଶୁଣି କହିଲେ, ସେ ଯେଉଁଥିପାଇଁ ଡକାଇ ଥାଆନ୍ତୁ ନା କାହିଁକି ଆମର ଖୁବ୍ ଶୀଘ୍ର ଏ କାଗଜପତ୍ର ସବୁ ପୋଡ଼ି ଦେବା ଉଚିତ୍ ହେବ ଏବଂ ସନ୍ଧ୍ୟା ପୂର୍ବରୁ ନୂଆ କାଗଜ ତିଆରି କରି କମିଶନକୁ ପଠାଇ ଦେବା ଉଚିତ୍ । ଟିକିଏ ରହି ସେ ପୁଣି ଧୀର ଗଳାରେ କହିଲେ, ହେଇପାରେ ଏଇକଥା ପାଇଁ ସେ ଆପଣଙ୍କୁ ଡକାଇଥିବେ ।

ମୁଁ ଟିକିଏ ଦୁଃଖ କରି କହିଲି, କାହିଁକି ତୁମେ ଏପରି ଖରାପ କଥା ଗୁଡ଼ାକ ଚିନ୍ତା କରୁଚ ଯେ ?

ସେ କହିଲେ ମୁଁ ଶୁଣିଲି, ମାନେ ଆଜି ଦି'ପହର ନିଉଜ୍‌ରେ କୁଆଡ଼େ କହିଚି ଯେ ସୁପ୍ରିମକୋର୍ଟ ସି.ବି.ଆଇକୁ ନିର୍ଦ୍ଦେଶ ଦେଇଚି, ହାଓ୍ୱଲା କେଶ୍ ଅନୁସନ୍ଧାନ କରି ମାସକ ଭିତରେ ଆମ ଇଲେକ୍‌ସନ ଖର୍ଚ୍ଚରେ ରିପୋର୍ଟ ଦେବାକୁ ।

ମୋ ପାଖରେ ବସିଥିବା ଆଉ ଜଣେ ବନ୍ଧୁ ଡେଇଁପଡ଼ି ଉଠିବସିଲେ ଏବଂ କହିଲେ, ମାର ଗୁଲି । ମୁଁ ଜୋର ଦେଇ କହିବି ଏଥିରେ କାହାର

କେଶାଗ୍ର ମଧ୍ୟ ବକ୍ର ହେବ ନାହିଁ । ତା'ପରେ ଟିକିଏ ଝିଙ୍କାରି ମୋତେ ଅନେଇ କହିଲେ, ଏଥିରେ କିଏ ନାହିଁ କହିଲେ ? ହଇଓ ସମସ୍ତେ ପରା ଅଛନ୍ତି । ସମସ୍ତେ ପରା କଥାବାର୍ତ୍ତା ହେଇ ଏ କାମ କରିଚନ୍ତି । ମାନେ ଦେଶ ସାରା ସମସ୍ତେ । କିଏ କଅଣ କରି ପକେଇବ ଆମେ ଦେଖିବାନି ।

ମୁଁ ତାଙ୍କ କଥା ଶୁଣି କହିଲି, ଆମେ ସମସ୍ତେ ମାନେ ଆମେ ଓ ଆମ ବିରୋଧୀ ଦଳ ସମେତ ସମସ୍ତେ ମିଶି ଯେତେବେଳେ ଗୋଟିଏ କାମ କରିଛୁଁ ସେତେବେଳେ ସେଇଟାକୁ ଅନ୍ୟାୟ ବୋଲି କେମିତି କୁହାଯିବ ? ଗଣତନ୍ତ୍ର ମାନେ ଆଉ କଅଣ ? ତା'ପରେ ଟିକିଏ ରହି ପୁଣି କହିଲି ହେଇପାରେ ଖୁବ୍ ବେଶୀରେ ଏଇଟା ଗୋଟିଏ 'ସିଷ୍ଟମ୍ ଫେଲ୍ୟୁଓ୍ବର ।' କିନ୍ତୁ ତାକୁ ବେଆଇନ୍ ବୋଲି କେମିତି କୁହାଯିବ ?

ଏକ୍‌ଜାକ୍‌ଟଲି । ସେଇଟା ତାଠୁ ଆଉ ବେଶୀ କିଛି ହେଇ ପାରେନା । ଆଉ ତା' ଛଡ଼ା ଏଥିରେତ 'ବ୍ରାଇବ' ବୋଲି କିଛି ନାହିଁ । ସେ ସବୁର ନାଁ ଗନ୍ଧ ମଧ୍ୟ ଏଥିରେ ନାହିଁ । ଟଙ୍କାଟା ହାଓ୍ବାରେ ଉଡୁଥିଲା ଯିଏ ପାରିଲା ଧରିଲା । ଆଉ ଜଣେ ବନ୍ଧୁ କହିଲେ, ଆଜ୍ଞା ଧରନ୍ତୁ କୋର୍ଟ କିଛି ଗୋଟିଏ ଏଡଭାର୍ସ୍ ଦେଲା । ସେଥିର କଅଣ ସବୁ ସଦସ୍ୟ, ମନ୍ତ୍ରୀ ମୁଖ୍ୟମନ୍ତ୍ରୀ ଓ ଅନ୍ୟମାନଙ୍କୁ ଏକାଥରେ ଆରେଷ୍ଟ କରାଯିବ ? ଆଉ ଯଦି କରାଯାଏ ତେବେ ଆସେମ୍ବ୍ଲି ଓ ପାର୍ଲାମେଣ୍ଟ ଆଉ ରହିବ ? ସମଗ୍ର ଆଡମିନିଷ୍ଟ୍ରେସନ୍‌ଟା ଧ୍ୱଂସ ହେଇ ଯିବନି ?

ଆମର ଏମିତିକା ଗୋଟେ ଗରମାଗରମ ଆଲୋଚନା ଚାଲିଥିଲାବେଳେ ଟେଲିଫୋନ୍‌ଟା ଆଉ ଥରେ ବାଜି ଉଠିଲା । କ୍ରିଂ କ୍ରିଂ....

ଏଥର ମୁଁ ଦୌଡ଼ିଗଲି ଫୋନ୍ ପାଖକୁ । ଏ ସୁଯୋଗଟା ଏଥର ଆଉ ମୁଁ ପଦ୍ମାକୁ ଦେବାକୁ ଚାହୁଁନଥିଲି । ଛାତିଟା ପ୍ରବଳ ବେଗରେ କମ୍ପୁଥିଲା ବେଳେ ମୁଁ ରିସିଭର ଉଠେଇ ଖନି ମାରି ଯାଉଥିବା ପାଟିରେ କହିଲି, ସାର୍ ନମସ୍କାର । ମୁଁ କହୁଛି ସାର୍ । ଗଲାଥର ମୁଁ ବାଥରୁମ୍... । ତା'ପରେ ଟିକିଏ ରହି 'ଆଜ୍ଞା' କହି ରିସିଭର ଥୋଇ ଦେଲି ଏବଂ ଶାନ୍ତିରେ ନିଃଶ୍ୱାସ ମାରିଲି । ତା'ପରେ ବଡ଼ ବୀର ଦର୍ପରେ ବନ୍ଧୁମାନଙ୍କଠାକୁ ଫେରି ଆସିଲାବେଳକୁ ତିନିଜଣ ଯାକ ଉଠିଯାଇ ମୋତେ ଦୁଆର ବନ୍ଧରୁ ବନ୍ଦେଇ ଆଣି ପଚାରିଲେ, କଅଣ ହେଲା ?

ମୁଁ ବଡ଼ ହାଲକା ଭାବରେ କହିଲି, ନାଇଁମ ୩ଂ ନମ୍ବର ଥିଲା । ସେମାନଙ୍କ ମୁହଁଟା ଫିକା ପଡ଼ିଗଲା ସିନା । କିନ୍ତୁ ଜଣେ କହିଲା ଆପଣ ବ୍ୟସ୍ତ ହୁଅନ୍ତୁନି । ମୁଁ ଠିକ୍ ଜାଣେ, କଲ୍ ଆହୁରି ଥରେ ନିଶ୍ଚୟ ଆସିବ । କାହିଁକି ଜାଣିଚନ୍ତିକି ?

'କାହିଁକି ? ମୁଁ ପଚାରିଲି ।

"ସେଇ ଯେ ଆପଣ ସେଦିନ ଅକସ୍ମାତ୍ ତଳେ ପଡ଼ିଗଲେ । ସେଇଟା ହେଉଚି ଅସଲ କଥା ।

କଅଣ ହେଲା ସେଇଠୁ ? ଆଉ ଜଣେ ପ୍ରଶ୍ନ କଲେ । ଏମିତି ୟାଙ୍କ ଦେଖାଦେଖି ଅନେକ ତ ତଳେ ଜାଣିଶୁଣି ପଡ଼ିଯାଇଥିଲେ ।

ପ୍ରଥମ ଜଣକ କହିଲେ, ଧେତ୍ ବୁଝୁଚ ଛେନା.... ମୁଖ୍ୟମନ୍ତ୍ରୀ କଅଣ ଏଡ଼େ ବୋକା ହେଇଛନ୍ତି ଯେ ସେ ବୁଝି ପାରିବେନି କୋଉଟା ଭେଲ ଓ ଭଲ । ଟିକିଏ ରହି ସେ ପୁଣି କହିଲେ, ଛେ, ଏଗୁଡ଼ାକ ଏତେ ତଳକୁ ଖସି ଯାଇ ପାରିଲେ ।

ଆଉ ଜଣକ କହିଲେ । ମୁଁ ବି ସେଇ କଥା ଭାବୁଛି । ସେଇ ଦିନଠୁ ମୁଖ୍ୟମନ୍ତ୍ରୀଙ୍କ ନଜର ୟାଙ୍କଠି ପଡ଼ିଚି ।

ମୁଁ ଟିକିଏ ଉଲୁସି ଉଠିଲି । ଏତିକିବେଳେ ମୋ ସ୍ତ୍ରୀ ଗୋଟିଏ ଥାଳିରେ ଥାଳିଏ ରସଗୋଲା ଆଣି ଆମ ସାମନାରେ ଥୋଇ ଦେଲେ । ଥାଳିରେ ରସଗୋଲାକୁ ଆମେ ମାତ୍ର ପାଞ୍ଚଜଣ । ମୋର ଡାଇବେଟିସ୍ । ତେଣୁ ମୋତେ ଛାଡ଼ି ଆଉ ସମସ୍ତେ.... ।

ଜଣେ ପାଟିରେତ ଏକାଥରେ ଦି'ଟା ରସଗୋଲା ପୂରେଇ କହିଲା, ସାର୍ ମୁଁ କହି ଦଉଚି ଆପଣ ନିଜ ଭିତରେ ଟିକିଏ ଗାମ୍ଭୀର୍ଯ୍ୟ ଆଣନ୍ତୁ । ଏତିକିବେଳେ ନିଜର ଗୋଟେ ଓଜନ ଥିବା ଦରକାର । କାରଣ ମୋତେ ଯାହା ଦେଖାଯାଉଚି ଆପଣଙ୍କୁ ଇଣ୍ଡଷ୍ଟ୍ରି ନଚେତ୍ ଖଣି, ଜଙ୍ଗଲ କିମ୍ବା ଏକ୍ସାଇଜ ମିଳିବ । କାରଣ ଏଥିରେ ମୁଖ୍ୟଙ୍କ ଇଣ୍ଟରେଷ୍ଟ୍ ବେଶି ଏବଂ ଏଗୁଡ଼ିକ ସେ ତାଙ୍କ ପାଖ ଲୋକଙ୍କୁ ହିଁ ଦେବେ ।

ଆଉ ଜଣେ କହିଲା, 'ମୋତେ ବି ସେମିତିକା ଲାଗୁଚି । ଆଉ ଏତିକିବେଳେ ଆପଣ ଯଦି ଟିକିଏ ହୁସିଆର ନ ହେବେ ତେବେ ପଞ୍ଚାୟତିରାଜ ଛଡ଼ା ଆଉ କିଛି ନୁହେଁ । ବର୍ଷଯାକ ବସି ଖଡ଼ା ଚୋବାଉଥିବ ।"

ଜଣେ ଅଳ୍ପ ହସି କହିଲା, 'ସେତେବେଳେ ସାର୍ ଆମକୁ ଆଉ ମନେ ପକେଇବା ଦରକାର ନାହିଁ ।

ହଠାତ୍ ଟେଲିଫୋନ୍‌ଟା ଆଉ ଥରେ ବାଜି ଉଠିଲା । ଏଥର ମୋତେ ଲାଗିଲା ଫୋନ୍‌ର ଶବ୍ଦଟା ଟିକିଏ ଭିନ୍ନ ପ୍ରକାରର । ମାନେ କ୍ରିଂ କ୍ରିଂ ନ ହେଇ ଯେମିତି ଘ୍ରିଂ ଘ୍ରିଂ ହେଲାପରି ଲାଗିଲା । ମୋତେ ଥରେ କିଏ ଜଣେ କହିଥିଲେ, ମୁଖ୍ୟମନ୍ତ୍ରୀ କିମ୍ବା ସେଇପରି କୌଣସି ଭି.ଭି.ଆଇ.ପି.ଙ୍କ ଠାରୁ ଫୋନ୍ ଆସିଲେ ସେମିତି ଶବ୍ଦ ହୁଏ । ଏ ପ୍ରକାର ଶବ୍ଦ ମୋ କାନରେ ଆଗରୁ କେବେ ପଡ଼ି ନଥିଲା । ମୁଁ ପୁଣି ଥରେ ଝପଟି ଗଲି ଫୋନ୍ ପାଖକୁ । ମୁଁ ଯେତେ ଜୋର୍‌ରେ ଯାଇଥାଏଁ ମୋ ଛାତିର ସ୍ପନ୍ଦନ ସେତିକି ଜୋର୍‌ରେ ବଢ଼ି ବଢ଼ି ଯାଇଥାଏ । ରିସିଭର ଧରିବାକୁ ଏଥର ମଧ୍ୟ ମୋ ସ୍ତ୍ରୀ ଭିତରୁ ଦୌଡ଼ି ଆସି ଥାଆନ୍ତି । ମୁଁ ତାଙ୍କ ହାତକୁ ଛିଞ୍ଚାଡ଼ି ଦେଇ କହିଲି "ସାର୍ ନମସ୍କାର, ସାର୍, ମୁଁ ଅଙ୍କ କହୁଚି ସାର୍'

'କୋଉଠି କହିଲେ ସାର୍ ?'

'ହୋଟେଲ ବାଦ୍‌ଶା ?'

'ରାତି ୧୦ଟାରେ ?'

'ମୋତେ ପରା ତାଙ୍କ ରେସିଡେନ୍‌ସକୁ .....'

'ସାର ଠିକ୍ ଅଛି, ମୁଁ ସେଠାକୁ ଯିବି ନାହିଁ ।'

'କିଏ କହିଲେ ସାର୍ ?'

'ଓ, ଆପଣ ତାହେଲେ ତାଙ୍କ ପି.ଏ. ଅଫିସ୍‌ରୁ.... ?'

'ଠିକ୍ ଅଛି ସାର୍, ମୁଁ ଚାଲିଯିବି ।'

ମୁଁ ଗୋଟିଏ ଭାରାକ୍ରାନ୍ତ ମୁଣ୍ଡ ନେଇ ବନ୍ଧୁମାନଙ୍କଠାକୁ ଫେରି ଆସିଲି । ବନ୍ଧୁମାନେ ମୋତେ କୁଣ୍ଢେଇ ପକେଇଲେ । ହିପ୍, ହିପ୍ ହୁର୍ ରେ କହି ସେମାନେ ମୋତେ ଉପରକୁ ଟେକି ଧରିଲେ ।

ମୋ ସ୍ତ୍ରୀ ଭିତରୁ ଦଉଡ଼ି ଆସି କହିଲେ, ନା ନା ଆପଣମାନେ ତାଙ୍କୁ ସେମିତି ଟେକା ଟେକି କରନ୍ତୁ ନାହିଁ । ଭୋଟ୍ ପ୍ରଚାରବେଳେ ତାଙ୍କ ଉପରେ

ଯୋଉ ମାଡ଼ ହେଇଥିଲା ସେଥିରେ ତାଙ୍କ ମେରୁଦଣ୍ଡ ଜଖମ ହେଇ ଯାଇଚି । ଜଖମତ ହେଇନି ବରଂ ଭାଙ୍ଗି ଖଣ୍ଡ ଖଣ୍ଡ ହେଇ ଯାଇଚି । ତାଙ୍କର ସେ ଶକ୍ତି ଆଉ କିଛି ଅଛି କି ?

ତାଙ୍କ ଭିତରୁ ଜଣେ କହିଲା, କିଛି ଚିନ୍ତା ନାହିଁ । ଶପଥ ନେବା ପର ଦିନ ଏଇଟାକୁ ଠିକ୍ କରିବା ହେବ ଆମର ପ୍ରଥମ କାର୍ଯ୍ୟକ୍ରମ । ଭାଙ୍ଗି ଖଣ୍ଡ ଖଣ୍ଡ ହେଇଥିବା ମେରୁଦଣ୍ଡ ନେଇ ଗୋଟାଏ ମନ୍ତ୍ରୀ ଦେଶର କି କାମ ବା କରି ପାରିବ ।

ଆଉ ଜଣେ କହିଲା, ଶପଥ ନେବା ପର ଦିନ ଆପଣ ଆମେରିକା ଯିବାକୁ ପ୍ରସ୍ତୁତ ହୁଅନ୍ତୁ । ସେଠୁ ଦରକାର ପଡ଼ିଲେ ପୂରା ନୂଆ ମେରୁଦଣ୍ଡ ଟିଏ ନେଇ ଆସିବେ । ଆଳୁ ବାଇଗଣ ପରି ସେଗୁଡ଼ା ସେଠି ବଜାରରେ ମିଳୁଚି । ସେ ଗୁଡ଼ାକ ଏତେ ଶକ୍ତଯେ କେହି ତାକୁ ହାତୁଡ଼ିରେ ପିଟି ପିଟି ମଧ ଜଖମ କରି ପାରିବନି ।

ମୁଁ କହିଲି ସେଥିରେ ତ ଅନେକ ପଇସା ଖର୍ଚ୍ଚ ହେବ । ଏତେ ପଇସା କ'ଣ ସରକାର ଦେବ ?

ସେ କହିଲେ, ଦବନି ମାନେ ? କିଓ ମନ୍ତ୍ରୀମାନଙ୍କ ନାକରୁ ସିଂଘାଣୀ ବହିଲେ ପରା ସେମାନେ ଆମେରିକା ଯାଉଛନ୍ତି ଟ୍ରିଟ୍‌ମେଣ୍ଟ ପାଇଁ । ସେଥର ତ ଜଣେ ମନ୍ତ୍ରୀ ଖାସ ଏଇଥିପାଇଁ ମାସେ କାଳ ସସ୍ତ୍ରୀକ ଆମେରିକାରେ କଟେଇ ଆସିଲେ ।

ଅନ୍ୟମାନେ ହୋ ହୋ ହସି ଉଠିଲେ ।

ମୁଁ କହିଲି ଏ କଥାଟାକୁ ତମେମାନେ ଏମିତି ହାଲୁକା ଭାବରେ ନେବା ଠିକ୍ ନୁହେଁ । ପ୍ରକୃତରେ ଯଦି କାହାରି ନାକରୁ ସବୁବେଳେ ସିଂଘାଣୀ ବହେ ତେବେ ସେ ତାକୁ ପୋଛିବ ନା କାମ କରିବ ? ମନ୍ତ୍ରୀଙ୍କର ତ ସବୁବେଳେ ମିଟିଂ । ଆଉ ମିଟିଂରେ ବସିଥିବାବେଳେ ସିଂଘାଣୀଟା ..... କେତେ ଖରାପ କଥା କୁହନା ? ତା'ପରେ ଆମର ଏଠି ଯୋଉ ଡାକ୍ତର.... ଛାଡ଼ ଛାଡ଼ ! ତାଙ୍କ କଥା ନ କହିବା ଭଲ ।

ତେବେ ଯେ ଯାହା ହେଉ, ଶପଥ ଗ୍ରହଣ ଉତ୍ସବକୁ ଯିବାକୁ ମୁଁ ମାନସିକ ଏବଂ ଶାରୀରିକ ସ୍ତରରେ ପ୍ରସ୍ତୁତ ରହିବାକୁ ମୋର ବନ୍ଧୁମାନେ ମୋତେ

ଏକ ପ୍ରକାର ବାଧ କଲେ । ଅନେକଗୁଡ଼ିଏ କାରଣରୁ ଏଥର ଶପଥ ଗ୍ରହଣଟା ସେଠି ହେବ ବୋଲି ସେମାନେ ମୋତେ ବୁଝେଇ ଦେଲେ । ପୂର୍ବରୁ କେତେକ ନଜିର ଥିବାର କଥା ମଧ ସେମାନେ ମୋତେ କହିଲେ । ମୋର  ମଧ ଧାରଣା ହେଲା ଯେ ଖାଲି ଗୋପନୀୟତା ରକ୍ଷା ପାଇଁ ନୁହେଁ ରାଜଭବନ ଅପେକ୍ଷା ହୋଟେଲ ବାଦଶା ହିଁ ଶପଥ ଗ୍ରହଣ ଉତ୍ସବ ପାଇଁ ଉପଯୁକ୍ତ ସ୍ଥାନ । ମୁଁ ଏଥିପାଇଁ ଆମ ମୁଖ୍ୟମନ୍ତ୍ରୀଙ୍କ ଟଏସ୍‌କୁ ତାରିଫ କରୁଥିଲି । ତେଣୁ ଏ ଘଟଣାଟା ଯେ ମୋ ପାଇଁ ଏକ ଐତିହାସିକ ଘଟଣା ହେବାକୁ ଯାଉଚି ଏଥିରେ ମୋର ଆଉ ସନ୍ଦେହ ନଥିଲା ।

ମୁଁ ଆଗରୁ ଶୁଣିଥିଲି ହେଟେଲ ବାଦାଶାହଟା ଦୁବାଇର ଜଣେ ବିଖ୍ୟାତ ହୋଟେଲ ବ୍ୟବସାୟୀଙ୍କର । ଖାଲି ଭାରତରେ ନୁହେଁ ପୃଥିବୀର ଅଧିକାଂଶ ଦେଶରେ ତାଙ୍କର ତାରକା ହୋଟେଲ ମାନ ଅଛି । ଏଗୁଡ଼ିକ ମୁଖ୍ୟତଃ ଫରେନ୍‌ରମାନଙ୍କ ପାଇଁ । ଏଥିରେ ଭାରତୀୟମାନେ କ୍ୱଚିତ ରହନ୍ତି । ମୁମ୍ବାଇ ବମ୍ ବ୍ଲାଷ୍ଟ ବେଳେ ଏଇ ହୋଟେଲ୍‌ରେ କୁଆଡ଼େ ଦାଉଦ ଇବ୍ରାହିମ୍‌ର ଅନେକ ଲୋକ ରହିଥିଲେ । ଠିକ୍ ଏମାନେ ହୋଟେଲ୍ ଛାଡ଼ିବା ପରେ ପରେ ପୁଲିସ୍ ଯାଇ ସେ ହୋଟେଲ୍ ଖାନତଲାସ କରିଥିଲା ବୋଲି ଭାରତର ବହୁ ସମ୍ବାଦପତ୍ର, ସରକାର ଜାଣିଶୁଣି ଏପରି କଲେ ବୋଲି ଖୋଲାଖୋଲି ସମାଲୋଚନା କରିଥିଲେ ।

ହେଟେଲ୍ ସାମନାରେ ମୁଁ କାର୍‌ରୁ ଓହ୍ଲାଇଲାବେଳକୁ ଠିକ୍ ରାତି ଦଶଟା । ସାମନାରୁ ହୋଟେଲ୍‌କୁ ଦେଖୁ ଦେଖୁ ମୋ ଆଖି ଖୋସି ହେଇଗଲା ।

ଅନେକ ଦିନ ତଳେ ମୁଁ ଥରେ କୋଉ ଗୋଟେ ପିକ୍‌ଚରରେ କେଜାଣି ଜୁହି ଚାଓ୍ୱଲାକୁ ଗୋଟିଏ ବାଥରୁମ୍ ଦୃଶ୍ୟରେ ମୋ ଆଡ଼କୁ ଅଧା ବଙ୍କେଇ ଠିଆ ହୋଇଥିବାର ଦେଖିଥିଲି । ହୋଟେଲ ବାଦଶାକୁ ରାତିରେ ଦେଖିଲେ ମୋର ସେଇ କଥାଟି କେମିତି କେଜାଣି ମନେ ପଡ଼ି ଯାଉଥିଲା । ମୁଁ କରିଡ଼ରର ଅପରୂପ ଶୋଭା ସମ୍ଭାର ଏବଂ କାନ୍ଥରେ ଲଟକା ଯାଉଥିବା ବହୁ ସୁନ୍ଦର ଜୀବନ୍ତ ନାରୀ ମୂର୍ତ୍ତିଗୁଡ଼ିକୁ ଦେଖୁ ଦେଖୁ ଧୀରେ ଧୀରେ ଆଗଉଥିଲି । ହଠାତ୍ ମୋ ସାମନାରେ ଗୋଟିଏ ଲାଇଫ୍ ସାଇଜ ଦର୍ପଣ ଥିବାର ଦେଖିଲି ।

ଦର୍ପଣ ଭିତରେ ମୋର 'ମୁଁ' କୁ ଦେଖି ମୁଁ ଆଶ୍ଚର୍ଯ୍ୟ ହେଇଗଲି । ଗଳା ଚିପା ନୂଆ କୋର୍ଟଟା ଯେ ମୋତେ ଏତେ ସୁନ୍ଦର ମାନୁଚି ଏକଥା ମୁଁ ସେଇଠି

ଜାଣିଲି । ନୂଆ କରି ପିନ୍ଧିଥିବା ଗାନ୍ଧୀ ଟୋପିଟାରେ ମୋତେ ଟିକିଏ ଅଡୁଆ ଲାଗୁଥିଲେ ମଧ ମୋର ମନ୍ତ୍ରୀତ୍ୱର ପର୍‌ସନାଲଟି ଯେ ଏଥିରେ ଅନେକ ବଢୁଟି ଏଥିରେ ସନ୍ଦେହ ନଥିଲା । ମୁଁ ଦର୍ପଣ ସାମନାରେ ସେଇଟାକୁ ଆଉଥରେ ଟିକିଏ ସଜାଡ଼ି ନେଉଥିବାବେଳେ ଜଣେ ଅପେକ୍ଷାକୃତ ବୟସ୍କ ବ୍ୟକ୍ତି ମୋ ପଛପଟୁ ଆସି ମୋତେ ପଚାରିଲେ 'ତୁମେ ବୋଧେ ଅଙ୍କାତ ଦାସ । ?

ମୋତେ ତାଙ୍କୁ ଚିହ୍ନା ପରି ଲାଗିଲା । ସେ ଜଣେ ସିନିୟର ମନ୍ତ୍ରୀ ହୋଇଥିବେ ଭାବି ମୁଁ ସଂଗେ ସଂଗେ ଦୁଇ ହାତ ଯୋଡ଼ି ତାଙ୍କ ସାମନାରେ ଠିଆ ହେଇ କହିଲି ମୋତେ ଖାଲି 'ଅଙ୍କ' କିମ୍ବା 'ଦାସ' ବୋଲି ସମ୍ବୋଧନ କରନ୍ତୁ ସାର । ମୁଁ ସେଇ ନାମରେ ପରିଚିତ ହେବାକୁ ଚାହେଁ ।

ସେ ବୋଧେ ଆଉ କିଛି କହିବାକୁ ଯାଉଥିଲେ । ମୁଁ କିନ୍ତୁ ମୋ କଥାର ଜୋର ରଖି କହିଲି, 'ଅଙ୍କଟା ମୋ ବାପାଙ୍କ ପାଖକୁ ଫେରିଯାଉ ସାର୍ । ସେ ନାଁ ସେ ଦେଇଥିଲେ ସ୍ନେହରେ । ମୋତେ ତେବେ ଖାଲି ଆପଣ 'ଦାସ' ବୋଲି କହିବେ । ଦେଶ ସେବା କରିବାଟାକୁ ଯେତେବେଳେ ଜୀବନର ଗୋଟାଏ ପବିତ୍ର ବ୍ରତ ବୋଲି ମାନି ନେଇଚି ସେତେବେଳେ ମୋ ମତରେ ଆମେ ସମସ୍ତଙ୍କର 'ଦାସ' ଏଇ ନାଁଟା ମୋ ପାଇଁ ବେଶି ଏପ୍ରୋପ୍ରିଏଟ୍ ।'

ସେ ହସି ପକାଇଲେ । ଆଉ ମୁଁ ମଧ ।

ତାପରେ ସେ ମୋତେ କହିଲେ, ବେଶ ତାହାହିଁ ହେବ । ତୁମେ ଏଥର ଯାଅ । ମେନ୍ ହଲରେ ସମସ୍ତେ ଅପେକ୍ଷା କରିଛନ୍ତି । ସେ ମୋତେ ମେନ୍ ହଲକୁ ରାସ୍ତା ବତେଇ ଦେଲେ ଏବଂ ନିଜେ ତରତରରେ ବିପରୀତ ଦିଗକୁ ଚାଲି ଗଲେ । ବଣ ଭିତରେ କି ପଡ଼ିଆ ମଝିରେ ସୂର୍ଯ୍ୟ ବୁଡ଼ାଣି ବେଳଟାରେ ବୁଦି ବୁଦିକିଆ କଣ୍ଟାବଣ ଭିତରେ ମେଣ୍ଢା କି ଛେଳି ଛୁଆ ହଜି ଯାଇଥିଲେ ଗୋରୁମଣା ଟୋକା ଯେମିତି ଆତଙ୍କିତ ଚିତ୍ତରେ ଏପଟ ସେପଟ ଅନେଇ ଅନେଇ ଶୀଘ୍ର ଶୀଘ୍ର ଏପାଖ ସେପାଖ ହେଇ ଦେଖୁଥାଏ, ତାଙ୍କ ତରବର ଚାଲିଟା ମୋତେ ସେମିତି ଲାଗୁଥାଏ ।

ମେନ୍ ହଲ ଭିତରକୁ ପଶିଯାଇ ମୁଁ ଦେଖିଲି ହଲ୍‌ଟା ଭର୍ତ୍ତି । ଲୋକ ଗହଗହ । ମୁଁ ଆଶ୍ଚର୍ଯ୍ୟ ହେଲି । ଏଠି ଯେ ଶପଥପାଠ ଉତ୍ସବ ଅନୁଷ୍ଠିତ ହେବ, ଏ ବିଷୟରେ ମୋର ସନ୍ଦେହ ଜାତ ହେଲା । ପୁଣି ଭାବିଲି ଯଦି ଶପଥ ପାଠ ନୁହେଁ ତେବେ ଏଠି ଆଉ କଅଣ ପାଇଁ ଏତେ ଲୋକ ଜମା ହୋଇଛନ୍ତି ।

ତେବେ କଅଣ ଆମର ବିଜୟ ଉତ୍ସବ ପାଳନ ପାଇଁ ? ସେମିତି କିଛି ତ ଜଣା ପଡୁନି । ଯେତେ ଲୋକଙ୍କୁ ମୁଁ ସେଠି ଦେଖିଲି ତାର ଚାରି ଭାଗରୁ ଭାଗେ ଲୋକଙ୍କୁ ମୁଁ ଆଗରୁ ଦେଖିଚି କି ନା ସନ୍ଦେହ । ତେବେ ସେମାନେ ସମସ୍ତେ ଆମରି ଲୋକ ପରି ଜଣାପଡୁଥିଲେ । ସେମାନଙ୍କ ଭିତରୁ କିଛି ଫିଲ୍ମ ଷ୍ଟାର, ଶିଳ୍ପପତି, ଶାଳବଣ ଠିକାଦାର ମଧ ଥିବାର ଦେଖିଲି । ସେମାନଙ୍କ ଭିତରୁ କେତେକଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ମଧ ଅଛି । ତେବେ ଘଟଣା ଯାହା ହେଉନା କାହିଁକି ଏଇଟା ଯେ ଶପଥ ଗ୍ରହଣ ଉତ୍ସବ ନୁହେଁ ଏ ବିଷୟରେ ମୋର ଆଉ ସନ୍ଦେହ ନଥିଲା । ଏ ବିଷୟରେ ମୁଁ ନିଶ୍ଚିତ ହେଇଯିବା ସଂଗେ ସଂଗେ ମୋତେ ମନ୍ତ୍ରୀ ହିସାବରେ ଦେଖିଲେ ଯିଏ ସବୁଠୁ ବେଶି ଖୁସି ହେବ ବୋଲି ଅପେକ୍ଷା କରି ବସିଚି, ସେ କଥା ମନେ ପଡ଼ିଯିବାରୁ ମୋ ସ୍ତ୍ରୀ ପଦ୍ମା ପ୍ରତି ମୋ ଭିତରେ କେମିତି ଗୋଟିଏ ଅଜଣା କୋହ ମୋତେ ଆଚ୍ଛନ୍ନ କରି ପକେଇଲା । ଠିକ୍ ସେତିକିବେଳେ ସେ ଯେ ମୋର ଖଣ୍ଡିତ ମେରୁଦଣ୍ଡର ଜଣେ ସତର୍କ ପ୍ରହରୀ ଏକଥା ମଧ ମୋର ମନେ ପଡ଼ିଗଲା ।

କେହି ଜଣେ ମାଇକ୍ ପାଖକୁ ଉଠି ଆସିଲେ । ସେ ମାଇକରେ କହିଲେ, ବନ୍ଧୁମାନେ ଆପଣମାନେ ସମସ୍ତେ ଧୀର ସ୍ଥିର ହେଇ ବସନ୍ତୁ । ଆମ ଭିତରୁ ଆଉ କିଛି ସଦସ୍ୟ ଏଯାଏ ପହଞ୍ଚି ପାରିନାହାନ୍ତି । ସେମାନେ ଆସିଗଲା ମାତ୍ରେ ଆମର ଡିନର ଆରମ୍ଭ ହେବ । ଡିନର ପରେ ଆମର ଅସଲ କାର୍ଯ୍ୟକ୍ରମ ଆରମ୍ଭ ହେବ ।

ମୁଁ ଖୁସି ହେଲି । ଯା ହେଉ କାର୍ଯ୍ୟକ୍ରମ ଆରମ୍ଭ ପୂର୍ବରୁ ଖିଆପିଆର ବ୍ୟବସ୍ଥା ଅଛି । ସେତକ ଆନନ୍ଦର କଥା ।

ଆଃ ଏଥିରେ ଆଉ ଖୁସି ହେବାର କଅଣ ଅଛି ? ଯେ କୌଣସି କାମ କରିବା ପୂର୍ବରୁ ପ୍ରଥମେ ଖିଆପିଆର ଯୋଜନା ହିଁ ତ ଆମର ଏବର କଲଚର ହେଇଗଲାଣି । ଏ କଲ୍‌ଚର ତ ଆମେ ଆମମ୍ଭ କରିଛୁଁ । ଠିକାଦାରମାନେ ତ ସେଇଆ କରନ୍ତି । କାମ ଆରମ୍ଭ ପୂର୍ବରୁ ସବୁଠାରୁ ବେଶି କେତେ ଖାଇହେବ ତାର ଯୋଜନା ପ୍ରଥମେ ପ୍ରସ୍ତୁତ ହୁଏ । କିନ୍ତୁ ଧୀରେ ଧୀରେ ଏ କଲ୍‌ଚର ମଧ ପୁରୁଣା ହୋଇଗଲାଣି । ମୋଟେ କିଛି ନ କରି ସମଗ୍ରଟାକୁ ପାଟିରେ ପୂରେଇବାର ନୂଆ କଲ୍‌ଚରଟିଏ ଏବେ ମୁଣ୍ଡ ଟେକୁଛି । ମୁଁ କିନ୍ତୁ ଭାବୁଥିଲି ଏତେଟା ସ୍ୱାର୍ଥପର ହେବା ଠିକ୍ ନୁହେଁ ।

ଆମର ଖିଆପିଆ ଯଥା ସମୟରେ ଶେଷ ହେଲା । ଆମେ ପୁଣି ସେଇ ହଲକୁ ଫେରି ଆସିଲୁଁ ।

ପୁଣି ସେଇ ଭଦ୍ର ଲୋକ ମାଇକ୍ ପାଖକୁ ଆସିଲେ ଏବଂ ଅତି ସଂକ୍ଷେପରେ କହିଲେ - ଆମର ମୁଖ୍ୟମନ୍ତ୍ରୀ କେତେକ ଜରୁରୀ କାମ ଯୋଗୁଁ ଆସି ପାରି ନାହାନ୍ତି । ତେବେ ସେ ଯେଉଁ ବାର୍ତ୍ତା ଆପଣମାନଙ୍କ ପାଇଁ ପଠେଇଚନ୍ତି ତାହା ହେଲା ବର୍ତ୍ତମାନ ଆମ ମନ୍ତ୍ରୀମଣ୍ଡଳ ଘୋର ସଂକଟର ସମ୍ମୁଖୀନ । ଆମ ଭିତରୁ କେତେକ ସଭ୍ୟ ବିରୋଧୀଦଳଙ୍କ ଦ୍ୱାରା ନିଜର ସମସ୍ତ ନୈତିକତା ବିନିମୟରେ କିଣା ହେଇ ଯାଇଚନ୍ତି । ଆମେ ତାଙ୍କୁ ଦଳରୁ ବହିଷ୍କାର କରି ଦେଇଛୁ । ଅନ୍ୟ ଦିଗରେ ସୁଖର କଥା ଯେ କିଛି ସଚେତନ ତଥା ନୀତିବାନ ସଦସ୍ୟ ସ୍ୱତଃପ୍ରବୃତ୍ତ ହେଇ ଆମ ଦଳରେ ଯୋଗ ଦେଇଛନ୍ତି । ମୁଁ ସେମାନଙ୍କୁ ସ୍ୱାଗତ କରୁଚି । ମୁଁ ଆହୁରି ମଧ ଘୋଷଣା କରୁଚି ଯେ କିଛି ସଦସ୍ୟ ଯୋଉମାନେ ଭୁଲ ରାସ୍ତାରେ ଚାଲି ଯାଇଥିଲେ ସେମାନଙ୍କ ଭିତରୁ କିଛି ଏବେ ସେମାନଙ୍କ ଭୁଲ ବୁଝିପାରି ତାଙ୍କ ଘରକୁ ଫେରି ଆସିବା ବାଟରେ ପୁଣି ଥରେ ବିରୋଧୀ ଦଳର ହୀନ ଚକ୍ରାନ୍ତ ଏବଂ ପ୍ରଲୋଭନ ପ୍ରଭାବରେ ହୁଏତ କୋଉଠି ଆତ୍ମଗୋପନ କରିଚନ୍ତି, ନଚେତ୍ ଗୁଣ୍ଡା ଲଗେଇ ସେମାନଙ୍କୁ ଅପହରଣ କରି ନିଆଯାଇଚି । ବିରୋଧୀ ଦଳର ଏସବୁ ଜଘନ୍ୟ କାର୍ଯ୍ୟ ଆମର ଗଣତାନ୍ତ୍ରିକ ବିଧି ବ୍ୟବସ୍ଥା ପ୍ରତି ଏକ ଶକ୍ତ ଧକ୍କା । ଆମେ ଦୃଢ଼ ହସ୍ତରେ ଯାର ମୁକାବିଲା କରିବୁ ।

ଟିକିଏ ରହି ସେ ପୁଣି କହିଲେ, ମୋ ହାତରେ ସମୟ ଯଥେଷ୍ଟ କମ୍ । ତେଣୁ ମୁଁ ଚାଲି ଯାଉଚି । ଆପଣମାନେ ଏବେ ନିଜ ନିଜ ରୁମକୁ ଯାଇ ବିଶ୍ରାମ ନିଅନ୍ତୁ । ଏଇଠି ଆପଣମାନଙ୍କ ପାଇଁ ସମସ୍ତ ବ୍ୟବସ୍ଥା ହେଇ ସାରିଚି । ମୋର ମନେ ହେଉଚି ଆପଣମାନଙ୍କୁ ଏଠି ସାତ ଆଠ ଦିନ ରହିବାକୁ ପଡ଼ିପାରେ । ଏଠି ଆପଣଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ପେୟର ବ୍ୟବସ୍ଥା ହେଇଚି । ଯାହାର ଯାହା ଦରକାର ନିର୍ଦ୍ଦେଶ ଦେଲାମାତ୍ରେ ଆସି ପହଞ୍ଚିବ । ତେବେ ମାତ୍ର ତିନୋଟି ଜିନିଷ ପାଇଁ ଆପଣମାନେ ଦୟା କରି ଅନୁରୋଧ କରିବେନି । ସେଗୁଡ଼ିକ ହେଲା ସମ୍ବାଦପତ୍ର, ଟିଭି କିମ୍ବା ରେଡିଓ ଏବଂ ଟେଲିଫୋନ । ମୋଟ୍ କଥା ହେଲା ବାହାର ଜଗତ ସହିତ ଆପଣଙ୍କର କିଛି ସମ୍ପର୍କ ରହିବ ନାହିଁ । ତା'ଛଡ଼ା ଆପଣ ଏ ହୋଟେଲ ବାହାରକୁ ମଧ ଯାଇ ପାରିବେନି ।

ତେବେ ଆପଣଙ୍କ ପରିବାରର ସମ୍ପୂର୍ଣ୍ଣ ନିରାପତ୍ତା ସହିତ ସେମାନଙ୍କର ସମସ୍ତ ଦାୟିତ୍ୱ ମଧ୍ୟ ଆମେ ନେଇ ସାରିଛୁ ।

ସେ ହଲରୁ ବାହାରିଗଲେ ଏବଂ ଗଲାବେଳେ ହୋଟେଲ ମେନେଜରଙ୍କଠାରୁ ଗୋଟାଏ ବିରାଟ ଚାବି ପେନ୍ଥା ମଧ୍ୟ ସାଥିରେ ନେଇଗଲେ ।

ବର୍ତ୍ତମାନ ଆମେ ଯେ ଗୃହବନ୍ଦୀ ଏକଥା ମୋର ଆଉ ବୁଝିବାକୁ ବାକି ରହିଲାନି । କିନ୍ତୁ ଗୃହବନ୍ଦୀ ହେଇ ରହିବାକୁ ମୋର ଆପତ୍ତି ନଥିଲା । ଦୀର୍ଘ ସାତ ଆଠ ଦିନ ମୋତେ ଅନ୍ୟ ଅନେକଙ୍କ ସାଥିରେ ଏହି ପ୍ରାସାଦୋପମ ହୋଟେଲ୍‌ରେ ରହିବାର ସୁଯୋଗ ମିଳୁଥିବାରୁ ମୋ ଭିତରେ ଏକ ନୂତନ ଉନ୍ମାଦନା ତଥା ରୋମାଞ୍ଚ ସୃଷ୍ଟି ହେଉଥାଏ । ସେକଥା ବର୍ଣ୍ଣିବାକୁ ମୋର ଭାଷା ନଥାଏ । ମୁଁ ମନେ ମନେ ମୁଖ୍ୟମନ୍ତ୍ରୀଙ୍କୁ ଆମ ପାଇଁ ଏସବୁ ସ୍ୱର୍ଗ ସୁଖର ବ୍ୟବସ୍ଥା କରି ଦେଇଥିବାରୁ ଆନ୍ତରିକ ଧନ୍ୟବାଦ ଦେଇ ପକାଇଲି । ନିଜ ଅଜାଣତରେ ତାଙ୍କର କୋଟି ପରମାୟୁ ହେଉ ବୋଲି ମଧ୍ୟ ଈଶ୍ୱରଙ୍କଠାରେ ପ୍ରାର୍ଥନା କରି ପକେଇଲି । ଏଠି ସାତ ଆଠ ଦିନ କାହିଁକି ସାତ ଆଠ ମାସ ହେଲେ ମଧ୍ୟ ଆପତ୍ତି ନାହିଁ । କିନ୍ତୁ ଆହା ଏଠି ଯଦି ମୋ ସହିତ ପଦ୍ମା ଥାଆନ୍ତା, ସେ ଥରେ ଜାଣନ୍ତା, ଖାଲି ଜାଣନ୍ତା କାହିଁକି ମୋ ସହିତ ଅନୁଭବ ମଧ୍ୟ କରନ୍ତା ଯେ ମନ୍ତ୍ରୀ କି ଏମ୍.ଏଲ୍.ଏ ଟିଏ ହେଲେ ଜଣେ କି ପରମ ସୌଭାଗ୍ୟର ଅଧିକାରୀ ହୁଏ । ଯାଃ, ସେଇଟା ହତଭାଗିନୀଟାଏ ।

ସେଦିନ ରାତିଟା କେମିତି ଓ କେତେବେଳେ ପାହିଲା ମୁଁ ଜାଣି ପାରିଲିନି । ସମୟ ସେତେବେଳେକୁ କେତେ ହେଲାଣି ସେ କଥା ମଧ୍ୟ ମତେ ଜଣା ପଡ଼ୁ ନ ଥାଏ । ନରମ ଓ ବେଶ ମୁଲାୟମ ବିଛଣାରେ ଶୋଇ ମୁଁ ଯଥା ସମ୍ଭବ ହାତ ଗୋଡ଼ ଚାରିଆଡ଼କୁ ମେଲେଇ ବିଛଣାର ସମସ୍ତ ସୁଖ ଶୋଷି ନେବାକୁ ଚେଷ୍ଟା କରୁଥିଲି । ଏତିକିବେଳେ ମୋର କାହିଁକି କେଜାଣି ପୁଣି ଥରେ ପଦ୍ମା କଥା ମନେ ପଡ଼ିଲା । ସକାଳୁ ସକାଳୁ ଅଳସ ଭାଙ୍ଗିଲା ବେଳେ ପଦ୍ମା ଏମିତି ମୋର ମନେ ପଡ଼େ । ପଦ୍ମା କଥା ମନେ ପଡ଼ିବାରୁ ମୋର ସକାଳର ଚା' କଥା ମନେ ପଡ଼ିଲା । ହାତ ଘଡ଼ିରେ ଦେଖିଲି ଦଶଟା ବାଜିଲାଣି । ଆରେ, ଏଯାଏ ଚା' କଅଣ ଦେଇନି । ସତେତ ମୁଁ ଦରଜା ନ ଖୋଲିବା ଯାଏ କିଏ କେମିତିବା ଭିତରକୁ ଆସନ୍ତା ? ମୋତେ ଡିଷ୍ଟର୍ବ କେମିତି କରନ୍ତା ? ଏ ଦୁଃସାହସ କାହାର ।

ମୁଁ ବିଛଣାରେ ଉଠିବସିଲି । ବାହାରେ ଚାପା କଲରୋଳର ଶବ୍ଦ ମୋତେ ଶୁଭିଲା । କବାଟ ଖୋଲି ବାହାରକୁ ଆସିଲି । ସେମିତି କିଛି ଦେଖିଲିନି । କିନ୍ତୁ ସାମନା ଲନ୍ ଓ ବଗିଚାମାନଙ୍କରେ ମୋର ବନ୍ଧୁମାନେ ଏପାଖ ସେପାଖ ହେଉଥିବାର ଦେଖିଲି । ବଗିଚା ସେପାଖରେ ହୋଟେଲର ବିରାଟ ପାଚେରୀ । ପାଚେରୀଟା ଏତେ ଉଚ୍ଚ ଯେ ସେ ପାଖକୁ ଦେଖିବାର ମୋଟେ ଉପାୟ ନାହିଁ । ତାମାନେ ପାଚେରୀ ମଥା ଆକାଶରେ ଲାଗିଲା ପରି ଲାଗୁଥାଏ । ଗୋଟିଏ ହୋଟେଲର ଏତେ ଉଚ୍ଚ ପାଚେରୀ କାହିଁକି ହେଇଚି ମୁଁ ବୁଝି ପାରୁ ନଥାଏ । ସାଧାରଣତଃ କାଳକାରଖାନା ମାନଙ୍କରେ କିମ୍ବା ଜେଲ୍‌ଖାନା ମାନଙ୍କରେ ଏମିତି ଉଚ୍ଚ ପାଚେରୀ ଥାଏ । ତେବେ ବୋଧେ ହୋଟେଲ ଭିତରେ କଅଣ ହେଉଚି କି ନ ହେଉଚି ସେକଥା କାହାକୁ ନ ଜଣେଇବାକୁ ଏମିତିକା ପାଚେରୀ କରାଯାଇଚି । ପାଚେରୀଟା ଏତେ ଉଚ୍ଚ ଥିଲେ ମଧ ସେ ପାଖରୁ କଲରୋଳର ଚାପାସ୍ୱର ଭାସି ଆସୁଥାଏ । ସ୍ୱରଟା କିନ୍ତୁ ହୋଟେଲର ଚାରି ପାଖରୁ ଆସୁଥାଏ ।

କୌତୁହଳ ଚାପି ନ ପାରି ମୁଁ ବାରଣ୍ଡା ତଳକୁ ଯାଇ ମୋର ଜଣେ ବନ୍ଧୁଙ୍କୁ ପଚାରିଲି, ବାହାରେ ଏ କଲରୋଳ କଅଣ ଓ କାହିଁକି ହେଉଚି ? ସେ ଯାହା କହିଲେ ସେଥିରେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିଲିନି । ସେ କହିଲେ, କିଛି ସମାଜ ବିରୋଧୀ ଲୋକ ଆମ ବିରୋଧୀଦଳଙ୍କ ପ୍ରରୋଚନାରେ ଆମ ହୋଟେଲ୍‌କୁ ଘେରାଉ କରିଚନ୍ତି ଏବଂ ସେମାନେ ହୋଟେଲ ଗେଟ୍‌ରେ ତାଲା ପକେଇ ଦେଇଚନ୍ତି । ତାମାନେ ଆମ ହୋଟେଲକୁ ଏବେ ଯିବା ଆସିବା ସମ୍ପୂର୍ଣ୍ଣ ବନ୍ଦ ।

ମୁଁ ଏକଥା ଶୁଣି ହସିଦେଲି । ମୁଁ କହିଲି, ଏ ଲୋକଗୁଡ଼ା ଆମ ମୁଖ୍ୟମନ୍ତ୍ରୀଙ୍କୁ ମୋଟେ ଜାଣି ନାହାନ୍ତି । ସେମାନେ ଏକଥା ମଧ ଜାଣିନଥିବେ ଯେ ମୁଖ୍ୟମନ୍ତ୍ରୀ ନିଜେ ହିଁ ଘରୋଇ ମନ୍ତ୍ରୀ । ସେମାନେ ସଂଖ୍ୟାରେ ଯେତେ ହୁଅନ୍ତୁ ନା କାହିଁକି ଗୋଟିଏ ମିନିଟ୍‌ରେ ଯେ ପୋଛି ହେଇଯିବେ ଏ କଥା ଜାଣି ନାହାନ୍ତି ।

ସେ ମୋ ମୁହଁକୁ ହାଁ କରି ଅନେଇ ଥିବାର ଦେଖି ମୁଁ ଉତ୍ସାହିତ ହେଇ ପୁଣି କହିଲି, ଆପଣ ଜାଣନ୍ତି ଆମ ମୁଖ୍ୟମନ୍ତ୍ରୀଙ୍କ ପଛରେ କାହାର ଆଶୀର୍ବାଦ ଅଛି ?

ଟିକିଏ ରହି ମୁଁ ପୁଣି କହିଲି 'ଆସନ୍ତା ପାଞ୍ଚବର୍ଷ' ଯାଏ ତାଙ୍କ ଦେହରେ ଟିପ ସୁଦ୍ଧା କିଏ ମାରି ପାରିବନି । ମୋ ନିଜ ଖୁସିରେ ମୁଁ ହୋ ହୋ କରି ହସି ଉଠିଲି ।

ଏତିକିବେଳେ ଆଉ ଜଣେ ବନ୍ଧୁ ସେ ଆଡୁ ଦୌଡ଼ି ଆସି ଆମକୁ କହିଲେ ଆପଣ ଜାଣନ୍ତି ହୋଟେଲରୁ ଆସୁଥିବା ଖାଦ୍ୟ ପଦାର୍ଥର ସପ୍ଲାଇ ଲାଇନ୍ ମଧ ବନ୍ଦ କରି ଦେଇଛନ୍ତି । ସେମାନେ ହୋଟେଲକୁ ପାଣି ଓ ବିଜୁଳି ଲାଇନ୍ ମଧ କାଟି ଦେଇଛନ୍ତି ।

ଏକଥା ଶୁଣିଲା ପରେ ମୋ ଭିତରେ ଗୋଟିଏ ହତାସିଆ ତଥା କରୁଣ ଆର୍ତ୍ତନାଦ ଗୁମୁରି ଉଠିଲା । କିନ୍ତୁ ବନ୍ଧୁ ଜଣକ କହିଲେ ଆପଣମାନେ ବ୍ୟସ୍ତ ହୁଅନ୍ତୁନି । ଧୈର୍ଯ୍ୟ ମଣିଷର ବଡ଼ କଥା । ଧୀରେ ଧୀରେ ସବୁ ଠିକ୍ ହୋଇଯିବ । ମୁଁ କହିଲି ଆପଣ ଠିକ୍ କହୁଛନ୍ତି । ଆମର ଧୈର୍ଯ୍ୟ ଓ ଏକତା ହିଁ ଆମର ମୁଖ୍ୟମନ୍ତ୍ରୀଙ୍କ ହାତମୁଠାକୁ ଟାଣ କରିବ ।

ଧୀରେ ଧୀରେ ସମୟ ଗଡ଼ିବାକୁ ଲାଗିଲା । ସକାଳ ଯାଇ ସନ୍ଧ୍ୟା ହେଲା । ଭୋକରେ ମୋ ପେଟ ଆଉଣ୍ଡି ପାଉଣ୍ଡି ହେଉ ଯାଉଥାଏ । ଶୋଷରେ ମୋ ତଣ୍ଟି ଶୁଖି ଯାଉଥାଏ । ସନ୍ଧ୍ୟାବେଳକୁ ଆମ ଭିତରେ ଏକ ସାଂଘାତିକ ରମକ ଅସ୍ଥିରତା ଦେଖାଗଲା । ଆମ ଭିତରୁ ବହୁ ଲୋକ ସେ ମେଘନାଦ ପାଚେରୀ ଡେଇଁ ବାହାରକୁ ଯିବାକୁ ଚେଷ୍ଟା କଲେଣି । କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ମତେ ହୋଟେଲ୍‌ର ନିରାପତ୍ତା ରକ୍ଷୀମାନେ ପାଚେରୀ ଭିତର ପଟେ କଡ଼ାପହରା ଦେଉଥାଆନ୍ତି । ସେମାନ ଆମକୁ ପାଚେରୀ ପାଖକୁ ମଧ ଯିବାକୁ ଦେଉ ନଥାଆନ୍ତି ।

ସଞ୍ଜ ହୋଇ ମାଛି ଅନ୍ଧାର ହେବାବେଳକୁ ଆମ ଭିତରୁ କେତେଜଣ ଗୋଟିଏ ଗଛ ଉପରେ ଚଢ଼ି ପାଚେରୀ ବାହାରେ କେହି ପରିଚିତ ଲୋକ ଥାଇପାରେ କି ନା କିମ୍ବା ମୋଟା ମୋଟି ବାହାରର ଅବସ୍ଥାଟା କଅଣ ଜାଣିବା ପାଇଁ ଚେଷ୍ଟା କରୁଥିଲେ । ଏତିକିବେଳେ ଦୁଇଜଣ ବିଶାଳକାୟ ରକ୍ଷୀ ସେମାନଙ୍କ ମୋଟା ମୋଟା ଠେଙ୍ଗା ଧରି ଦୌଡ଼ି ଆସିଲେ ଏବଂ ଠେଙ୍ଗାଟାକୁ ଗଛରେ ଚଢ଼ିଥିବା ଲୋକ ଦେହରେ ଖେଞ୍ଚିଦେବ ବୋଲି ଦେଖେଇ ବିଡ଼ବିଡ଼ କରି କହିଲା, ଶଳା ତଳକୁ ଆସୁଚୁନା ଦେଖିବୁ ଏଇନେ । ସେ ସତକୁ ସତ ଖେଞ୍ଚି ଦେଲକି କଅଣ ଲୋକଟା ତଳେ ଦୁମ୍ କରି ପଡ଼ିଲା । ମୋ ଆଖି ବୁଜି ହେଇଗଲା । ଅନ୍ୟମାନେ ଯେ ଯୁଆଡ଼େ ଥିଲେ ଦୌଡ଼ି ପଳାଇଲେ ।

ଲମ୍ବା ମୁଛଥିବା ଗୋଟିଏ ବିହାରୀ ହାବିଲଦାର ଦୂରରୁ ତା ରକ୍ଷୀକୁ ପାଟି କରି କହିଲା, "ହଁ । ହାଁ । ମାରୋ ମତ । ଓ ଲୋକ ଚୋର ବଦମାସ ନେହିଁ ହେଁ ।" ତାପରେ ତାର ସ୍ୱାଭାବିକ ଘାଘଡ଼ା ଗଳାରେ କହିଲା, 'ଲେକିନ୍ ହାମକୋ ଯୈସେ ଅର୍ଡର ମିଲା ହେ, ହମ ଲୋକ କରେଙ୍ଗ କ୍ୟା ?' ଏଇକଥା କହି ସେମାନେ ପାଚେରୀ ପାଖରେ ଯୋଉମାନେ ଲଙ୍ଗର ପଙ୍ଗର ହେଉଥିଲେ ସେମାନଙ୍କୁ ଲାଠି ଉଞ୍ଚେଇ ଖେଦି ଆଣିଲେ । ହାବିଲଦାର ପାଟି କଲା, ସବ୍ ଭାଗୋ ହିଆଁ ସେ । ନେହିଁ ତୋ.... ।

ପ୍ରାଣ ବିକଳରେ ମୁଁ ଓ ଆଉ କେତେଜଣ ହୋଟେଲ୍ ପଛପଟ ଅନ୍ଧାରିଆ ଜାଗାକୁ ଦୌଡ଼ି ପଳାଇଲୁ । ସେ ପାଖଟା କିନ୍ତୁ ଆହୁରି ଭୟଙ୍କର ଥିଲା । ଚାରି ଛଅଟା ବଡ଼ ବଡ଼ ବାଘ ପରି ଦେଖାଯାଉଥିବା ଆଲସେସିଆନ୍ କୁକୁର ଗର୍ଜନ କରି ତୀର ବେଗରେ ଛୁଟି ଆସିଲେ । ସେତେବେଳେ ଆମ ଭିତରୁ କିଏ କୁଆଡ଼େ ଗଲେ ଜଣା ପଡ଼ିଲାନି । ମୁଁ ସେପଟୁ ପଳେଇ ଆସୁଥିବାବେଳେ ଗୋଟିଏ ଫୁଲ କୁଣ୍ଡ ଦିହରେ ଝୁଣ୍ଟି ତଳେ ପଡ଼ିଗଲି ଏବଂ ସଂଗେ ସଂଗେ ଅଚେତ ହେଇ ପଡ଼ିଲି ।

ମୋର ଚେତା ଫେରିଲାବେଳକୁ ରାତି କେତେ ହେଲାଣି କେଜାଣି । ତେବେ ଆକାଶଟା ଟିକିଏ ସଫା ଦେଖା ଯାଉଥିବାରୁ ମୁଁ ଅନୁମାନ କଲି ବୋଧେ ରାତି ସରି ଆସିଲାଣି । କିନ୍ତୁ ହୋଟେଲ୍ ଚାରିପଟେ କିଟିକିଟି ଅନ୍ଧାର । ଭୋକ ଓ ଶୋଷରେ ମୁଁ ଅର୍ଦ୍ଧପ୍ରାଣ । ଚେଷ୍ଟା କଲି ପାଟିକରି ଡାକିବା ପାଇଁ । କିନ୍ତୁ ପାରିଲିନି । ଦେହରେ ଯିମିତି ଟିକିଏ ବୋଲି ପ୍ରାଣ ନାହିଁ । ହାତମାରି ଜାଣିଲି ମୋ ଦେହାରେ ଲୁଗା ନାହିଁ । ଭୋକ ଓ ଶୋଷରେ ପ୍ରବଳ ଯନ୍ତ୍ରଣାରେ ମୋ ପେଟ ଓ ଛାତି କୋରି ହୋଇ ଯାଉଥାଏ । ତେବେ ଅନୁମାନ କଲି ମୁଁ ପଡ଼ିଚି ମୁଲାୟମ ଲନ୍‌ର ଘାସ ଉପରେ । ଯନ୍ତ୍ରଣାରେ ମୁଁ ଘାସକୁ ଖୁବ୍ ଜୋରରେ ଦୁଇହାତରେ ମୁଠେଇ ଧରିଲି । ଅର୍ଦ୍ଧ ଚେତନ ଅବସ୍ଥାରେ ମୁଁ ତଳକୁ ଖସି ପଡ଼ୁଥାଏ କି ଉପରକୁ ଉଠୁଥାଏ କିଛି ଜଣା ପଡ଼ୁନଥାଏ । ମୁଁ ଘାସକୁ ଆହୁରି ଜୋରରେ ମୁଠେଇ ଧରି ପାରୁ ପର୍ଯ୍ୟନ୍ତ ଚେଷ୍ଟା କରି ପୁଳାଏ ଛିଣ୍ଡାଇ ଆଣିଲି ଏବଂ ଗୋଟିଏ ଛେଳିପରି ଦୁର୍ବଳ ହେଇଯାଇଥିବା ଦାନ୍ତ ଭିତରେ ରଖି ଚୋବାଇବାକୁ ଲାଗିଲି ।

(କଥା ୧୯୯୯)

***

# ରିହାରସେଲ୍

ମୁଁ ଯେତେ କହିଲେ ବି ସେ ମୋ କଥା ମୋଟେ ମାନିଲେନି । ସେ ମୋତେ ବୁଝାଇବାକୁ ଚେଷ୍ଟା କଲେ, କହିଲେ ଏଥିରେ ଦୁଃଖ କରିବାର କଣ ଅଛି ? ଆମେ ତ କିଛି ଅପରାଧ କରିନୁ । କାହାର ସମ୍ପତ୍ତି ଛଡ଼େଇ ନେଇନୁ କି ଚୋରୀ ଡକାୟତି କରିନୁ, ମଣିଷ ମାରିନୁ କି ଜନାକାରୀ କରିନୁ, ଏଥିରେ ଭୟ କରିବାର କଅଣ ଅଛି ? ଲାଜ କରିବାର ମଧ କିଛି ନାହିଁ ।

ମୁଁ ତୁମକୁ କହୁଚି ତୁମେ ମଥା ଉପରକୁ କରି ଚାଲ । ଛାତି ଫୁଲେଇ ରଖ । ମୋଟେ କୌଣସି କଥା ଚିନ୍ତା କରିବାର ଦରକାର ନାହିଁ । ସବୁ କଥା ମୁଁ ବୁଝିବି । ଯାହା କରିବାର କଥା ମୁଁ କରିବି । ମୁଁ ତମ ପଛରେ ଅଛି । ତମେ କାହିଁକି ଡରୁଛ ?

ମୁଁ କହିଲି, ମୁଁ ସେ କଥା ବୁଝୁଚି । ତମ ଉପରେ ମୋର ପୂରା ବିଶ୍ୱାସ ଅଛି । ତମେ ନଥିଲେ ମୁଁ କଅଣ ଏତେ ବାଟ ଆସି ପାରିଥାଆନ୍ତି ? ଏତେ ଉପରକୁ ଉଠି ପାରିଥାଆନ୍ତି ? ମୋର ଆଜି ଯାହା କିଛି ଅଛି ସେ ସବୁ କେବଳ ତୁମରି ପାଇଁ । ମୁଁ ସେକଥା ଅସ୍ୱୀକାର କରୁନି । ମୋର ସମସ୍ତ ଗର୍ବ ଓ ଅହଂକାର କେବଳ ତୁମରି ଲାଗି । ମୁଁ ଏକଥା ବରାବର କହେ । କିନ୍ତୁ ତୁମେ ଯେ କହୁଚ ଠିକ୍ ଯେତେବେଳେ ..... ମୁଁ କାନ୍ଦି ପକେଇଲି ।

ସେ ମୋ ଦୁଇହାତ ପାପୁଲିକୁ ମୁଠେଇ ଧଇଲେ ଏବଂ ଅତି ବିନୟ ହୋଇ କହିଲେ ମୋର ରାଣ ତୁମକୁ ସେତିକି କରିବାକୁ ହେବ । ସେଇ ସେତକରେ ତୁମେ ଦେଖିବ ଆମର ସମସ୍ତ ମାନ ସମ୍ମାନ କେତେ ବଢ଼ିଯିବ । ଆମେ ଯେ ପୂରା ନିର୍ଦ୍ଦୋଶ ସେଇ ସେତକରୁ ସମସ୍ତେ ଜାଣିଯିବେ ।

ମୁଁ ଟିକିଏ ତଳକୁ ମୁହଁ ପୋତିଦେଲି ଏବଂ ତାଙ୍କ କଥାକୁ କିପରି ଓ କେଉଁ ପରି ଭାବରେ କାର୍ଯ୍ୟକାରି କରିପାରିବି, ସେକଥା ଚିନ୍ତା କଲା ବେଳକୁ

ସେ ମୋ ପାଖରେ ପଡ଼ିଥିବା ଫୋନ ଉଠେଇ ଫୋନ କରିବାକୁ ଆରମ୍ଭ କଲେ । ସେ ସେତେବେଳେ ଖୁବ୍ ବ୍ୟସ୍ତ ଓ ଚିନ୍ତିତ ଥିବାର ଜଣା ପଡୁଥିଲା ।

ଏତିକିବେଳେ ମୋ ଶଳା ଯେ କି ଆମ ଘରେ ଅନେକ ଦିନୁ ତା'ର ପରିବାର ସହ ରହି ଆସୁଚି ଏବଂ ଗୋଟିଏ ମଲଟି ନେସ୍‌ନାଲ ଏକସ୍‌ପୋର୍ଟ କମ୍ପାନୀରେ ଚାକିରି କରୁଚି, ସେ ଆମ କୋଠରି ଦୁଆରୁ ମୁହଁକୁ ଆସିଲା ଏବଂ କହିଲା ନାନୀ ସେମାନେ ସେ ବାଥରୁମ୍ ପଛ ପାଖ ଘରଟାକୁ ଦେଖୁଛନ୍ତି ଏବଂ କହିଲେ ଭାଇନାଙ୍କୁ ଡାକ ।

ମୋ ସ୍ତ୍ରୀ ହଠାତ୍ ତାଙ୍କ ବ୍ଲାଉଜ୍ ଭିତରୁ ଛୋଟ ଡାଇରୀଟିଏ ଓ ତା ସହିତ ଛୋଟ କମ୍ପ୍ୟୁଟରଟିଏ ମଧ ବାହାର କଲେ । କିଛି ସମୟ ଦୁଇଟାକୁ ଦେଖିଲେ । ତା'ପରେ କହିଲେ ସେଠି ଛେନା ଅଛି । ତାପରେ ତାଙ୍କ ଭାଇକୁ କହିଲେ, କଅଣ ମ ମାଇଚିଆଙ୍କ ଭଳିଆ ହଉଚୁ ? ଏସବୁ ସାଧାରଣ କଥାରେ ତ କାହାରି ମୁଣ୍ଡ କାମ କରୁନି ଦେଖୁଚି । ଡାକିଲେ କଅଣ ହେଲା, କହନୁ ସେ ବହୁତ ବ୍ୟସ୍ତ ଅଛନ୍ତି । ଟିକିଏ ରହି ସେ କଅଣ ଚିନ୍ତା କଲେ ।

ତାପରେ କହିଲେ, କହିବେ ଚିଫ୍‌ଙ୍କ ସହିତ କଥା ହେଉଛନ୍ତି । ନା ନା କହ 'ସେ ବାଥରୁମ୍‌ରେ ଅଛନ୍ତି । ଏଇ ଅଳ୍ପ ସମୟ ଭିତରେ ଆସିବେ ।'

ସେ ଚାଲିଗଲା । ମୋ ସ୍ତ୍ରୀ ପୁଣି ଫୋନ୍ ଉଠେଇଲେ । ମୋତେ ପଚାରିଲେ ସେ ରାଘବ ଚୌଧୁରୀର ନମ୍ବର କେତେ ?

କୋଉ ରାଘବ ଚୌଧୁରୀ ?

ସେ ଟିକିଏ ବିରକ୍ତ ହେଲେ । କହିଲେ ଦେଖୁଚି ତମ ମୁଣ୍ଡ ମୋଟେ କାମ କରୁନି । ହଇଓ ତମେ ସେ ପ୍ରେସ ରିପୋର୍ଟରଟାର ତିନିଟା ଯାକ ବାର୍ଥଡେ ଓ ସେମାନଙ୍କର ମେରେଜ ଡେ ତାରିଖ ମଧ ତମ ଜିଭ ଆଗରେ ଥିବ । ଏବେ କହୁଚ କୋଉ ରାଘବ ଚୌଧୁରୀ ।

ମୁଁ କହି ଦେଲି ।

ସେ ରିଂ କଲେ, କହିଲେ ତମେ ଟିକିଏ ଜଲଦି ଆସ । ହଁ ସାଥିରେ ତମର ସେ ଫଟୋଗ୍ରାଫରଟାକୁ ମଧ ଆଣିଥିବ । ତା'ପରେ ସେ ଅନ୍ୟ କେତେଜଣକୁ ମଧ ସେ ସେମିତି ଫୋନ୍ କରି କହିଲେ ।

ମୁଁ କହିଲି, ତମେ ଏସବୁ କଅଣ କରୁଚ ଉର୍ବଶୀ । ମୋତେ ଏସବୁ ମୋଟେ ଭଲ ଲାଗୁ ନାହିଁ, ମୋର ଭାଇ ବନ୍ଧୁ ପିଲା କୁଟୁମ୍ବ ଏମାନେ ସମସ୍ତେ ଯେତେବେଳେ ଏକଥା ଜାଣିବେ, ସେତେବେଳେ.....

ଧେତ୍ ସେଇଥିପାଇଁ ତ କହୁଚି ତମେ ହୋସ୍‌ରେ ନାହଁ । ଏମିତି ଗୋଟିଏ ଉଇକ୍ ହାର୍ଟକୁ ନେଇ କିଏ ରାଜନୀତି କରାଏ ? ଯିଏ ରାଜନୀତିର କ ଖ ଗ ଜାଣି ନାହିଁ ସେ ପୁଣି ମନ୍ତ୍ରୀ ହେବ ?

ସେ ମୋ ଦେହକୁ ଲାଗି ବସି ପଡ଼ିଲେ ଏବଂ ବାଁ ହାତରେ ମୋ ଗଳାକୁ ଛନ୍ଦି ଦେଲେ । କହିଲେ ପ୍ଲିଜ୍ ମୋ କଥା ଟିକିଏ ମାନ । ମୁଁ ତମ ଭଲ ପାଇଁ କହୁଚି । ଏଥିରେ ଆମ ମୁଣ୍ଡ ମୋଟେ ତଳକୁ ହେବ ନାହିଁ ବରଂ ସମ୍ମାନ ବଢ଼ିବ ।

ସେ ମୋ ଦାଢ଼ିରେ ହାତ ଦେଇ ଉପରକୁ ଟେକି ଦେଲେ ଏବଂ କହିଲେ ଆଗ କହିଲ, ଏ ଆସେମ୍ବ୍ଲିର ପରମାୟୁ ଆଉ କେତେ ଦିନ ? ତିନି ମାସ । ଏଇଆ ତ ? ତୁମେ ଦେଖିବ ତୁମକୁ ସେମାନେ ଟିକଟ୍ ନ ଦେଲେ ମଧ ତୁମେ ଅନ୍ୟ ଯେ କୌଣସି ଦଳରେ ଯୋଗ ଦେଇ ପାରିବ । କିଛି ନ ହେଲେ ସ୍ୱାଧୀନ ଭାବରେ ଛିଡ଼ା ହେଲେ ମଧ ବହୁ ଅଧିକ ଭୋଟରେ ତମେ ଜିଣିବ । କଅଣଟା ହେଇଯିବ ଆମର ? ଆଃ କିଏ କରୁନି ସେମିତି ? କାହା ଘର ରେଡ୍ ହେଉନି, କହିଲ ? ରାଜନୀତିରେ ଏସବୁ ସାଧାରଣ କଥା । ବରଂ ଏଇଟାକୁ ଗୋଟିଏ ଷ୍ଟେଟସ୍ ସିମ୍ବଲ ହିସାବରେ ନେବା କଥା ।

ମୁଁ ଟିକିଏ ହସି ଦେଲି ।

ସେ' ବି ହସିଲେ କହିଲେ । ଆଉ ଟିକିଏ । ବାସ୍, ଏବେ ଥାଉ । ସେମାନେ ଯେତେବେଳେ ତୁମକୁ ଆରେଷ୍ଟ କରି ଗାଡ଼ିକୁ ନେଉଥିବେ, ଠିକ୍ ସେଇ ସେତିକିବେଳେ କେମେରା ଆଡ଼କୁ ଚାହିଁ ସେତକ କରିଦେବ, ତା ପରର ସବୁ କାମ ମୋର । ତୁମେ ବ୍ୟସ୍ତ ହୁଅନା ।

(ପ୍ରଜାତନ୍ତ୍ର - ୧୨.୧୧.୧୯୯୮)

***

# ରଙ୍ଗ ସିଗ୍ନାଲ

ମନ୍ତ୍ରୀ ମହୋଦୟ ସେଦିନ ସକାଳେ ଖବରକାଗଜଟା ଦେଖି ଚମକି ପଡ଼ିଲେ । ତାଙ୍କ ଆଖି ଆଗରେ ଜୁଳୁଜୁଳିଆ ପୋକ ଦେଖାଗଲା । ମୁଣ୍ଡଟା ଝନ୍ ଝନ୍ ହେଇଗଲା । ରାଜ୍ୟରେ ପୂରା ଦମ୍‌ରେ ମୌସୁମୀ ପ୍ରବାହ ଆସି ଯାଇଥିଲେ ମଧ ଏବଂ ପାଣିପାଗ ଅଫିସ୍ ଗତ କେତେ ଦିନ ହେଲା ଲଗାତାର ମଧମରୁ ପ୍ରବଳ ବର୍ଷାର ସମ୍ଭାବନା ଥିବା କଥା ମୁକ୍ତ କଣ୍ଠରେ ଘୋଷଣା କରି ଆସୁଥିଲେ ମଧ ମନ୍ତ୍ରୀଙ୍କୁ ହଠାତ୍ ସନ୍‌ଷ୍ଟ୍ରୋକ ହୋଇ ଯାଇଥିଲା ପରି ଲାଗିଲା । ସେ ତାଙ୍କ ସ୍ତ୍ରୀଙ୍କୁ ପାଟି କରି ଡାକିଲେ ଉର୍ବଶୀ, ଟିକିଏ ଇଆଡ଼େ ଆସିଲ । ଶୀଘ୍ର ଆସ ।

ଉର୍ବଶୀ ସେତେବେଳ ଯାଏ ବିଛଣା ଛାଡ଼ି ନଥିଲେ । ଗତ ରାତିରେ ଚେମ୍ବର ଅଫ୍ କମର୍ସ ତରଫରୁ ହୋଟେଲ୍ ଅପସରା ଇଣ୍ଟରନେସନାଲ୍‌ରେ ମନ୍ତ୍ରୀଙ୍କୁ 'ମେନ୍ ଅଫ୍ ଦି ଇୟର' ସମ୍ମାନରେ ଭୂଷିତ କରିବା ଉଦ୍ଦେଶ୍ୟରେ ଯେଉଁ ନୈଶ୍ୟ ଭୋଜିର ଆୟୋଜନ ହେଇଥିଲା ସେଥିରେ ଯୋଗ ଦେଇ ଫେରିଲା ବେଳକୁ ସ୍ୱାଭାବିକ ଭାବେ ଟିକିଏ ଡେରି ହେଇ ଯାଇଥିଲା । ସେ ବିଛଣାରେ ଶୋଇ ଅଳସ ଭାଙ୍ଗୁଥିଲେ ଏବଂ ଚେମ୍ବରର ସଭାପତି ଶ୍ରୀଯୁକ୍ତ କରୋଡ଼ିମଲ୍ ଶାହା ଉର୍ବଶୀଙ୍କର ଆସନ୍ତା ମାସରେ ପଡୁଥିବା ୫୨ତମ ଜନ୍ମ ତିଥିକୁ ସମ୍ପୂର୍ଣ୍ଣ ପବିତ୍ର ତଥା ନିରାଡ଼ମ୍ବର ଭାବରେ ପାଳନ କରିବାକୁ ଯେଉଁ ଦଶ ପଏଣ୍ଟ କାର୍ଯ୍ୟକ୍ରମର ପ୍ରସ୍ତାବ ଦେଇଛନ୍ତି ତାକୁ ମନେ ମନେ ଭାବୁଥିଲା ବେଳେ ସ୍ୱାମୀଙ୍କ ଶୀଘ୍ର ଆସ ଶବ୍ଦ ଦି'ଟା ତାଙ୍କୁ ଟିକିଏ ବ୍ୟସ୍ତ କରି ପକେଇଲା । ସେ ତାଙ୍କର ବିପର୍ଯ୍ୟସ୍ତ ଶାଢ଼ିଟାକୁ ଅଭ୍ୟସ୍ତ ହାତରେ ସଜାଡୁ ସଜାଡୁ ଆସି ସ୍ୱାମୀଙ୍କ ପାଖରେ ଠିଆ ହେଇ ଯାହା ଦେଖିଲେ ସେଥିରେ ସେ ନିଜେ ମଧ ବ୍ୟସ୍ତ ହେଇ ପଡ଼ିଲେ । ତାଙ୍କ ସ୍ୱାମୀ ଏଥର ମନ୍ତ୍ରିମଣ୍ଡଳର ଅଦଳ ବଦଳ ବେଳେ ଶିଳ୍ପ ଦପ୍ତର ପାଇବା ପରଠାରୁ ପରଶ୍ରୀକାତର ତଥା ଅସହିଷ୍ଣୁ ଲୋକମାନେ ଅନେକ ସମୟରେ ଅନେକ କଥା କହିବାର ଶୁଣା ଗଲାଣି । ବିପରୀତ ଗୋଷ୍ଠୀମାନେ ଶିଳ୍ପ ଦପ୍ତର ଛଡ଼େଇ ନେବେ ବୋଲି ଅନେକ ଥର ଧମକ ମଧ ଦେଲେଣି । କିନ୍ତୁ ତାଙ୍କ ସ୍ୱାମୀ ସେସବୁକୁ ମୋଟେ ଖାତିର

କରି ନାହାନ୍ତି । ସେତ ଅନେକ ଥର ଦମ୍ଭର ସହିତ କହିଛନ୍ତି ମୁଁ ମୁଖ୍ୟମନ୍ତ୍ରୀଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଭାଜନ ଥିବା ଯାଏ ମୋର କେହି କିଛି କରି ପାରିବେନି । ଏପରିକି ଗତ ରାତିରେ ପାର୍ଟିରେ ମଧ୍ୟ ସେ ଏକଥା ଦୁଇ ତିନିଥର ହସି ହସି କହିଥିବା  କଥା ସମସ୍ତେ ଜାଣନ୍ତି । ତଥାପି ଆଜିକାଲି ଯୁଗ ଯାହା ହେଲାଣି ସେଥିରେ କାହାକୁ ବିଶ୍ୱାସ ନାହିଁ । ସେ ଯେତେବେଳେ ଦେଖିଲେ ସେ ସ୍ୱାମୀଙ୍କ ପାଖରେ ଏତେ ସମୟ ଧରି ଛିଡ଼ା ହେବା ପରେ ମଧ୍ୟ ସେ ତାଙ୍କ ଉପସ୍ଥିତିକୁ ଜାଣିପାରୁ ନାହାନ୍ତି, ସେଣ୍ଟର ଟେବୁଲ୍ ଉପରେ ସକାଳର ଖବର କାଗଜଟା ସେମିତି ପଡ଼ିଚି ଏବଂ ଚା' କପ୍‌ରୁ ଅଧା ସରି ନାହିଁ, ମନ୍ତ୍ରୀଙ୍କ ଆଖି ଦି'ଟା ସିଧା ଯାଇ ଛାତରେ ଲାଗି ରହିଚି ସେ ଟିକିଏ ବିସ୍ମୟ ବିସ୍ଫାରିତ ଆଖିରେ ତାଙ୍କୁ ଦେଖିଲେ ଏବଂ ହତାଶିଆ ସ୍ୱରରେ ପଚାରିଲେ ଆରେ କ'ଣ ହେଲା ? ପୁଣି ବଦଳ ହେଲା ନା କ'ଣ ? ତୁମେ ପରା କାଲି କହୁଥିଲ ... ?

ମନ୍ତ୍ରୀ ବଡ଼ ଗମ୍ଭୀର ଭାବରେ କହିଲେ ନା, ସେ କଥା ନୁହେଁ । ଉର୍ବଶୀ ଆହୁରି ଚିନ୍ତିତ ହେଇ ପଡ଼ିଲେ । ଆଉ ତେବେ କୋଉ କଥା ? ଭିଜିଲାନ୍‌ସ କଥା କିଛି ଖବର ପାଇଲ ନା କ'ଣ ?

ଧେତ୍ ସେସବୁ ବାଜେ କଥା ତୁମେ ଚିନ୍ତା କରୁଚ କେମିତି ?

ଉର୍ବଶୀ ଦୀର୍ଘ ନିଃଶ୍ୱାସଟିଏ ପକେଇ ସୋଫାଟିକୁ ତାଙ୍କ ପାଖକୁ ଟାଣି ଆଣି ବସି ପଡ଼ିଲେ ଏବଂ କହିଲେ ତେବେ କହୁନ ଆଉ କୋଉ କଥା ? କାଲି ସନ୍ଧ୍ୟାରେ ପରା ତମେ ଯାଇ ଦୁଇ ମାସର ଆଡ଼ଭାନ୍‌ସ ଦେଇ ଆସିଲ ? କହୁଥିଲ ମୁଖ୍ୟମନ୍ତ୍ରୀ ରାଜ୍ୟସଭା ପାଇଁ ମାଗୁଚନ୍ତି ।

ଓହୋ, ବି ପ୍ରାକ୍ଟିକାଲ ଉର୍ବଶୀ । ତମେ ଜଣେ ନୂଆ ମନ୍ତ୍ରୀଙ୍କ ସ୍ତ୍ରୀ ଭଳିଆ କଥାବାର୍ତ୍ତା କରୁଚ ।

ଉର୍ବଶୀ ଲାଜେଇ ଗଲେ । ତାଙ୍କ ସ୍ୱାଭିମାନରେ ଆଞ୍ଚ ଆସିଲା । ଜଣେ ନୂଆ ମନ୍ତ୍ରୀଙ୍କ ସ୍ତ୍ରୀ ଭଳିଆ ଅପମାନ ଜନକ ଶବ୍ଦଗୁଡ଼ିକ ତାକୁ ସାପ ଚୋଟ ମାରିଲା ଭଳିଆ ଲାଗିଲା । ସେ ସତକୁ ସତ ଯେତେବେଳେ ନୂଆ ମନ୍ତ୍ରୀଙ୍କ ସ୍ତ୍ରୀ ଥିଲେ ସେତେବେଳେ ମଧ୍ୟ ଏକଥା ଶୁଣି ନଥିଲେ । ତା'ର କାରଣ ତାଙ୍କ ସ୍ୱାମୀ ବି.ଏ ପଢୁଥିବାବେଳେ ଲଗାତାର ତିନିବର୍ଷ ଠିକ୍ ବାର୍ଷିକ ପରୀକ୍ଷା ବେଳେ କିଛି ନା କିଛି ବାହାନା, ମାନେ ଏଇ ମନେ କରନ୍ତୁ, ବଢ଼ି କି ମରୁଡ଼ି କିମ୍ବା କିଛି ନ ହେଲେ ବାରମ୍ବାର ପାୱାର ଫେଲ୍ୟୋର ହେଉଥିବା ଦର୍ଶାଇ

ପରୀକ୍ଷା ବନ୍ଦ ହେଉ ବୋଲି ଦାବି କରି ଧର୍ମଘଟ କରୁଥିଲେ ଏବଂ ତା'ପରେ ପରୀକ୍ଷା ଦେଉ ନଥିଲେ । ଏମିତି ତିନିବର୍ଷ କଲାପରେ ଚତୁର୍ଥଥର ପାସ୍ କରିଥିବାରୁ ସମଗ୍ର ୩୬ଜଣିଆ ମନ୍ତ୍ରୀମଣ୍ଡଳରେ ସେ ସବୁଠାରୁ ବେଶି କ୍ୱାଲିଫାଏଡ଼ ମନ୍ତ୍ରୀ ବୋଲି ତାଙ୍କର ବେଶ ନାଁ ଥିଲା । ସବୁଠାରୁ ବେଶି କ୍ୱାଲିଫାଏଡ ମନ୍ତ୍ରୀଙ୍କ ସ୍ତ୍ରୀ ହିସାବରେ ମଧ ତାଙ୍କର ବେଶ ସମ୍ମାନ ଥିଲା । ତା'ର ଅର୍ଥ ଉର୍ବଶୀ ପ୍ରଥମରୁ ଜଣେ ସମ୍ମାନସ୍ପଦ ମନ୍ତ୍ରୀଙ୍କ ସ୍ତ୍ରୀ ହିସାବରେ ସମ୍ମାନ ପାଇ ଆସିଚନ୍ତି । ଆଜି ତାଙ୍କ ସ୍ୱାମୀ ନିଜେ ଯଦି 'ନୂଆ ମନ୍ତ୍ରୀଙ୍କ ସ୍ତ୍ରୀ' ବୋଲି ଭର୍ତ୍ସନା କରନ୍ତି ତେବେ ସେ କେମିତି ସହନ୍ତେ । ତେଣୁ ସେ କୃତ୍ରିମ କୋପ ପ୍ରକାଶ କରି କହିଲେ କଅଣ ହେଇଚି ନ କହିଲେ ମୁଁ କେମିତି ଜାଣିବି ? ତମେ କିଛି କହିଲେ ସିନା ମୁଁ ତା'ର ପ୍ରତିକାର ବ୍ୟବସ୍ଥା କରିବି ? ଅତୀତରେ କେତେ ବଡ଼ ବଡ଼ ସମସ୍ୟାରୁ ମୁଁ ତୁମକୁ ମୁକ୍ତି କରେଇ ନାହିଁ ?

ମନ୍ତ୍ରୀ ମହୋଦୟ ଏଥର ଖବର କାଗଜଟାକୁ ଉର୍ବଶୀଙ୍କୁ ବଢ଼େଇ ଦେଇ କହିଲେ, ପଢ଼ିଲ ସେ ନ୍ୟୁଜ୍ ଆଇଟମ୍‌ଟାକୁ । ସେଇ ଶେଷ ଧାଡ଼ିଟା ପଢ଼ ।

ଉର୍ବଶୀ ପଢ଼ିଲେ - 'ଶିକ୍ଷମନ୍ତ୍ରୀ ଚାମରକୁ ଆଶ୍ୱାସନାବାଣୀ ଶୁଣାଇ କହିଲେ ଯେ, ସେମାନଙ୍କ ଅଭାବ ଅସୁବିଧା କଥା ବୁଝିବା ପାଇଁ ଏଣିକି ପ୍ରତି ସୋମବାର ଦିନ ଶିବ ଦର୍ଶନ ପରେ ଦିନ ୧୦ଟାରୁ ୧୧ଟା ଯାଏ ତାଙ୍କ ବାସଭବନ ସଂଲଗ୍ନ ଅଫିସ୍‌ରେ ସଦସ୍ୟମାନଙ୍କୁ ସାକ୍ଷାତ କରିବେ ।'

କଅଣ ହେଲା ସେଇଠୁ ? ଏଇଟାତ ଠିକ୍ ଅଛି । ଗଣତନ୍ତ୍ରରେ ବିଶ୍ୱାସ କରୁଥିବା ଯେ କୌଣସି ଲୋକ ଏହାକୁ ସ୍ୱାଗତ କରିବ । ତୁମେ ଲୋକଙ୍କ ଅସୁବିଧା କଥା ବୁଝନ୍ତ ନାହିଁକି ? ତେବେ ମନ୍ତ୍ରୀ ହେଇ ଆଉ କଅଣ କରନ୍ତ ? ଜେଲ ମନ୍ତ୍ରୀ ଚୋର ଡକେଇତଙ୍କ ହାରି ଗୁହାରୀ ଶୁଣିବେନି, ସମାଜ ସେବା ମନ୍ତ୍ରୀ ବେଶ୍ୟାମାନଙ୍କୁ ସପ୍ତାହରେ ଥରେ ଭେଟିବେନି, ଅବକାରୀ ମନ୍ତ୍ରୀ ଭାଟିବାଲା କିମ୍ବା ମଦ ବ୍ୟବହାରକାରୀଙ୍କ ଭଲ ମନ୍ଦ କଥା ବୁଝିବେନି ତେବେ ମନ୍ତ୍ରୀ ମାନେ କରିବେ କ'ଣ ? ଗଣତନ୍ତ୍ରର ଉଦ୍ଦେଶ୍ୟ ବିଫଳ ହେବନାହିଁ ? ଲୋକଙ୍କ ହାରି ଗୁହାରୀ ଶୁଣିବା ତ ଆମର ପ୍ରଥମ କାମ ।

ଆଃ ମୁଁ ସେକଥା କହୁନାହିଁ । ମୋର କହିବାର ଅର୍ଥ ହେଲା ସେଇ ବାକ୍ୟଟାରେ ଲୋକମାନେ ଗୋଟିଏ ରଙ୍ଗ୍ ସିଗ୍‌ନାଲ ପାଇବେ ନାହିଁକି ?

କଅଣ ରଙ୍ଗ୍ ସିଗ୍‌ନାଲ୍ ?

ମନ୍ତ୍ରୀ ଏଥର ତାଙ୍କର ପି.ଏଙ୍କୁ ଫୋନ ଲଗେଇଲେ । କହିଲେ ହଇଓ ତମେ ସେ ନିଉଜ୍ ଆଇଟମ୍‌ଟା ପଢ଼ିଲଣି ?

ପଢ଼ିଚି ସାର୍ । ଆପଣଙ୍କ ଦୂରଦୃଷ୍ଟିକୁ ସମସ୍ତେ ତାରିଫ୍ କରୁଛନ୍ତି । ମୋତେ ବହୁ ସାମ୍ବାଦିକ ଫୋନ୍ କରି ଆପଣଙ୍କୁ ଅଭିନନ୍ଦନ ଜଣେଇବାକୁ କହିଚନ୍ତି । ସୁନ୍ଦର ବ୍ୟବସ୍ଥାଟିଏ ଏଥର ହେଲା ।

ସେକଥା ମୁଁ ବୁଝୁଚି ଯେ, କିନ୍ତୁ ସେଇ ବାକ୍ୟଟା ଗୋଟିଏ ରଙ୍ଗ ସିଗ୍ନାଲ ଲୋକଙ୍କୁ ଦେବ ନାହିଁକି ? ତୁମେ ତ ଜାଣ ମୋତେ କେମିତି ଦଳେ ମୋଟେ ସହି ପାରୁ ନାହାନ୍ତି । ଆଉ ସେ ଅର୍ଥମନ୍ତ୍ରୀ ? ମୋ ନାଁ ଶୁଣିଲେ ତାଙ୍କ ନାହି ଡେଉଁଚି । ସେ ତାକୁ ଓଲଟା ଅର୍ଥ କରିବେନି ?

ଓଲଟା ଅର୍ଥ । ରଙ୍ଗ ସିଗ୍ନାଲ । ମୁଁ ତ କିଛି ବୁଝି ପାରୁନି । ଏଇଟା ତ ରାଇଟ୍ ସିଗ୍ନାଲ ସାର୍ । ଦେଖିବେ ଖୋଦ ମୁଖ୍ୟମନ୍ତ୍ରୀ ମଧ ଏଇଟାକୁ ପ୍ରଶଂସା କରିବେ ।

ଆଃ ତମେ ଭିତର କଥାଟା ମୋଟେ ବୁଝୁନ । ଅସଲ କଥାଟା ହେଲା ଚେମ୍ବରର ମେମ୍ବରମାନେ ତାଙ୍କ ସମସ୍ୟାର ସମାଧାନ ପାଇଁ ମୋ ସହିତ ସାକ୍ଷାତ କରିବାକୁ ଆସିଲାବେଳେ ସେମାନେ ହାତରେ ବ୍ରିଫ୍‌କେଶ୍ ନେଇ ଆସିବେ ନା ନାହିଁ ? ଆମମାନଙ୍କ ପାଇଁ ବ୍ରିଫ୍‌କେଶ ଶବ୍ଦଟା କେଡ଼େ ମାରାତ୍ମକ ସେ କଥାଟା ବୁଝୁଚତ ?

ପି.ଏଙ୍କ ଅକଲ ଗୁଡ଼ୁମ ହୋଇଗଲା । ତାଙ୍କ ମୁଣ୍ଡରେ ତ ଏତେ କଥା ପଶି ନଥିଲା । ସେ ହତାଶିଆ କଣ୍ଠରେ କହିଲେ - ତେବେ କଅଣ କରିବା ସାର୍ ?

ମନ୍ତ୍ରୀ କହିଲେ ମୋ ମତରେ ତମେ ପେପରକୁ ଗୋଟିଏ କରେକ୍‌ସନ ପଠେଇ ଦିଅ । ସେଥିରେ ଲେଖିଦିଅ ଯେ ସେମାନେ ଆସିଲା ବେଳେ ଖାଲି ହାତରେ ଆସିବେ ।

ପି.ଏ. ନମ୍ରତାର ସହିତ କହିଲେ ମୋ ମତରେ ଏଇଟା ହିଁ ରଙ୍ଗ୍ ସିଗ୍ନାଲ ହବ ସାର୍ ।

(ପ୍ରଗତିବାଦୀ - ୩.୮.୧୯୯୮)

***

# ସାଲିସ୍

ସେଥର ସ୍ୱର୍ଗ ରାଜ୍ୟରେ ଗଣତନ୍ତ୍ର ପ୍ରତିଷ୍ଠା ହେଲା ପରେ ପ୍ରଥମ କରି ଯେଉଁ ମନ୍ତ୍ରୀମଣ୍ଡଳ ପ୍ରତିଷ୍ଠା କରାଗଲା ସେଥିପାଇଁ ତାର ଅଂଶୀଦାର ମାନଙ୍କୁ କମ୍ କୁସ୍ତି କସରତ କରିବାକୁ ପଡ଼ି ନଥିଲା । ବହୁ ଆଲୋଚନା, ବିଚାର ବିମର୍ଷ, ଯୁକ୍ତି ତର୍କ, ଟଣା ଓଟରା, ଖରିଦ ବିକ୍ରି ଏବଂ ଅଦଳ ବଦଳ ପରେ ମଧ ଯେତେବେଳେ ଧାର୍ଯ୍ୟ ଏକ ମାସ ସମୟ ଭିତରେ ଅଂଶୀଦାର ଦଳମାନେ ତାଙ୍କ ପ୍ରତିନିଧି ବାଛି ପାରିଲେନି କି ମିଳିତ ଦଳର ମୁଖ୍ୟଙ୍କ ଗ୍ରହଣଯୋଗ୍ୟ ହେଲା ନାହିଁ ସେତେବେଳେ ଶେଷ ଦିନ ରାତି ୧୧.୫୫ ମିନିଟ୍‌ରେ ସର୍ବଦଳୀୟ ନେତା ଘୋଷଣା କଲେ କି ସେମାନେ ଏକ ସର୍ବବାଦୀ ସମ୍ମତ ସିଦ୍ଧାନ୍ତରେ ଉପନୀତ ହେଇଚନ୍ତି । ଏହି ସିଦ୍ଧାନ୍ତ ଅନୁଯାଇ ଏକ ସାତ ଜଣିଆ ଅସ୍ଥାୟୀ ମନ୍ତ୍ରିମଣ୍ଡଳ ଗଠିତ ହେବ ଏବଂ ଏହା ସ୍ଥାୟୀ ମନ୍ତ୍ରିମଣ୍ଡଳ ଗଠିତ ହେବା ଯାଏ କାର୍ଯ୍ୟ କରିବ । ସେ ଏକଥା ମଧ ଘୋଷଣା କଲେ ଯେ ସ୍ୱର୍ଗରାଜ୍ୟର ନୂତନ ସମ୍ବିଧାନ ପ୍ରଣିତ ହେବା ଯାଏ ଭାରତର ପ୍ରଚଳିତ ନୀତି ନିୟମକୁ ସେମାନେ ଗ୍ରହଣ କରି ନେବେ । ତା'ର କାରଣ ଦେବଭୂମି ଭାରତ ଅନେକ ଦୃଷ୍ଟିରୁ ସ୍ୱର୍ଗ ରାଜ୍ୟର ନିକଟତର । ବାସ୍, ଏତିକିରେ ମନ୍ତ୍ରିମଣ୍ଡଳ ଶପଥ ଗ୍ରହଣ କରିଗଲେ । ଶପଥ ଗ୍ରହଣ ଦିନ ହିଁ ମନ୍ତ୍ରିମଣ୍ଡଳର ପ୍ରଥମ ବୈଠକ ଅନୁଷ୍ଠିତ ହେଇ ସେଥିରେ ଗୋଟିଏ କମନ୍ ମିନିମମ୍ ପ୍ରୋଗ୍ରାମ୍ ବିଷୟରେ ଆଲୋଚନା ହେଲା ।

ଆଲୋଚନା ଆରମ୍ଭ କରି ଦଳର ଦୁଇ ନମ୍ବର ଭାଗୀଦାର କହିଲେ ପ୍ରଥମେ ଆମ ରାଜ୍ୟର ରାସ୍ତାଗୁଡ଼ିକ ଆମର ମହାନ ଜନନେତାମାନଙ୍କ ନାଁରେ ନାମିତ କରିବା ବିଷୟରେ ଆଲୋଚନା ହେଉ । ସେ କହିଲେ ଆମ ନିର୍ବାଚନ ପ୍ରତିଶ୍ରୁତିକୁ ଆମେ ପ୍ରଥମେ ଆଲୋଚନା କରିବାକୁ ଚାହୁଁ । ଅନ୍ୟମାନେ ଏଥିରେ ରାଜି ହେଲେ । ସେମାନେ କହିଲେ ଆମେ ଏ ପ୍ରସ୍ତାବକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରୁଁ । ତାର କାରଣ ଦେଶ ସେବାର ତାଲିକାରେ ପୂଜ୍ୟ ପୂଜାର ପବିତ୍ର ପରମ୍ପରାକୁ ଆମେ ପଛକୁ ରଖିବାକୁ ଚାହୁଁନା ।

ଦଳର ମୁଖ୍ୟ ଆଉ ମନା କରି ପାରିଲେନି । ପ୍ରସ୍ତାବ ଗୃହୀତ ହେଇ ସେ ଦିନର କାର୍ଯ୍ୟକ୍ରମ ସେଇଠି ଶେଷ ହେଲା । ସେ ପ୍ରସ୍ତାବରେ ଏକଥା ମଧ୍ୟ ଥିଲା ଯେ, ରାଜ୍ୟର ସମସ୍ତ ରାସ୍ତା, ଗଳି ଓ ଛକ ସବୁକୁ ଦେଶର ମୃତ ବା ଜୀବିତ ମହାନ ନେତାମାନଙ୍କ ନାମରେ ନାମିତ କରାଯିବ ଏବଂ ଏସବୁ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ପାଇଁ ଏକ ସ୍ୱତନ୍ତ୍ର ଡିରେକ୍ଟୋରେଟ୍ ଖୋଲାଯିବ ।

କିନ୍ତୁ କି ଆଶ୍ଚର୍ଯ୍ୟ, ଡିରେକ୍ଟୋରେଟ୍ ଖୋଲଯିବାର ମାତ୍ର ଦିନକ ପରେ ଏତେ ନାଁ ସବୁ ଆସି ପହଞ୍ଚିଲା ଯେ ହିସାବ କରି ଦେଖିଲାବେଳକୁ ତାର ଅର୍ଦ୍ଧେକ ସଂଖ୍ୟକ ରାସ୍ତା ମଧ୍ୟ ରାଜ୍ୟରେ ନାହିଁ । ସରକାର ବଡ଼ ଅଡୁଆରେ ପଡ଼ିଲେ । ସମସ୍ତଙ୍କୁ ତ ସନ୍ତୁଷ୍ଟ କରିବାକୁ ପଡ଼ିବ । ଗୋଟିଏ ସର୍ବଦଳୀୟ ଗଣତନ୍ତ୍ରରେ ତାହାହିଁ ମୂଳନୀତି । ଯିଏ ଯାହା ଚାହୁଁଚି ତାକୁ ତାହା ଦିଆଯାଉ । କିନ୍ତୁ ଏ ଆଡ଼େ ସରକାରଙ୍କ ଆର୍ଥିକ ଅବସ୍ଥା ଏତେ ଖରାପ ଥିଲା ଯେ, ସେତେବେଳେ ନୂଆ ରାସ୍ତା ତିଆରି କରିବା ତ ଦୂରର କଥା ପୁରୁଣା ରାସ୍ତାର ମରାମତି ମଧ୍ୟ ହେଇ ପାରୁ ନଥିଲା ।

ବିଭାଗୀୟ ମୁଖ୍ୟ ବଡ଼ ଅଡୁଆରେ ପଡ଼ିଲେ । ସେ ନିଜେ କିଛି ସିଦ୍ଧାନ୍ତ ନେଇ ନ ପାରି ଫାଇଲ୍‌ଟିକୁ ଚିଫ୍‌ଙ୍କ ପାଖକୁ ପଠାଇ ଦେଲେ । ଚିଫ୍ ସେଥିରେ ଆଦେଶ ଦେଲେ ଯେ ଗୋଟିଏ ରାସ୍ତାକୁ ଦୁଇ ବା ଆବଶ୍ୟକ ହେଲେ ତିନି ମହାନ୍ ନେତାଙ୍କ ନାମରେ ନାମିତ କରାଯାଉ । କଥାଟାକୁ ସ୍ପଷ୍ଟ କରିବାକୁ ଯାଇ ସେ ବିଭାଗୀୟ ମୁଖ୍ୟଙ୍କୁ ଡାକି ଏ ସମ୍ପର୍କରେ ସରକାରଙ୍କ ନୀତି ବିଷୟରେ ଭଲ ଭାବରେ ବୁଝେଇ ଦେଲେ ।

କିନ୍ତୁ ଅଂଶୀଦାର ନେତାମାନେ ତାକୁ ଗ୍ରହଣ କଲେ ନାହିଁ । ସେମାନେ କହିଲେ ଏହା କିପରି ସମ୍ଭବ । ଗୋଟିଏ ରାସ୍ତାକୁ ଦୁଇ ନେତାଙ୍କ ନାମରେ ନାମିତ କଲେ ତାହା କେଉଁ ନେତାଙ୍କ ନୀତି ଓ ଆଦର୍ଶକୁ ପ୍ରଜ୍ଞାପିତ କରିବ ?

ସରକାରୀ ମୁଖପାତ୍ର ସେ ଯୁକ୍ତିର ଖଣ୍ଡନ କଲେ । ସେ କହିଲେ ଏହା କୌଣସି ନୀତି ଓ ଆଦର୍ଶର ପ୍ରତିବନ୍ଧକ ସୃଷ୍ଟି କରିବ ନାହିଁ । ଏପରି ନାମକରଣ ଆମ ପରମ୍ପରାରେ ଅଛି । ଯୁକ୍ତିକୁ ସରଳ କରିବାକୁ ଯାଇ ସେ କହିଲେ, ଯଦି ଗୋଟିଏ ଟ୍ରେନକୁ କୋଣାର୍କ ଏକ୍‌ସ୍‌ପ୍ରେସ୍ ଓ ଚିନାର ଏକ୍‌ସପ୍ରେସ୍ ବୋଲି ଦୁଇଟି ନାମରେ ନାମିତ କରାଯାଇପାରେ ତେବେ ଗୋଟିଏ ରାସ୍ତାକୁ

ଦୁଇ ନେତାଙ୍କ ନାମରେ ନାମିତ କଲେ କ୍ଷତି କଅଣ ? ସେ କହିଲେ, ରାଜଧାନୀର ଜନପଥକୁ ପ୍ରଥମ ଥର ପାଇଁ ଆମ ରାଜ୍ୟର ଦୁଇ ମହାନ୍ ନେତାଙ୍କ ନାମରେ ନାମିତ କରାଯିବ । ମହା ସମାରୋହରେ ଏହି ନୂତନ ନାମ କରଣକୁ ଆସନ୍ତା ମାସ ପହିଲା ତାରିଖରେ ଉଦ୍‌ଘାଟନ କରାଯିବ ବୋଲି ସ୍ଥିର ହୋଇ ସାରିଛି ।

ନେତାମାନେ ଯେତେବେଳେ ପଚାରିଲେ ସେ ମହାନ୍ ନେତାଙ୍କ ନାମ କଅଣ ?

ମୁଖପାତ୍ର କହିଲେ, ଆମେ ପ୍ରଥମେ ଆମର ମୁଖ୍ୟ ରାସ୍ତାଟିକୁ ଆମର ଅତ୍ୟନ୍ତ ଜନପ୍ରିୟ ନେତା ରାମ ଓ ରାବଣଙ୍କ ନାମରେ ନାମିତ କରିବୁଁ ।

ନେତାମାନେ ତାର ପ୍ରତିବାଦ କଲେ । ସେମାନେ କହିଲେ ଭୁବନେଶ୍ୱରରୁ ମୁମ୍ବାଇ ରେଳରାସ୍ତା ସବୁଠି ସମାନ ଚଉଡ଼ା ବିଶିଷ୍ଟ ଥିଲା ବେଳେ ରାଜଧାନୀର ଜନପଥ ସେପରି ନୁହେଁ ।

ସରକାରୀ ମୁଖପାତ୍ର କହିଲେ, ତେବେ ଠିକ୍ ଅଛି । ସମସ୍ତଙ୍କୁ ସମାନ ସୁବିଧା ଦେବା ଆମର ଉଦ୍ଦେଶ୍ୟ । ତେଣୁ ରାସ୍ତାଟିକୁ ପ୍ରଥମ ଛଅ ମାସ ରାମ ରାବଣ ରୋଡ ଏବଂ ପର ଛଅ ମାସ ରାବଣ-ରାମ ରୋଡ ହିସାବରେ ନାମିତ ହେବ ।

ଏକଥାରେ ଅବଶ୍ୟ ନେତାମାନଙ୍କର ଆପତ୍ତି ରହିଲାନି । କିନ୍ତୁ ସେମାନେ କହିଲେ ଆମ ନେତା 'ରାମ' ଜଣେ ବିଚକ୍ଷଣ ରାଜନୀତିଜ୍ଞ, ଯୋଦ୍ଧା, ପ୍ରଜାବତ୍ସଳ ତଥା ଗଣତନ୍ତ୍ରର ତ୍ରାଣକର୍ତ୍ତା ଥିଲେ । ତାଙ୍କ ନାମ ସହିତ 'ରାବଣ' ପରି ଜଣେ ମସଲମେନ୍ ବା ମାଫିଆ ଯେ କି ଆଜିଯାଏ ଗଣତାନ୍ତ୍ରିକ ବିଚାର ଧାରାରେ ମୋଟେ ବିଶ୍ୱାସ ରଖି ନାହାନ୍ତି ତାଙ୍କ ନାଁଟାକୁ ଯୋଡ଼ି ଗୋଟାଏ ରାସ୍ତାକୁ ନାମିତ କରିବାକୁ ଆମେ ବିରୋଧ କରୁଚୁଁ । ସେମାନେ କହିଲେ ଆମେ ଗୋଟିଏ ନୀତିରେ ବିଶ୍ୱାସ କରୁଁ । ଆମ ନେତା ସୀତାପତି ରାମଚନ୍ଦ୍ର ଜଣେ ସାଧୁ ଓ ସୁ-ପୁରୁଷ । ସେ ଗୋଟିଏ ପତ୍ନୀରେ ବିଶ୍ୱାସ କରନ୍ତି ବୋଲି ସବୁବେଳେ ତାଙ୍କୁ ସାଥିରେ ନେଇ ବୁଲନ୍ତି । ସେ ସଚ୍ଚରିତ୍ର ହୋଇଥିବାରୁ ସବୁବେଳେ ସାଧୁ ସନ୍ୟାସୀ ଏବଂ ତାନ୍ତ୍ରିକମାନଙ୍କୁ ଆଦର କରନ୍ତି । ସେ ଅତି ନମ୍ର ଓ ମିଷ୍ଟଭାଷୀ । ସେ ପରୋପକାରୀ ତଥା ପ୍ରଜାବତ୍ସଳ ହୋଇଥିବାରୁ ତାଙ୍କ ସମୟରେ ରାଜ୍ୟରେ ଲକ୍ଷ ଲକ୍ଷ ଡଲାରର ସମ୍ବଳ ସଂଗ୍ରହର ସମ୍ଭାବନା

ସୃଷ୍ଟି ହେଇ ପାରିଥିଲା । ଫଳରେ ରାଜ୍ୟରେ ମୁଣ୍ଡ ପିଛା ଆୟ ୧.୫ ରୁ ୮.୫ ର ବୃଦ୍ଧି ପର୍ଯ୍ୟନ୍ତ ଯୋଜନା ତିଆରି କଥା ଚିନ୍ତା କରାଯାଇଥିଲା । ଏହାହିଁ 'ରାମ ରାଜ୍ୟ' ବୋଲି ଆମ ଇତିହାସକାରମାନେ କହନ୍ତି । ଅପର ପକ୍ଷରେ ରାବଣକୁ ଆମ ରାଜ୍ୟରେ କିଏ ନ ଜାଣେ ? ସେ କେବଳ ମାଫିଆ ଶାସନରେ ବିଶ୍ୱାସ କରନ୍ତି । ଚୋର, ତସ୍କର, ଖୁଣୀ ଓ ବଦମାସମାନେ ତାଙ୍କ ଅମଳରେ ରାଜ୍ୟରେ ପ୍ରଥମ ଶ୍ରେଣୀ ନାଗରିକ ହିସାବରେ ପରିଗଣିତ ହେଲେ । ତାଙ୍କ ସମୟରେ ନାରୀ ନିର୍ଯ୍ୟାତନା ବୃଦ୍ଧି ପାଇଲା । ସତକଥା କହିବାକୁ ଗଲେ ତାଙ୍କର କିଛି ନୀତି ନିୟମ ନଥିଲା । ତେଣୁ ଏ ଦୁଇ ବିପରୀତ ଧର୍ମୀ ନେତାଙ୍କୁ ଗୋଟିଏ ରାସ୍ତାରେ ରଖି ଏବେ ଆଉ ଗଣତନ୍ତ୍ରକୁ ହାସ୍ୟାସ୍ପଦ କରା ନ ଯାଉ । ସେମାନେ ସ୍ପଷ୍ଟ କହିଦେଲେ ଯେ ଆମେ ଏ ନୀତି ସହିତ ସାଲିସ୍ କରିବୁ ନାହିଁ ।

ସରକାରୀ ମୁଖପାତ୍ର ତ ଆଗରୁ ଟ୍ରେନିଂ ପାଇଚନ୍ତି । ସେ ଏମିତି କଥାରେ ଦବି ଯିବା ପାତ୍ର ନୁହଁନ୍ତି । ସେ କହିଲେ ରାବଣକୁ ଖରାପ ଅର୍ଥରେ ଗ୍ରହଣ କରିବା ଉଚିତ୍ ନୁହେଁ । ସେ ଇତିହାସର ଉଦାହରଣ ଦେଇ କହିଲେ ଆଉରଙ୍ଗଜେବ ଜଣେ ଅତ୍ୟାଚାରୀ ରାଜା ଥିଲେ ବୋଲି ଆମେ ସମସ୍ତେ ଜାଣୁଁ । ତଥାପି ଦିଲ୍ଲୀରେ ତାଙ୍କର ନାଁରେ ରାସ୍ତାଟିଏ ନାମିତ ହେଇଚି । ସେଠାରେ ଦେଶର ମହାନ୍ ବ୍ୟକ୍ତିମାନେ ବାସ କରନ୍ତି । କଲିକତାର ହୋ-ଚି-ମିନ୍ ସରଣୀରେ ଆମେରିକାନ୍ ଦୂତାବାସ ରହିଚି । ଯଦିଓ ଏ ଦୁହିଁଙ୍କର ନୀତି ଓ ଆଦର୍ଶ ଭିନ୍ନ ।

ସେ ସେମାନଙ୍କୁ ଆହୁରି ବୁଝାବାକୁ ଯାଇ କହିଲେ, ରାଜନୀତିରେ ପାତ୍ର ଅପାତ୍ରର ବାଛ ବିଚାର ନାହିଁ । ଛୁଆଁ ଅଛୁଆଁର ପ୍ରଶ୍ନ ନାହିଁ । ନୀତି ଅନୀତିର କଥା ଉଠେନା । କେବେ ଉଠିନାହିଁ ମଧ୍ୟ । ମୂଳ କଥା ହେଲା ରାଜନୀତିରେ ନୀତି ଶବ୍ଦଟାକୁ ଆକ୍ଷରିକ ଅର୍ଥରେ ନେବା ଉଚିତ୍ ନୁହେଁ । ରାଜା ରାମଚନ୍ଦ୍ର ମଧ୍ୟ ରାବଣ ମଲାବେଳେ ତାଙ୍କ ପାଦ ପାଖରେ ବସି ରାଜନୀତି ଶିକ୍ଷା କରିଥିଲେ । ଭିନ୍ନ ଅର୍ଥରେ କହିବାକୁ ଗଲେ ରାମଙ୍କ ରାଜନୀତିର ମୂଳ ଉତ୍ସ 'ରାବଣ ନୀତି' । ଏହାହିଁ ତ ଭାରତୀୟ ରାଜନୀତିର ମହାନ୍ ପରମ୍ପରା । ଆମେ ତାକୁ ଛାଡ଼ି ଚଳିବୁ କେମିତି ?

(ପ୍ରଜାତନ୍ତ୍ର : ୨୦.୯.୧୯୯୭)

***

# ଆଉ ଏକ ମୁହଁ

ବିଗତ ପଚାଶ ବର୍ଷ ଭିତରେ ଆଉ କାହାର କିଛି ଉପକାର ହେଇଥାଉ ବା ନଥାଉ ପଣ୍ଡିତ ବାଇକୋଳି ଶର୍ମାଙ୍କର ଯଥେଷ୍ଟ ଉନ୍ନତି ହେଇଚି, ଏଥିରେ ଆଉ ଦ୍ୱିମତ ହେବାର କିଛି ନାହିଁ । କେବଳ ଯେ ପଣ୍ଡିତ ଶର୍ମାଙ୍କର ଉନ୍ନତି ହେଇଚି ତା ନୁହେଁ, ପଣ୍ଡିତଙ୍କ ପାଇଁ ଯୋଉ ଗାଁକୁ ଗତ ଦୁଇ ଶତାବ୍ଦୀ ଧରି ରାସ୍ତାଟିଏ ପଡ଼ି ପାରୁ ନଥିଲା, ସେ ଗାଁକୁ ଏବେ ବସ୍, ମଟର, କାର୍ ମଧ ଚାଲିଲାଣି । ତେଣୁ ଯେଉଁମାନେ କହନ୍ତି ଭାରତର ସ୍ୱାଧୀନତା ଠାରୁ ଏ ଯାଏ ଦରିଦ୍ର ଜନସାଧାରଣଙ୍କର କିମ୍ବା ନିପଟ ମଫସଲରେ କୌଣସି ଉନ୍ନତି ମୂଳକ କାମ ଏ ଯାଏ ହେଇନି, ଏଇ ପଣ୍ଡିତ ଶର୍ମା ଓ ତାଙ୍କ ଗାଁ ନରିପୁରର ଉଦାହରଣ ସେ ପ୍ରକାର ସମାଲୋଚକଙ୍କ ମୁହଁଟାକୁ ଖପ୍ କରି ବନ୍ଦ କରିଦିଏ ।

ସମସ୍ତେ ଦେଖିଚନ୍ତି ପଣ୍ଡିତଙ୍କୁ । ତାଙ୍କ ବାପ ଗୋସପାଙ୍କୁ । ତାଙ୍କ ଘର ପଚାଶ ବର୍ଷ ତଳେ କଅଣ ଥିଲା ଏବଂ କଅଣ ହେଇଚି ଏକଥା ମଧ ସମସ୍ତେ ଦେଖିଛନ୍ତି । ତାଙ୍କ ତାଳବରଡ଼ାର ତାଟିରୁ ଏବେ ଦୁଇଝାଳିଆ ଶାଗୁଆନ୍ କାଠର କବାଟ ତାଙ୍କ ଘରର ଶ୍ରୀମଣ୍ଡନ କରୁଚି ।

ଲୋକେ ଏକଥା ଜାଣନ୍ତି ପଣ୍ଡିତେ କଅଣ ଥିଲେ ଏବଂ ଏବେ କଅଣ ହେଇଚନ୍ତି । ସ୍ୱାଧୀନତା ଆନ୍ଦୋଳନ ଚାଲିଥିଲାବେଳେ ପଣ୍ଡିତଙ୍କ ବାପର ଏକମାତ୍ର ସମ୍ବଳ ଥିଲା ଗାଁ ମୁଣ୍ଡର ବରଗଛ ତଳେ ଥିବା ଦୁଇଫୁଟ ବାଇ ଦେଢ଼ଫୁଟର ମାଙ୍ଗଡ଼ା ପଥର ଖଣ୍ଡିଏ ଯାହାକୁ ଲୋକେ କହନ୍ତି ସେ କୁଆଡ଼େ ଖରସ୍ରୋତା ନଈରେ ଗାଧୋଉ ଥିଲାବେଳେ ପାଇଥିଲେ ଏବଂ ତାକୁ ଆଣି ସିନ୍ଦୁର ଲେପି ଥୋଇଥିଲେ ବଡ଼ି ଭୋରରୁ କେହି ଉଠି ନଥିଲାବେଳେ । ସେଇ ସେତକ ପୁଞ୍ଜିରୁ ପଣ୍ଡିତଙ୍କ ବାପ ବହୁ କଷ୍ଟରେ ଗାଈଆଳ ପିଲାଙ୍କଠାରୁ ପଇସେ ଦି' ପଇସା କିମ୍ବା ଧାନ କଟାବେଳେ ଧାନ ବିଲରୁ ଯେମିତି ଚୋରି ନ ହେଉ ତା ପାଇଁ ଯୋଉମାନେ ମାଜଣା କରୁଥିଲେ ତାଙ୍କଠୁ ପାଞ୍ଚ ସାତ

ପଇସା ନେଇ କୌଣସି ପ୍ରକାରେ ସାତ ଝିଅ ଓ ଏକମାତ୍ର ପୁଅକୁ ବଞ୍ଚେଇ ରଖିଥିଲେ ।

ବାଇକୋଳି ମୋଟେ ସ୍କୁଲ କିମ୍ବା ଏପରିକି ଚାଟଶାଳୀ ମଧ ଦେଖି ନାହାନ୍ତି । ସେ ସୁଯୋଗ ମଧ ତାଙ୍କ ଭାଗ୍ୟରେ ଜୁଟି ନଥିଲା । ପିଲାକାଳେ ତାଙ୍କର ପ୍ରଧାନ କାମ ଥିଲା ବାଟମଙ୍ଗଳା ପାଇଁ ଭୋରରୁ ଫୁଲ ସଂଗ୍ରହ କରିବା, ପୂଜା ସରଞ୍ଜାମ ଯୋଗାଡ଼ କରିବା, ପାଣି ଢାଳ, ଦୀପ ଓ ଧୂପଦାନୀ ମାଜି ସଫା କରିବା ଏବଂ ପରେ ନନାଙ୍କ ପଛେ ପଛେ ମଙ୍ଗଳାଙ୍କ ଠାକୁ ଯିବା । ବାପ ପୁଅ ଦିନଯାକ ସେଇଠି କଟେଇଲା ପରେ ସଞ୍ଜବେଳେ ଘରକୁ ଫେରିଲା ବେଳକୁ ଗାମୁଛାରେ ଯେତିକି ବନ୍ଧା ଥାଏ ସେତକରେ ମୋଟା ମୋଟି ପରିବାର ଦିନଟିଏ ଚଳିଯାଏ ।

ଇଏ ସେଇ ବାଇକୋଳି । ଏବେ ସେ ନିଜ ନାଁ ପଛରେ ପଣ୍ଡିତଟିଏ ଯୋଡ଼ି ସାରିଲେଣି ଏବଂ ମିଶ୍ର ବଦଳରେ ଶର୍ମା ମଧ ଯୋଗ କଲେଣି । ବେଳେବେଳେ ପଣ୍ଡିତ ବାହାରୁ ଆସିଥିବା ଲୋକମାନଙ୍କୁ ନିଜ କଥା କହୁଥିଲାବେଳେ ଏ କଥା ମଧ କୁହନ୍ତି ଯେ, ତାଙ୍କ ପୂର୍ବ ପୁରୁଷମାନେ ଓଡ଼ିଶାର ନୁହନ୍ତି । ସେମାନେ ମୂଳତଃ ବାରାଣସୀର । ଖାରବେଳଙ୍କ ସମୟରେ ଏମାନେ ଏଠାକୁ ରାଜଗୁରୁ ହିସାବରେ ଆସିଥିଲେ । ଏକଥା ମଧ କହନ୍ତି ଯେ ତମ୍ବା ପଟାରୁ ପ୍ରମାଣ ମିଳିଚି ଯେ ତାଙ୍କ ପୂର୍ବପୁରୁଷମାନେ ଅନ୍ତତଃ ଦୁଇଶହ ବର୍ଷ ଯାଏ ରାଜର୍ଷି ଉପାଧି ବହନ କରି ଆସିଥିଲେ । ଖାରବେଳଙ୍କ ପରେ ଓଡ଼ିଶାର ରାଜବଂଶ ଧ୍ୱସ୍ତ ବିଧ୍ୱସ୍ତ ହେବାର ପ୍ରଧାନ କାରଣ ହେଲା ରାଜାମାନେ ରାଜର୍ଷିଙ୍କୁ ଯଥେଷ୍ଟ ସମ୍ମାନ ଦେଇ ନଥିଲେ ।

ଏବେ ପଣ୍ଡିତେ କହନ୍ତି ଆର୍ଯ୍ୟଭୂମି ଭାରତ ଆଉ ସେ ଭୁଲ କରୁ ନାହିଁ । କରୁ ନାହିଁ ବୋଲି ତାର ଯଶବାନା ଏବେ ବିଶ୍ୱବ୍ରହ୍ମାଣ୍ଡରେ ଖ୍ୟାତ । ଏବେ ଦେଖ ଲୋକେ ଚନ୍ଦ୍ର ଲୋକକୁ ଗଲେଣି । ହିମାଳୟକୁ ଅର୍ଥାତ କୈଳାଶ ପର୍ବତ ଶିଖରକୁ ବଢ଼ିଲେଣି । ମେରୁରେ ମଧ ପାଦ ଥାପିଲେଣି ଏବଂ ସର୍ବୋପରି ସଶରୀରେ ସ୍ୱର୍ଗକୁ ଅର୍ଥାତ ମହାକାଶକୁ ମଧ ଗଲେଣି ।

ପଣ୍ଡିତେ ଏ କଥା ଭାବବିହ୍ୱଳ ହେଇ କହୁଥିବାବେଳେ ଗାଁ ଲୋକେ ହାଁ କରି ତାଙ୍କ ମୁହଁକୁ ଅନେଇ ଥାଆନ୍ତି । ସତରେ କେତେ କଥା ପଣ୍ଡିତେ ନ ଜାଣିଚନ୍ତି । ମିଛଟାରେ କଅଣ ତାଙ୍କୁ ପଣ୍ଡିତ ଉପାଧି ମିଳିଚି । ମିଛରେ କଅଣ ତାଙ୍କଠାରୁ ସହରରୁ ଲୋକେ ଗାଡ଼ି ମଟର ଧରି ଦିନ ନାହିଁ ରାତି

ନାହିଁ ଦଉଡ଼ୁଛନ୍ତି । ପ୍ରକୃତରେ ବାଟମଙ୍ଗଳା ପଣ୍ଡିତଙ୍କ କଥା ହିଁ ଶୁଣନ୍ତି । ପଣ୍ଡିତଙ୍କ କଥାରେ ବାଟମଙ୍ଗଳା ବାଟ ଚାଲନ୍ତି କହିଲେ ଭୁଲ ହେବନି ।

ହେଇତ ସେ ଦିନ ସହରରୁ ସେ ମୋଟା ଲୋକଟା କାର୍‌ରେ ତାର ଅଶୀ କି ନବେ ବର୍ଷର ବୁଢ଼ୀ ମାକୁ ଯାହାକୁ କେତେ ବଡ଼ ବଡ଼ ଡାକ୍ତର କହି ଦେଇଥିଲେ ଦିନ ସାରି ଆସିଲାଣି, ଆଉ ଔଷଧ ଦେଇ ଲାଭ ନାହିଁ, ତାକୁ ପଣ୍ଡିତେ ଫୁଲ ଛୁଆଇଁ କହିଲେ, ମାଆ କହିଲେ ଆହୁରି ଅନେକ ବାକି ଅଛି, ନିର୍ଭୟରେ ଯାଅ । ଏବେ ତ ଶୁଣାଯାଉଚି ବୁଢ଼ୀ କୁଆଡ଼େ ବଞ୍ଚୁଚି ।

'ଖାଲି ବଞ୍ଚୁଚି କଅଣ ? ଜନ୍ମରୁ ଭୋଗୁଥିବା ଶ୍ୱାସ ବେମାରି ଯାହା ପାଇଁ ବୁଢ଼ୀର ରୋଜ୍ ମଲା ଡାକ ପଡୁଥିଲା ସେ ଏବେ ବାଡ଼ି ଧରି ଚାଲବୁଲ୍ କଲାଣି ବୋଲି ମୁଢ଼ି ବିକିବାକୁ ଯାଇ କିଣା ରାଢ଼ୀମା ଦେଖିଚି ବୋଲି କହୁଥିଲା ।'

'କାହିଁକି ସନାତନ କଥା କଅଣ ହେଲ । କିଏ ଜାଣିଥିଲା ସେ ଏଥର ସରପଞ୍ଚ ହେବ ବୋଲି ? ତାକୁ କିଏ ଜାଣିଥିଲା କହିଲ ? ତାକୁ ଗାଁ କଅଣ ଏ ଖଣ୍ଡମଣ୍ଡଳରେ କିଏ ଚିହ୍ନିଥିଲା ? ସେ ତ ଜନ୍ମରୁ କେବେ ଗାଁରେ ନ ଥିଲା । କିନ୍ତୁ ପଣ୍ଡିତେ ତାକୁ ତିନିଟା ଗାରକାଟି କହି ଦେଲେ, ତୁମେ ଜିତିବ, ଜିତିବ, ଜିତିବ । ଏବେ ଦେଖ ସତ ହେଲା କି ନାହିଁ ? ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ମନ୍ତ୍ରୀଙ୍କୁ ଡାକି ଭୋଟ ପ୍ରଚାର କରି ମଧ ଜଗା ରାଓ ଚିତ୍ ପଟାଙ୍ଗ ।

ତୁମେ ତ ଜାଣିଚ ଗତ ମଙ୍ଗଳବାର ଦିନ ରାତି ଅଧରେ ରାଜଧାନୀରୁ ଆସିଥିଲେ ଜଣେ ମନ୍ତ୍ରୀ ତାଙ୍କ କାର୍‌ରେ । ମଙ୍ଗଳା ପାଇଁ ତ ଯାହା ଭୋଗ ରାଗ ଆଣିଥିଲେ ସେ କଥା ଛାଡ଼ । ପଣ୍ଡିତଙ୍କୁ କହିଲେ ମୋତେ ଜିତେଇ ଦେଲେ ମୁଁ ତୁମକୁ ସହରରେ ମୋର ଗୋଟାଏ ଦୋ ମହଲା କୋଠା ଛାଡ଼ି ଦେବି । ପଣ୍ଡିତ ସାଙ୍ଗେ ସାଙ୍ଗେ ଏଇ କାନ ଥରା ଶୀତରେ ଅଧ ରାତିରେ ପୋଖରୀରେ ବୁଡ଼ ପକେଇ ବସିଲେ ପୂଜାରେ । ଭୋର ହେଲା ବେଳକୁ ଉଠିଲେ ଆଉ କହିଲେ, ଯାଅ ଶନିବାର ଦିନ ଠିକ୍ ୧୨ଟା ୪୬ ମିନିଟ୍ ୧୫ ସେକେଣ୍ଡରେ କାଗଜ ଫାଇଲ କରିବ । ଗୋଟିଏ ସେକେଣ୍ଡ ମଧ ଏ ପାଖ ସେପାଖ ହେବ ନାହିଁ । ମୁଁ ଠିକ୍ ସମୟରେ ଏଠି କଣ୍ଟା ପିଟି ଦେବି । ତୁମେ ଦେଖିବ ଆଉ ସମସ୍ତଙ୍କ କାଗଜ ବେକାର ହୋଇଯିବ ।

'ସିଏ କୋଉ ଦଳର କି ?'

'ସେଥିରୁ ତମେ କଅଣ ପାଇବ ? କଥାକୁ କଥା ପଡ଼ିଚି ନା ।'

'ଏମିତି ତ ଅନ୍ୟମାନେ ବି ଆସୁଥିବେ ।'

'କିନ୍ତୁ ସେଥିରେ ପଣ୍ଡିତେ କଅଣ କରିବେ ? ଯାହା ନାଁରେ ଗୁଳା ଉଠିବ ନାଁ ।'

'ହେଇ ଯେ ପଣ୍ଡିତେ ଆଇଲେଣି । ଜୁହାର ପଣ୍ଡିତେ ।'

'ମା ମଙ୍ଗଳା କୋଟି ପରମାୟୁ ଦେବେ ଆପଣଙ୍କୁ ।'

'କିରେ କାହା କଥା ପଡ଼ିଚି କିରେ ।'

'ଆଉ କାହା କଥା ଗୋସେଇଁ ? ଏ ଖଣ୍ଡ ମଣ୍ଡଳରେ ଆଉ କାହା କଥା ପଡ଼ୁଚି ଯେ ?'

ସବୁ ସେଇ ମା'ର ଆଶୀର୍ବାଦ । ମୁଁ ତ ନିମିତ୍ତ ମାତ୍ର । ମୋର କଅଣ କରିବାର ଅଛି କହିଲ ? ମାଆ ଯାହା କହେ ମୁଁ ତାକୁ ଶୁଣେଇ ଦିଏ । ଗୋଟିଏ ଶବ୍ଦ ବି ଅଧିକ ଯୋଡ଼େ ନାହିଁ । ମୁଁ ତ ତାରି ଚାକର ନା ଆଉ କଅଣ ?

'ଗୋସେଇଁ, ଗୋଟେ କଥା ମ । କଅଣ କାଲି ସଞ୍ଜରେ ଭାରୀ ଗହଳ ଚହଳ ଶୁଭୁଥିଲା ସେଠି । ମୁଁ ହାଟରୁ ଫେରୁଥିଲି ସେତେବେଳେ । ବହୁତ ଗାଡ଼ି ବି ଥିଲା ବୋଧେ ।'

ଓହୋ ସେତେବେଳେ । ଆରେ ତମେ ସବୁ ଜାଣନ କି ? ସେ ଜଣେ ଆସିଥିଲେ ସହରରୁ । କଲିକତାରୁ କି କଅଣ । ତାଙ୍କୁ ମୋ କଥା କିଏ କହିଲା କେଜାଣି । ସେତେବେଳେ ମୋର ପୂଜାର ବେଳ । ସେ ଆସିଲେ । ପୂଜା ସରିବା ଯାଏ ଗାଡ଼ିରେ ବସି ରହିଲେ । ତା ପରେ ତାଙ୍କ ଡ୍ରାଇଭର ଆସି କହିଲା ସାହେବ ଆପଣଙ୍କୁ ଡାକୁଚନ୍ତି । ମୁଁ କହିଲି ମୋତେ ନା ମାଆଙ୍କୁ ? ସେ କଅଣ ବୁଝିଲା କେଜାଣି ଫେରିଗଲା । ତାପରେ ବାବୁ ନିଜେ ଆସିଲେ । ମୋତେ କହିଲେ ମୋର ଆପଣଙ୍କ ସହିତ ଗୋପନରେ କିଛି କଥା ହେବାର ଅଛି । ମୁଁ ତାଙ୍କୁ ଭିତର ଘରକୁ ନେଇଗଲି । ତାଙ୍କ ଡ୍ରାଇଭର ଆଣି ଗୋଟିଏ ବ୍ରିଫ୍‌କେଶ ତାଙ୍କୁ ଦେଇ ଚାଲିଗଲା । ସେ ସେଇଟା ମୋ ସାମନାରେ ଥୋଇ ଦେଇ କହିଲେ ମୁଁ ଏଥର ଠିଆ ହେବି ବୋଲି ପାର୍ଟି ନିର୍ଦ୍ଦେଶ ଦେଇଚି ।

ମୁଁ ଏକଥା ଶୁଣି ଆଖି ବୁଜି ଦେଲି ଏବଂ କହିଲି ଆପଣଙ୍କ ନାଁର ପ୍ରଥମ ଅକ୍ଷରଟା ଖାଲି କହନ୍ତୁ । ତାପରେ କହିଲେ, କିନ୍ତୁ ମୋ ଗଣନାଟା ଟିକିଏ ବୈଜ୍ଞାନିକ ପଦ୍ଧତିରେ କରନ୍ତୁ । ଯେମିତି ଏକଦମ ଏକ୍ୟୁରେଟ୍ ହୁଏ । ଟିକିଏ ବୋଲି ଏପାଖ ସେପାଖ ଯେମିତି ନ ହୁଏ ।

ମୁଁ କହିଲି ଦେଖନ୍ତୁ । ମୋ ନିଜର ଗଣନା ବୋଲି କିଛି ନାହିଁ । ମୁଁ ଯାହା ଗଣନା କରେ ତାହା ମାଆ ମଙ୍ଗଳା ମୋତେ ବତେଇ ଦିଅନ୍ତି । ମୁଁ ତାକୁଇ କହିଦିଏ । ସେ ଗଣନାରେ ଭୁଲ ହେବାର ପ୍ରଶ୍ନ ଉଠେନା ।

ସେ ବ୍ୟସ୍ତ ହୋଇ କହିଲେ, ନା ସେକଥା ନୁହେଁ । ତେବେ ପିଲାକାଳରୁ ମୋର ଟିକିଏ ସେଇ ପ୍ରକାର ବିଶ୍ୱାସ ରହି ଆସିଚି । ଆପଣ ତ ଜାଣନ୍ତି କାଲ୍‌କୁଲେସନ୍ ଯଦି ଠିକ୍ ଥାଏ ... ।

ମୁଁ କହିଲି, ଆପଣ ମୋତେ ବ୍ୟସ୍ତ ହୁଅନ୍ତୁନି । ଆପଣଙ୍କ ସନ୍ଦେହ ମୋଚନ ପାଇଁ ମୁଁ ମୋ ନିଜ ଗଣନା ଅର୍ଥାତ ମାଆଙ୍କ ଗଣନା ଏବଂ କମ୍ପ୍ୟୁଟର ଗଣନା ଏ ଦୁଇଟା ଯାକ ଏଇନେ ଆପଣଙ୍କୁ ଦେଖେଇ ଦେବି । ଦେଖିବେ ଏ ଦୁଇଟା ଯାକ ଏକ୍‌ଦମ୍ ମିଳିଯିବ । ଆଉ ଗଣନା ଅନୁସାରେ ଅର୍ଥାତ ମ

(ପ୍ରଜାତନ୍ତ୍ର - ୪.୫.୧୯୯୬)

***

# ଅସରନ୍ତି ଗପ

ମୁଖ୍ୟମନ୍ତ୍ରୀ ଗତ ବିଧାନସଭା ଅଧିବେଶନର ଅବ୍ୟବହିତ ପୂର୍ବରୁ ତାଙ୍କର କେତେଜଣ ପ୍ରିୟ ସାମ୍ବାଦିକଙ୍କୁ ତାଙ୍କ ବାସ ଭବନକୁ ଡକାଇଥିଲେ । ସନ୍ଧ୍ୟା ଆଠଟାର ଏହି ବିଶେଷ ସାକ୍ଷାତକାରରେ ମୋ ସହିତ ଆଉ ଦୁଇଜଣ ଯୋଗ ଦେଇଥିଲେ । ସାମାନ୍ୟ କିଛି ମାଂସ ପକୋଡ଼ା ସହିତ ଅଳ୍ପ ମୃଦୁ ପାନୀୟ ଭିତରେ ଏବଂ ଏକ ସମ୍ପୂର୍ଣ୍ଣ ବନ୍ଧୁତ୍ୱପୂର୍ଣ୍ଣ ପରିବେଶ ମଧ୍ୟରେ ଆମର ଆଲୋଚନା ଆରମ୍ଭ ହେଇଗଲା । ମୁଁ ଦେଖିଲି ମୁଖ୍ୟମନ୍ତ୍ରୀ ତାଙ୍କର କୋଡ଼ିଏ ଘଣ୍ଟିଆ ଗଧ ଖଟଣୀ ପରେ ମଧ୍ୟ ବେଶ୍ ସତେଜ ଓ ସୁନ୍ଦର ଦେଖାଯାଉଥାଆନ୍ତି । କଥାଟା ସେ ଆରମ୍ଭ କଲେ । କହିଲେ-ଆମର ସବୁଠୁ ବଡ଼ ସମସ୍ୟା ହେଉଚି ଆମ ଯୋଜନାର ସୁଫଳଗୁଡ଼ିକ ଠିକ୍ ଭାବେ ଲୋକଙ୍କ ପାଖରେ ପହଞ୍ଚି ପାରୁନାହିଁ । ଆମେ ଯାହା ଯାହା କରୁଛୁ, କହୁଛୁ ଏବଂ ଏପରି କି ଯାହା ଯାହା ଚିନ୍ତା କରୁଛୁ ସେସବୁ ଠିକଣା ସମୟରେ ଏବଂ ସଠିକ୍ ଭାବରେ ଲୋକେ ଜାଣିବା ଉଚିତ୍ ।

ମୁଁ କହିଲି ଏହା ତ ଯୁକ୍ତିଯୁକ୍ତ କଥା । ସରକାରଙ୍କ ବିଫଳତା ସହିତ ସଫଳତା ମଧ୍ୟ ସମ୍ବାଦ ପତ୍ରରେ ସ୍ଥାନିତ ହେବା ଆବଶ୍ୟକ । କିନ୍ତୁ ମୋର ଗୋଟିଏ ବିଷୟରେ ଟିକିଏ ସନ୍ଦେହ ରହିଚି ।

ସେ କହିଲେ ଗୋଟିଏ କାହିଁକି ସବୁ ଯାକ ସନ୍ଦେହ ମୋଚନ ହେବା ଆବଶ୍ୟକ । 'ପଚାର, କଅଣ ପଚାରୁଚ ପଚାର । 'ମୁଁ କହିଲି ଆପଣ ଯୋଉ ତିନୋଟି ଇସ୍ପାତ କାରଖାନା ବସେଇବେ କହିଲେ.... ।'

ମୋ ପାଟିରୁ କଥା ଛଡ଼େଇ ସେ କହିଲେ ତିନୋଟି କଅଣ, ତେରଟି ଇସ୍ପାତ କାରଖାନା ହେବ । ତମର ଅସଲ ସନ୍ଦେହଟା ବୋଧେ ଏଇଠି । ଆମେ ଠିକ୍ କରି ସାରିଚୁ ତେରଟି ଇସ୍ପାତ କାରଖାନା ଭିତରୁ କେବଳ

ଗୋପାଳପୁରରେ ହେବ ତିନୋଟି, ଯାହା ପାଇଁ କାମ ଆରମ୍ଭ ହୋଇଗଲାଣି ଯୁଦ୍ଧକାଳୀନ ଭିତ୍ତିରେ ।

ମୋର ବନ୍ଧୁ କହିଲେ, କାମ ଆରମ୍ଭ ହେଇଗଲାଣି ? କାହିଁ ମୁଁ ତ ଏବେ ଗୋପାଳପୁର ଯାଇଥିଲି । ସେଠି ସେମିତି କିଛି....

ମୁଖ୍ୟମନ୍ତ୍ରୀ କହିଲେ, ଆଃ, କଥା ତ ସେଇଠି । କାମ ଆରମ୍ଭ ହୁଏତ ଚିନ୍ତାରୁ, ଯେମିତି ପିଲା ଜନ୍ମ ହୁଏ ମା' ପେଟରେ କନ୍‌ସିଭ କରିବା ପାଖରୁ ।

ମୁଁ କହିଲି ଆମକୁ ସେଇ ଷ୍ଟିଲ୍ ପ୍ଲାଣ୍ଟ କଥା ଟିକିଏ କହନ୍ତୁ । ସରାଜ ପାଲ କୁଆଡ଼େ କହିଥିଲେ ଷ୍ଟିଲ ପ୍ଲାଣ୍ଟ ପାନଦୋକାନ ନୁହେଁ ।

ସେ କହିଲେ କିନ୍ତୁ ମୋ ପାଇଁ ସେଇଟା ପାନ ଦୋକାନ । ସେ ଗୋଟିଏ କରି ପାରିଲେନି । ମୁଁ ଏଇନେ ତେରଟା କରୁଚି । ତମେ ଦେଖ ।

ମୋର ବନ୍ଧୁ ପଚାରିଲେ ଗୋପାଳପୁରରେ ଷ୍ଟିଲ୍‌ପ୍ଲାଣ୍ଟ ହେଲେ ସେଠାକୁ ଲୁହାପଥର କୋଉଠୁ ଆସିବ ?

ମୁଖ୍ୟମନ୍ତ୍ରୀ କହିଲେ ସବୁ ଆମ ହାତ ପାଆନ୍ତାରେ ଅଛି । ମୁଁ ତ କହିଚି, ଲୁହା ପଥର ସୁକିନ୍ଦାରୁ ଆସି ପହଞ୍ଚିବ ପାରାଦୀପରେ । ସେଠି ପୁଣି ଜାହାଜରେ ଲଦା ହେଇ ଗୋପାଳପୁର ବନ୍ଦରକୁ ଆସିବ । ସେଠି ସେଇଟା ଅନ୍‌ଲୋଡ ହେବ ଏବଂ ପୁଣି ଟ୍ରକ୍‌ରେ ଇସ୍ପାତ କାରଖାନା ଭିତରକୁ ଆସିବ ।

ମୋର ବନ୍ଧୁ କହିଲେ ଏଥିରେ ଅନେକ ସମୟ ଲାଗିବ ଏବଂ ଉତ୍ପାଦନ ଖର୍ଚ୍ଚ ମଧ୍ୟ ବଢ଼ିବ । ଆଉ ତା ଛଡ଼ା ପାରାଦୀପ ପୋର୍ଟର ଅବସ୍ଥା ମୋଟେ ଭଲ ନାହିଁ । ଏଇତ ଦେଖିଲେ ସେଠି ସାର ଜାହାଜ ଯୋଉଟା ଆମର ଅତ୍ୟନ୍ତ ଜରୁରୀ ତାକୁ ସେମାନେ ବିଶାଖାପାଟଣା ବନ୍ଦରକୁ ପଠାଇଦେଲେ । ଅଳ୍ପଦିନ ତଳେ ସେଠି କେତେକ କର୍ମକର୍ତ୍ତାଙ୍କୁ ଦୁର୍ବୃତ୍ତମାନେ ଅପହରଣ କରି ନେଇଥିଲେ । ସବୁବେଳେ ଶ୍ରମିକ ଅଶାନ୍ତି ତ ସେଠି ଲାଗି ରହିଛି । ତେଣୁ ଆପଣ କେମିତି ଆଶା କରୁଚନ୍ତି ଯେ, ସେ ବନ୍ଦରରୁ ଆପଣଙ୍କୁ ସାହାଯ୍ୟ ମିଳିବ ?

ମୁଖ୍ୟମନ୍ତ୍ରୀ କହିଲେ ସେସବୁ ଭୁଲ କଥା । ମୁଁ ଗତ କାର୍ତ୍ତିକ ପୂର୍ଣ୍ଣିମା ଦିନ ସେଠାକୁ ଯାଇଥିଲି । ଦେଖିଲି ସେଠି ରିଏଲ୍ ସାଧବ କିଛି ଅଛନ୍ତି ।

ସେମାନେ ମୋତେ ପ୍ରତିଶ୍ରୁତି ଦେଇଛନ୍ତି, ସେମାନେ ଗୋଳମାଳ କରିବେ ନାହିଁ । ତା'ଛଡ଼ା ଉତ୍ପାଦନ ଖର୍ଚ୍ଚ ବଢ଼ିବା କଥା ଯାହା କହିଲ ତାହା ମଧ୍ୟ ଠିକ୍ ନୁହେଁ । ଜାହାଜରେ ଲୁହାପଥର ଆଣିଲେ ଖର୍ଚ୍ଚ ଅନେକ କମ୍ ପଡ଼ିବ । ସେଇଥିପାଇଁ ତ ଏମ. ଏମ୍. ସି.ଟି ସେଠି ହଜାରେ କୋଟି ଟଙ୍କା ଖର୍ଚ୍ଚ କରିବ । କଥା ଯୋଡ଼ି ସେ କହିଲେ ଏମ.ଏମ.ଟି.ସି. ପାରାଦୀପରେ ମଧ୍ୟ ଆଉ ହଜାରେ କୋଟି ଟଙ୍କା ଖର୍ଚ୍ଚ କରି ତାର ନିଜସ୍ୱ ବର୍ଥ ତିଆରି କରିବ । ଖାଲି ଯେ ଏମ.ଏମ.ସି.ଟି. ଓଡ଼ିଶାରେ ପୁଞ୍ଜି ଲଗାଇବ ତା ନୁହେଁ ଏବେ ମସ୍କୋ, ଟିସ୍କୋ ପ୍ରଭୃତି ଅସଂଖ୍ୟ ଦେଶୀ ଓ ବିଦେଶୀ କମ୍ପାନୀ ଓଡ଼ିଶାରେ ପୁଞ୍ଜି ଲଗାଇବାକୁ ଗୋଡ଼ ଟେକି ବସିଲେଣି । ଏତେ ସଂଖ୍ୟାରେ ପ୍ରସ୍ତାବ ଆସୁଚି ଯେ ଆମେ ସେତିକି କାରଖାନା ଓଡ଼ିଶାରେ ବସାଇବାକୁ ସ୍ଥାନ ପାଉନୁଁ ।

ମୁଁ ଟିକିଏ ହସି ଦେଲି । ମୋର ବନ୍ଧୁମାନେ ମୋତେ ଅନେଇଲେ । ମୁଁ କହିଲି ସାରା ପ୍ରଦେଶରେ କଳକାରଖାନା ମାନ ଶାଗ ପଟାଳି ପରି ଖୁନ୍ଦି ହେଇଗଲେ ଲୋକମାନେ ରହିବାକୁ ଯାଗା ପାଇବେନି ।

ମୁଖ୍ୟମନ୍ତ୍ରୀ କହିଲେ ତାହା ହିଁ ଆମର ଚିନ୍ତା । ଗତ ପାଞ୍ଚବର୍ଷ ଭିତରେ ଘାସଟିଏ ମଧ୍ୟ ଲଗା ହେଲା ନାହିଁ । ଅଥଚ ରାଜକୋଷ ଖାଲି ହେଇଗଲା । ଏଇଥିପାଇଁ ତ ଲୋକେ ଆମକୁ ପୁଣି ଆଣି ବସେଇଲେ । ତେଣୁ ଆମକୁ କାମ କରିବାକୁ ପଡ଼ିବ ।

ମୋର ବନ୍ଧୁ ପଚାରିଲେ ସବୁଠି ଯଦି କଳକାରଖାନା ତିଆରି ହେଇଯିବ ତେବେ ଇସ୍ରାଏଲୀ ପ୍ରଣାଳୀରେ ଚାଷ କେଉଁଠି ହେବ ?

ମୁଖ୍ୟମନ୍ତ୍ରୀ କହିଲେ ସେଥିପାଇଁ ଆମେ ଏକ ନୂଆ ଯୋଜନା କଥା ଚିନ୍ତା କରୁଚୁଁ । ଥ୍ରୀ ଟାୟାର ରେଳବଗି ପରି ଆମେ ଥ୍ରୀ ଟାୟାର ଚାଷ ଜମି ତିଆରି କରିବୁଁ । ତେରଟା କାରଖାନା ତିଆରି ହେଲେ ଆମ ରାଜ୍ୟରେ ଇସ୍ପାତର ମୁଣ୍ଡ ପିଛା ଖର୍ଚ୍ଚ 'ପୃଥିବୀର ଯେ କୌଣସି ଉନ୍ନତ ଦେଶ ଅପେକ୍ଷା ମଧ୍ୟ ବଢ଼ିଯିବ । ଏଣୁ ଥ୍ରୀ ଟାୟାର ଚାଷ ଜମି ଆବଶ୍ୟକ । ଆମର ଏ ଯୋଜନା ଅନ୍ୟାନ୍ୟ ଦେଶ କିମ୍ବା ପ୍ରଦେଶକୁ ପ୍ରଲୋଭିତ କରିବାର ସମ୍ଭାବନା ଥିବାରୁ ଏବେ ମୁଁ ଏସବୁ କଥାକୁ ଗୋପନୀୟ ରଖିଚି । ଆପଣ ମଧ୍ୟ ଏ କଥାକୁ ପ୍ରକାଶ କରନ୍ତୁନି ।

ମୋର ବନ୍ଧୁ ପଚାରିଲେ ଏତେ ପରିମାଣରେ କାରଖାନା ତିଆରି ହେଲେ ଏବଂ ଥ୍ରୀ ଟାୟାର ଚାଷ ଜମି ତିଆରି ହେଲେ ରାଜ୍ୟର ଆଉ ଅଧିକ ରେଳ ରାସ୍ତା କିମ୍ବା ସଡ଼କ ପଥ ମଧ୍ୟ ତିଆରି ହେଇ ପାରିବନି । ସେପରି ଅବସ୍ଥା ହେଲେ ଗୋପାଳପୁର ଛାଡ଼ି ଅନ୍ୟ ଇସ୍ପାତ କାରଖାନାକୁ ଲୁହାପଥର ଓ କୋଇଲା ଯୋଗାଣ କେମିତି ହେବ ?

ମୁଖ୍ୟମନ୍ତ୍ରୀ ହସିଦେଲେ । କହିଲେ ପୃଥିବୀ ଯେବେବେଳେ ଏକବିଂଶ ଶତାବ୍ଦୀ ଆଡ଼କୁ ମୁହାଁଇଲାଣି ସେତେବେଳେ ଏସବୁ ଅତି ତୁଚ୍ଛ କଥା । ତୁମ ପରି ଜଣେ ସାମ୍ବାଦିକ ମୁହଁରୁ ଏକଥା ଶୁଣିବି ବୋଲି ଆଶା କରିନଥିଲି । ଶୁଣ ତେବେ । ସେ ଟିକିଏ ସୋଫାରେ ସଜାଡ଼ି ହେଇ ବସିଲେ ଏବଂ କହିଲେ ଏଥିପାଇଁ ଆମ ସରକାର ଏବେ ପାଞ୍ଚ ହଜାର କୋଟି ଟଙ୍କାର ଗୋଟିଏ ନୂଆ ଯୋଜନାକୁ ପରୀକ୍ଷା କରି ଦେଖୁଚନ୍ତି । ସେ ଯୋଜନା ଅନୁସାରେ ୧୦୦୦ ହେଲିକପ୍ଟର ଧାନବାଦ୍‌ରୁ କୋଇଲା ଓ ସୁକିନ୍ଦାରୁ ଲୁହାପଥର ବୋହିବା କାମରେ ନିୟୋଜିତ ହେବ । ଏହା ଏକ ବିଶେଷ ଧରଣର ହେଲିକପ୍ଟର । ଏଥିପାଇଁ ଆମକୁ ବିଦେଶରୁ ସମସ୍ତ ଅର୍ଥ ଓ କାରିଗରି ଜ୍ଞାନ କୌଶଳ ମିଳିବାର ପ୍ରତିଶ୍ରୁତି ମିଳି ସାରିଲାଣି ।

ଏତେ ହେଲିକପ୍ଟର କୋଉ ଦେଶ ଦେବ ? ମୁଁ ପଚାରିଲି । ସେ କହିଲେ ହେଲିକପ୍ଟର କେହି ଦେବ ନାହିଁ । ସେମାନେ ଆସି ଏଠି ହେଲିକପ୍ଟର ତିଆରି କରିବେ । ଆଉ ଗୋଟିଏ କାରଖାନା ବସିବ । ସବୁ ସେମାନେ କରିବେ । ଆମକୁ କିଛି କରିବାକୁ ହେବ ନାହିଁ ।

ମୋର ବନ୍ଧୁ ପଚାରିଲେ, ସବୁ କଥା ଯଦି ଅନ୍ୟମାନେ କରିବେ ତେବେ ଆପଣ ଯେ ୪୦ ହଜାର କୋଟି ଟଙ୍କା ସଂଗ୍ରହ କରିଛନ୍ତି କହୁଥିଲେ ସେ ଟଙ୍କା କଅଣ ହେବ ? ମୁଖ୍ୟମନ୍ତ୍ରୀ ଚମକି ପଡ଼ି କହିଲେ ସେ କଥା ଆଉ ଦିନେ କହିବି । ସେ ଉଠିଲେ ।

(ଧରିତ୍ରୀ - ୩୧.୩.୧୯୯୬)

***

# ଭାରତବର୍ଷ

ଗୋଟିଏ ଗାଁ ଥିଲା । ସହରଠାରୁ ଅନେକ ଦୂରରେ । ସେଇ ଗାଁରେ ଲୋକଟିଏ ବାସ କରୁଥିଲା । ଲୋକଟି ଗରିବ ନ ଥିଲେ ମଧ୍ୟ ଧନୀ ନଥିଲା । ଯେତକ ଚାଷ ଜମି ଥିଲା ସେଥିରୁ କୌଣସି ପ୍ରକାରେ ସେମାନଙ୍କ ଗୁଜରାଣ ମେଣ୍ଟି ଯାଉଥିଲା । ସେମାନେ ମାନେ ସେ, ତାର ସ୍ତ୍ରୀ ଓ ପୁଅଟିଏ । ତା ନାଁ ଗୋପାଳ । ସେମାନଙ୍କର ବାହାଘରର ଅନେକ ଦିନ ପରେ ପୁଅଟିଏ ହେଇଥିବାରୁ ପୁଅଟି ଟିକିଏ ଗେଲ ବସରର ହୋଇଥାଏ । ପିଲାଟିକୁ ମାନେ ଗୋପାଳକୁ ସାଇ ପଡ଼ିଶାରେ ମଧ୍ୟ ସମସ୍ତେ ଭଲ ପାଉଥିଲେ । ମୋଟ ଉପରେ ଗୋପାଳର କେତେବେଳେ ହେଲେ କିଛି ଅସୁବିଧା ହେଉ ନଥାଏ । ତେଣୁ ତାର ଦୁଷ୍ଟାମି ମଧ୍ୟ ଟିକିଏ ବଢ଼ି ଯାଇଥାଏ ।

ଗୋପାଳ କ୍ରମେ ବଡ଼ ହେବାକୁ ଲାଗିଲା । ସେ ସମସ୍ତଙ୍କର ସ୍ନେହର ପାତ୍ର ହୋଇଥିବାରୁ ବୟସ ସହିତ ତାର ସ୍ୱେଚ୍ଛାଚାର ମଧ୍ୟ ବଢ଼ିବାକୁ ଲାଗିଲା । ତଥାପି ପଡ଼ୋଶୀମାନେ ତାକୁ ସହି ଯାଉ ଥାଆନ୍ତି । ପିଲା ଲୋକତ ବଡ଼ ହେଲେ ବଳେ ସୁଧୁରି ଯିବନି ।

ଆସ୍ତେ ଆସ୍ତେ ପିଲାର ଦୁଷ୍ଟାମି ଭିନ୍ନ ମୋଡ଼ ନେବାକୁ ଆରମ୍ଭ କଲା । ସେତେବେଳକୁ ସେ ଚଉଦ ପନ୍ଦର ବର୍ଷର ହେଲାଣି । ପଢ଼ାପଢ଼ି ସେ ମୋଟେ ଭଲ କରୁ ନଥାଏ । ତଥାପି ସ୍କୁଲକୁ ଯାଉଥାଏ । ତାର କେତେ ଜଣ ବିଶେଷ ବନ୍ଧୁ ଥିଲେ । ସେ ସେଇମାନଙ୍କ ସହ ବେଶୀ ମିଶାମିଶି କରୁଥାଏ ।

ଦିନକର କଥା ଗାଁ ରେ ଗୋଟିଏ ମେଳା ହେଉଥାଏ । ମେଳାରେ ଅନେକ ଲୋକ ଥାଆନ୍ତି । ସେଠି ହଠାତ୍ ଗୋପାଳର ମାମୁଁର ମନିପର୍ସଟା ଚୋରି ହୋଇଗଲା । ସେଥିରେ ବେଶି ନୁହେଁ ମାତ୍ର ଶହେଟି ଟଙ୍କା ଥିଲା । ସେ ଭାରି ବ୍ୟସ୍ତ ହେଲେ । ଟଙ୍କା ପାଇଁ ନୁହେଁ । ଟଙ୍କା ସହିତ ଡାକ୍ତରଙ୍କ ପ୍ରେସ୍କ୍ରିପ୍ସନ୍‌ଟା

ମଧ୍ୟ ଚାଲି ଯାଇଥିଲା । ସେ ମେଳାରେ ମାଇକରେ ଘୋଷଣା କଲେ ଯେ ଯିଏ ତାଙ୍କ ପର୍ସଟା ଖୋଜି ଦେଇ ପାରିବ ତାଙ୍କୁ ସେ ଉପଯୁକ୍ତ ପୁରସ୍କାର ଦେବେ ।

ପ୍ରାୟ ଘଣ୍ଟାକ ପରେ ଗୋପାଳ ଓ ତାର ଦୁଇଜଣ ସାଙ୍ଗ ମନିପର୍ସଟା ଧରି ତାଙ୍କ ପାଖରେ ଆସି ପହଞ୍ଚିଲେ । ଗୋପାଳ ପର୍ସଟା ମାମୁଁଙ୍କର ହାତକୁ ବଢ଼ାଇ ଦେଲା । ମାମୁଁ ଖୁସି ହେଇ ଗୋପାଳକୁ ଦଶଟି ଟଙ୍କା ଦେଲେ ଏବଂ କହିଲେ ଯାଅ ସମସ୍ତେ ମିଶି ମିଠା ଖାଇବ ।

ସେମାନେ ଖୁସି ମନରେ ଚାଲିଗଲେ । ସମସ୍ତେ ଗୋପାଳକୁ ପ୍ରଶଂସା କଲେ ।

ବେଶ୍ କିଛି ଦିନ ପରେ ପାଖ ଗାଁରେ ଗୋଟିଏ ମେଲଣ ହେଉଥାଏ । ସେଠି ଗୋପାଳର ଜଣେ ପଡ଼ୋଶୀର ହଠାତ୍ ହଜାରେ ଟଙ୍କା ପକେଟ୍ ମାର ହୋଇଗଲା । ସେ ମୁଣ୍ଡରେ ହାତ ଦେଇ ବସିଲେ । ପର ଦିନ ତାଙ୍କର ଝିଅ ବାହାଘର ପାଇଁ କେତେଟା ଜିନିଷ କିଣିବାର ଥିଲା । ତାଙ୍କର ଆର୍ଥିକ ଅବସ୍ଥା ସେତେ ଭଲ ନଥିଲା । ତେଣୁ ସେ କାନ୍ଦ କାନ୍ଦ ହୋଇ ପାଗଳ ପ୍ରାୟ ବୁଲୁଥିବାର ଦେଖି ଗୋପାଳ ତାଙ୍କୁ କହିଲା ତମେ ମୋଟେ ବ୍ୟସ୍ତ ହୁଅନା । ମୋ ସାଙ୍ଗମାନଙ୍କୁ କହିଚି । ସେମାନେ ଚେଷ୍ଟା କରୁଛନ୍ତି । କିନ୍ତୁ ଗୋଟିଏ ସର୍ତ୍ତରେ । ସେ ତାଙ୍କ କାନ ପାଖରେ କିଛି କହିଲା । ଲୋକଟି କହିଲା ମୁଁ ଏଥିରେ ରାଜି ।

ସଞ୍ଜ ବେଳକୁ ଗୋପାଳ ଆଣି ଟଙ୍କା ଦେଲା ଏବଂ କହିଲା ମଉସା ଅନେକ କଷ୍ଟରେ ମୋର ସାଙ୍ଗମାନେ ଚୋରକୁ ଠାବ କରି ପାରିଛନ୍ତି । ତେବେ ତମର ଟଙ୍କା ତ ମିଳିଗଲା । ତମେ ସେମାନଙ୍କୁ ଟିକିଏ ଖୁସି କରେଇ ଦିଅ ।

ସେ ଖୁସି ହେଇ ଶହେ ଟଙ୍କା ଗୋପାଳକୁ ଦେଲେ ଏବଂ କହିଲେ ଯାଅ ତମେମାନେ ଭୋଜି କରି ଖାଇବ ।

ତାର ଅନେକ ଦିନ ପରେ । ଗୋପଳର ଗାଁ ପାଖରେ ଥିବା ଗୋଟିଏ ଆଦିବାସୀ ଗାଁରେ ଗୋଟିଏ ସଭା ହେଉଥାଏ । ସେ ସଭାରେ ମନ୍ତ୍ରୀ ଆସି ଲୋକମାନଙ୍କୁ ଛେଳି, ମେଣ୍ଢା ଓ ଘୁଷୁରୀ ଇତ୍ୟାଦି କିଣି ନିଜର ଜୀବିକା ନିର୍ବାହ କରିବା ପାଇଁ ସରକାରୀ ଟଙ୍କା ଋଣ ଦେଉଥାଆନ୍ତି । ପ୍ରତ୍ୟେକ

ପରିବାରକୁ ଗୋଟିଏ ଛେଳି, ଗୋଟିଏ ମେଣ୍ଢା ଓ ଗୋଟିଏ ଘୁଷୁରୀ କିଣିବାକୁ ମୋଟ ହଜାରେ ଲେଖାଏଁ ଟଙ୍କା ଦିଆଯିବ ।

ବିରାଟ ସଭା । ଲୋକ ଗହଳି । ମନ୍ତ୍ରୀ, ଜିଲ୍ଲା ମାଜିଷ୍ଟ୍ରେଟ୍, ପୁଲିସ୍, ତହସିଲଦାର, ସରପଞ୍ଚ, ପଞ୍ଚାୟତ ଚେୟାରମ୍ୟାନ ସମସ୍ତେ ସଭାରେ ପହଞ୍ଚି ଗଲେଣି । ଆଖପାଖ ତିନି ଚାରିଖଣ୍ଡ ଗାଁର ଲୋକେ ମଧ୍ୟ ଦେଖିବା ପାଇଁ ଆସି ରୁଣ୍ଡ ହେଲେଣି । ଗୋଟିଏ ପାଖରେ ଟି.ଭି. ରେଡିଓ ଓ ଖବର କାଗଜ ବାଲାଏ ମଧ୍ୟ ଆସି ବସି ଥାଆନ୍ତି ।

ମନ୍ତ୍ରୀ ଟଙ୍କା ବାଣ୍ଟିବା ଆରମ୍ଭ କଲେ । ଜୟ ଜୟକାରରେ ସଭାସ୍ଥଳ କମ୍ପି ଉଠିଲା । ଟଙ୍କା ସବୁ ଗୋଟିଏ ଲଫାପାରେ ରଖି ତା ଉପରେ ନାଁ ଲେଖି ରେଡି ଥାଏ । ଲଫାପାଟା ସରପଞ୍ଚଙ୍କ ହାତରୁ ଚେୟାରମ୍ୟାନ ଏବଂ ତାଙ୍କ ହାତରୁ ମନ୍ତ୍ରୀଙ୍କ ହାତ ଦେଇ ହିତାଧିକାରୀଙ୍କ ହାତକୁ ଯାଏ ଏବଂ ସେତିକି ବେଳେ ଘନ ଘନ କରତାଳି ମଧ୍ୟରେ ଫଟୋ ଉଠେ ।

ଟଙ୍କା ବଣ୍ଟା ସରିଲା । ମନ୍ତ୍ରୀଙ୍କ ଜୟଧ୍ୱନୀ ଅନବରତ ଚାଲିଥାଏ । ମନ୍ତ୍ରୀ ସାଙ୍ଗମାନଙ୍କ ଗହଣରେ ଉଠିବେ ଉଠିବେ ହଉଚନ୍ତି । ବୁଢ଼ାଟିଏ ନଇଁ ନଇଁ ସଭା ଭିତରୁ ମନ୍ତ୍ରୀଙ୍କ ଆଡ଼କୁ ଆସିଲା । ମନ୍ତ୍ରୀଙ୍କ ପାଖରେ ବସିଥିବା ସରପଞ୍ଚଙ୍କ କାନ ପାଖକୁ ମୁହଁ ଆଣି କହିଲା ତମମାନଙ୍କର ପରା ଦଶ ଭାଗରୁ ଭାଗେ ନବାର କଥା । ଏଥିରେ ତ ଅଧେ ନାହିଁ ।

ସରପଞ୍ଚ ମନ୍ତ୍ରୀଙ୍କ କାନ ପାଖରେ କିଛି କହିଲେ । ମନ୍ତ୍ରୀ ଶୁଣିଲେ ଏବଂ ଅଳ୍ପ ହସି ଉଠୁ ଉଠୁ ବୁଢ଼ାର କାନ ପାଖରେ କହିଲେ, କୋଉ ଯୁଗର କଥା କହୁଚ ମଉସା । ଏବେ ବଜାର ଦର କେତେ ହେଲା ଦେଖୁଚଟି ?

ସେତେବେଳେ ଜୟଧ୍ୱନୀ ଏତେ ଜୋରରେ ହେଉଥାଏ ଯେ ବୁଢ଼ା ମନ୍ତ୍ରୀଙ୍କ କଥା ଶୁଣି ପାରିଲା କି ନା କେଜାଣି !

(ସମ୍ବାଦ - ୬.୩.୧୯୯୪)

***

# ଶୀର୍ଷାସନ

ସେଥର ମୁଖ୍ୟମନ୍ତ୍ରୀ ଯେତେବେଳେ ଦେଖିଲେ ଗୋଟିଏ ଆସନ ପାଇଁ ତିନୋଟି ଅତି ଶକ୍ତିଶାଳୀ ଶକ୍ତି ଆସି ତାଙ୍କ ଆଗରେ ଠିଆ ହୋଇ ଯୁଦ୍ଧଂ-ଦେହୀ ଡାକରା ଦେଇ ତାଙ୍କ ଆଡ଼କୁ ଅନେଇଚନ୍ତି ସେତେବେଳେ ସେ ବଡ଼ ଅଡୁଆରେ ପଡ଼ିଗଲେ । ତାଙ୍କର ଚାଳିଶି ବର୍ଷର ରାଜନୈତିକ ଜୀବନ ଭିତରେ ସେ ଏମିତି ଚାଲେଞ୍ଜର ସମ୍ମୁଖୀନ କେବେ ହୋଇନଥିଲେ । ସବୁବେଳେ ସେ ରାଜନୀତିଟାକୁ ଗୋଟାଏ ହାତର ଖେଳ ବୋଲି ମନେ କରି ଆସିଚନ୍ତି । ଡାହାଣ ହାତରେ ବଲ୍‌ଟାକୁ ଆଣି ବାଁ ହାତରେ ଫୋପାଡ଼ି ଦେଇ ଆଖି ପିଛୁଳାକେ ସେ ଦର୍ଶକ ମଣ୍ଡଳୀକୁ ଯାଦୁ ଦେଖେଇ ଚମତ୍କୃତ କରି ଦେଇ ପାରୁଥିଲେ । ସେଇଥିପାଇଁ ତ ସେ ହିଁ ଏକମାତ୍ର ମୁଖ୍ୟମନ୍ତ୍ରୀ ଯାହାଙ୍କ ପଛରେ ସିଂହାସନା ଯୋଡ଼ି ହେଇ ଯାଇଚି ଗତ ପନ୍ଦର ବର୍ଷ ଧରି । ସେ କେବେ ପଛକୁ ଅନେଇ ନାହାନ୍ତି । ତାଙ୍କ ଗତି ସବୁବେଳେ ଆଗକୁ ଓ ଆଗକୁ ।

ପନ୍ଦର ବର୍ଷ ଧରି ମୁଖ୍ୟମନ୍ତ୍ରୀତ୍ୱର ସଫଳ ସିଂହାସନରେ ବିଜୟ ପତାକା ଉଡ଼ାଉଥିବା ଶ୍ରୀରାମ ଗୁଲାମଙ୍କ ଅଙ୍ଗୁଳି ନିର୍ଦ୍ଦେଶନାରେ ଶାସନ ହୁଏ । ଆଖିର ଇସାରାରେ ପାର୍ଟି ଚାଲେ । ସେଥିପାଇଁ ତାଙ୍କୁ ମୁହଁ ଖୋଲିବାକୁ ପଡ଼େନା ଓଠର ଚାଳନାରେ ଯେଉଁ ଖଣ୍ଡ ଅଖଣ୍ଡ ଶବ୍ଦ ଉଚ୍ଚାରିତ ହୁଏ ତାହାହିଁ ହୁଏ ଆଇନ୍ । ସମଗ୍ର ରାଜ୍ୟ ସେଇଥିରେ ଆତଯାତ ହୁଏ । ତାହାକୁ ଅପେକ୍ଷା ରଖେନା ।

ପାର୍ଟି ମିଟିଂରେ ତେଣୁ ସେଥର ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହେଲା ଯେ ପ୍ରାର୍ଥୀ ନିର୍ବାଚନ ସଂକ୍ରାନ୍ତରେ ମୁଖ୍ୟମନ୍ତ୍ରୀ ଯେଉଁ ସିଦ୍ଧାନ୍ତ ନେବେ ତାକୁ ସମସ୍ତେ ବିନା ବାକ୍ୟବ୍ୟୟରେ ମାନି ନେବେ ।

ରାମ ଗୁଲାମ ଭାବିଲେ ଏଇଟା କୋଉ ବଡ଼ କଥା ? ତା ଆଉ ହୁଅନ୍ତାନି କି ? ଏଇ କଥା ତ ସେ ଆଜିକୁ ପ୍ରାୟ ଦୁଇ ଦଶନ୍ଧି ହେଲା କରି ଆସୁଚନ୍ତି । ସେତକ କରି ସେ ପାର୍ଟିର ସମସ୍ତଙ୍କୁ ଧଳାଫୁଲ ଓ କଳାଫୁଲ ଶୁଙ୍ଘେଇ ମୃତକୁ ଜୀବିତ ଓ ଜୀବିତକୁ ମୃତ କରିପାରୁଥିବାରୁ ଅଖଣ୍ଡ ଅଧିକାର କେବଳ ତାଙ୍କର ଅଛି ବୋଲି ସେ ସମସ୍ତଙ୍କୁ ବଳୀ ପରି ପାତାଳକୁ ଚାପି ଦେଇ ପାରୁଚନ୍ତି । ତାଙ୍କ ନିର୍ଦ୍ଦେଶ ବିନା କଅଣ ଚନ୍ଦ୍ର ସୂର୍ଯ୍ୟ ସେ ଆକାଶରେ ଗତାଗତ କରୁଥାଆନ୍ତେ ?

ସବୁ କଥା ତାଙ୍କ ନିର୍ଦ୍ଦେଶରେ ହେବାକୁ ବାଧ ଏବଂ ହେବା ଉଚିତ୍ ମଧ । ଏହାହିଁ ଗଣତନ୍ତ୍ରର ନୀତି । ମୁଁ ସମସ୍ତଙ୍କ ଉପରେ । ମୋ ଉପରେ ଆଉ କିଏ ?

ସେ ପୁଣି ଥରେ ଫାଇଲ ଖୋଲିଲେ । ପ୍ରଥମ ନାଁଟା ତାଙ୍କ ସାମନାରେ ଉଦ୍ଭାସିତ ହେଇ ଉଠିବା ମାତ୍ରେ ଶୀତତାପ ନିୟନ୍ତ୍ରଣ ଯନ୍ତ୍ରର ସମସ୍ତ କ୍ଷମତାକୁ ପରାଜିତ କରି ତାଙ୍କ ଦେହରୁ ଗମ୍ ଗମ୍ ଝାଳ ବୋହିବାକୁ ଲାଗିଲା । ତାଲିକାର ପ୍ରଥମ ପ୍ରାର୍ଥୀ ପାର୍ଟି ଭିତରେ ଥିବା ତାଙ୍କର ଏକମାତ୍ର ପ୍ରତିଦ୍ୱନ୍ଦୀ ଓ ପ୍ରାୟ ସମାନ ପରାକ୍ରମୀ ଉପମୁଖ୍ୟଙ୍କ ପୁତ୍ର । ବେଶ କିଛି ଲୋକ ତାଙ୍କ ସପକ୍ଷରେ ଅବଶ୍ୟ ଅଛନ୍ତି । ଗତ ବିଧାନସଭା ନିର୍ବାଚନ ବେଳେ, ମୁଖ୍ୟମନ୍ତ୍ରୀଙ୍କ କୂଟ କୌଶଳ ଯୋଗୁଁ ତାଙ୍କର ଶୋଚନୀୟ ପରାଜୟ ପରେ ତାଙ୍କୁ ପ୍ରତିଶ୍ରୁତି ଦିଆଯାଇଥିଲା ଯେ ଆଉ ଛଅ ମାସ ପରେ ରାଜ୍ୟସଭାରେ ଖାଲି ପଡୁଥିବା ଆସନଟି ତାଙ୍କୁ ହିଁ ଦିଆଯିବ । ସେତେବେଳେ ପାର୍ଟିର ଏକତା ଆଣିବା ପାଇଁ ଅନ୍ୟ କୌଣସି ପନ୍ଥା ନଥିଲା ।

ରାମଗୁଲାମ କହନ୍ତି ଏକବିଂଶ ଶତାବ୍ଦୀରେ ରାଜନୀତି ଶବ୍ଦର ଅର୍ଥ ବଦଳି ଯାଇଥିବ । ଏକଥା ବି ସତ । ଗୋଟିଏ ଶବ୍ଦର ଅର୍ଥର ଆୟୁଷ ପ୍ରାୟ ଶହେ ବର୍ଷ । ତା ପରେ ସମୟ, ସମାଜ ଏବଂ ସେମାନଙ୍କ ଗତିବିଧିରେ ତାର ସଂଘର୍ଷରେ ନୂଆ ଅର୍ଥଟିଏ ଜନ୍ମ ହେବାକୁ ବାଧ । ତା ନ ହେଲେ ତାହା ଅନେକ ଦିନ ଯାଏ ବନ୍ଦ ଥିବା ମାଠିଆର ପାଣି ପରି ଦୂଷିତ ହେଇଯାଏ ।

ତାଙ୍କ ଯୁକ୍ତି ବଡ଼ ବିଚିତ୍ର ହେଲେ ମଧ ଅକାଟ୍ୟ । ତାକୁ ଏପାଖ ସେପାଖ କରି ହୁଏନା । ଯେ ଯଦି ସେତେବେଳେ କୂଟ କୌଶଳ ପ୍ରୟୋଗ କରି ତାଙ୍କ

ପ୍ରତିଦ୍ୱନ୍ଦୀଙ୍କ ପକ୍ଷ ଛେଦନ କରି ନ ଥାଆନ୍ତେ ତାହେଲେ ରାମଗୁଲାମ ଏଯାଏଁ ମୁଖ୍ୟମନ୍ତ୍ରୀ ହେଇ ନ ଥାଆନ୍ତେ କି ତାଙ୍କ ପାଖରେ ହାତ ପାତି ତାଙ୍କର ପ୍ରଥମ ପ୍ରତିଦ୍ୱନ୍ଦୀ ଓ ପରାକ୍ରମୀ ରାମକିଙ୍କର ଛିଡ଼ା ହେଇ କହୁ ନଥାଆନ୍ତେ ମୋ ପୁଅ ପାଇଁ ତୁମେ ସେତେବେଳେ ପ୍ରତିଶ୍ରୁତି ଦେଇଥିଲ, ଏବେ ତାକୁ ପାଳନ କର ।

ବଡ଼ ଚତୁର ଏ ରାମକିଙ୍କର । ଝିଅ ଓ ଜୋଇଁକୁ ରାଜନୀତିରେ ପ୍ରତିଷ୍ଠିତ କରାଇବା ପରେ ଏବେ ଦୁଇବର୍ଷ ହେଲା ଲାଗିଚନ୍ତି ପୁଅ ପାଇଁ । ଝିଅ ଗୋଟିଏ ଦଳର ନେତୃତ୍ୱ ନେଉଥିଲାବେଳେ ଜୋଇଁ ଆଉ ଗୋଟିଏ ଦଳର ନେତା । ଏବେ ପୁଅ ଆସିଗଲା ପରେ ରାଜ୍ୟର ସମଗ୍ର ରାଜନୀତି ତାଙ୍କ ପକେଟ୍‌କୁ ଆସିଯିବ । ସମୟ ଓ ସୁବିଧା ଦେଖି ସମସ୍ତେ ଯଦି ଏକ୍ ହେଇଯାଆନ୍ତି ସେତେବେଳେ ରାମଗୁଲାମଙ୍କ ଅସ୍ତିତ୍ୱ ରହିବଟି ?

ସେ ପୃଷ୍ଠ ଓଲଟାଇଲେ ।

ଶିଳ୍ପପତି ଶ୍ୟାମଲାଲଙ୍କ ପତ୍ନୀ । ଶ୍ୟାମଲାଲ୍ ଆମର ଜଣେ ପରମ ବନ୍ଧୁ । ମନ୍ତ୍ରୀମଣ୍ଡଳ ଗଠନ ବେଳେ କିମ୍ବା ମନ୍ତ୍ରୀମଣ୍ଡଳକୁ ବିପଦ ଦେଖାଦେଲେ ବେଳେବେଳେ ହାଟ ସଉଦା କରିବାକୁ ପଡ଼େ । ସେତେବେଳେ ଶ୍ୟାମଲାଲ୍ ଖୋଲା ହାତରେ ଆଗେଇ ଆସନ୍ତି । । ସେ ହିଁ ଏକମାତ୍ର ବ୍ୟକ୍ତି ଯାହାର କି ରାଜନୀତିରେ ନା ଆଗ୍ରହ ଥାଏ ନା ଲୋଭ ଥାଏ ପଦ ପଦବୀରେ । ସେ କହନ୍ତି ଜଣେ ବ୍ୟବସାୟୀ ଯଦି ରାଜନୀତିରେ ଭାଗ ନିଏ ତେବେ ସେ କୁଆଡ଼କୁ ହୁଏନା । ଜଣେ ସଚ୍ଚା ବ୍ୟବସାୟୀ ରାଜନୀତିକୁ କେବଳ ଖଣ୍ଡେ ରୁଟି ଫୋପାଡ଼ି ଦେଉଥିବା ଏବଂ ଚୁ ଚୁ କରି ଡାକି ଆଣୁଥିବ । ସେତକରେ କାମ ଶେଷ । ଆଉ ଅଧିକ କ'ଣ ଦରକାର ?

କିନ୍ତୁ ତାଙ୍କ ସ୍ତ୍ରୀ ସେକଥା କୁହନ୍ତିନି । ତାଙ୍କ ଇଚ୍ଛା ରାଜନୀତି, ବ୍ୟବସାୟ ଓ ସମାଜ ସେବା । ଏମାନେ ଗୋଟିଏ ଧାଡ଼ିରେ ଚାଲନ୍ତୁ । ଟିଭି କ୍ୟାମେରା ଏବଂ ଫୁଲମାଳ ଯେମିତି ସମାଜ ସେବାର ଗୋଟିଏ ଗୋଟିଏ ପ୍ରଧାନ ଅଙ୍ଗ ସେମିତି ବ୍ୟବସାୟ ଓ ରାଜନୀତି ମଧ ମାଜସେବାର ଗୋଟିଏ ପ୍ରଧାନ ଅଙ୍ଗ । ଏମାନଙ୍କୁ ଅଲଗା ଭାବରେ ଚିନ୍ତା କରାଯାଇ ପାରେନା ।

ଶ୍ୟାମଲାଲ୍‌ଙ୍କ ସ୍ତ୍ରୀ ଉର୍ବଶୀ । ଦେଖିଲା ଭଳିଆ ସ୍ତ୍ରୀଟିଏ । ଥରେ ଆଖି ପଡ଼ିଗଲେ ସହଜରେ ହଟେଇ ହୁଏନି । ଅନେକ କସ୍‌ରତ୍ କରି ମଧ୍ୟ ଶେଷରେ ହାରିବାକୁ ହୁଏ । ଏଇ ଗୋଟିଏ ଜାଗା ଯେଉଁଠି ହାରି ଗଲେବି ଦୁଃଖ ହୁଏନି । ଏକଥା କହିଲାବେଳେ କବିମାନେ ଆଉ ଟିକେ ତଳକୁ ଖସି ଯାଆନ୍ତି । ସେମାନେ କହନ୍ତି ସେ ଯୁଦ୍ଧରେ ଶୋଚନୀୟ ପରାଜୟ ପରେ ମୃତ୍ୟୁ ହେଲେ ମଧ୍ୟ ତାକୁ ଉପଭୋଗ କରି ହୁଏ । ଆଉ କେହି କହନ୍ତି କେବଳ ଏଇ ଗୋଟିଏ ଜାଗାରେ ମୃତ୍ୟୁଟା ଯନ୍ତ୍ରଣାଦାୟକ ନୁହେଁ ବରଂ ଆନନ୍ଦଦାୟକ ।

ଉର୍ବଶୀଙ୍କୁ ବୟସ କେବେ ଜୟ କରି ପାରିନି । ବରଂ ବୟସ ତାଙ୍କଠାରେ ହାରି ଯାଇଛି । ତେଣୁ ତାଙ୍କୁ ଯେଉଁମାନେ ଅନେକ ଦିନୁ ଜାଣିଛନ୍ତି ସେଇମାନେ ହିଁ କେବଳ କହିପାରନ୍ତି ଯେ ସେ ଏବେ ଗୋଳମାଳିଆ ବୟସରେ ପଦାର୍ପଣ କରିଛନ୍ତି । 'ଗୋଳମାଳିଆ' ଶବ୍ଦଟାକୁ ଯେତେବେଳେ ବୟସ ସହିତ ଯୋଡ଼ି ଦିଆଯାଏ ସେତେବେଳେ ସମସ୍ତଙ୍କର ଗୋଳମାଳ୍ ହେଇଯାଏ । ଏ କଥାଟାକୁ ଇଂରାଜୀ ସାହିତ୍ୟରେ ମଧ୍ୟ ସମର୍ଥନ କରାଯାଇଛି ।

ଏମିତି ଏକ ବୟସର ଚାଞ୍ଚଲ୍ୟ ମୁଖ୍ୟମନ୍ତ୍ରୀଙ୍କର ଚିତ୍ତରେ ମଧ୍ୟ ସୃଷ୍ଟି ହେଇଥିବ । କାରଣ ସେ ନିଜେ ମଧ୍ୟ ଏଇ କେତେଦିନ ହେଲା କାହିଁକି କେଜାଣି ଅନୁଭବ କରୁଚନ୍ତି ଯେ ଉର୍ବଶୀ କୌଣସି ସଭାର ଆଗ ଧାଡ଼ିରେ ନ ଥିଲେ ମଧ୍ୟ ଅନ୍ତତଃ ଆଖି ପାଖରେ କିମ୍ବା ଆଖି ପାଆନ୍ତାରେ କୋଉଠି ଥିବା ଉଚିତ୍ । ମଝିରେ ମଝିରେ ତାଙ୍କ ଆଖିରେ ଆଖି ହାତ ମାରି ଚାଲି ଯାଉଥିବ । ଆଉ ସେ ଧରାପଡ଼ି ଖସି ଯାଉଥିବେ କିମ୍ବା ହସି ଦେଇ ହସି ନ ଥିବାର ବାହାନା କରୁଥିବେ ।

ରାମଗୁଲାମ କହନ୍ତି ରାଜନୀତିରେ ନାରୀମାନଙ୍କର ଗୋଟିଏ ବିରାଟ ଭୂମିକା ରହିଛି । ବର୍ତ୍ତମାନର ପରିପ୍ରେକ୍ଷୀରେ ତାକୁ ଅଲଗା କରି ଦେଖି ହେବ ନାହିଁ । ସେ ଅନେକଥର ଦେଖିଛନ୍ତି ଯେ ରାଜନୀତିରେ ସେ ଯେଉଁ କାମ କରେଇ ପାରନ୍ତିନି ସେଠାକୁ ଉର୍ବଶୀଙ୍କୁ ପଠେଇ ନିଶ୍ଚିନ୍ତ ହେଇ ଯାଆନ୍ତି । କିନ୍ତୁ ସେ ଚିନ୍ତା କଲେ ଏଇ ପ୍ରକାର ଜରୁରୀ କାମରେ ଲାଗୁଥିବା ଶ୍ୟାମଲାଲ୍‌ଙ୍କ ସ୍ତ୍ରୀଙ୍କୁ ରାଜ୍ୟସଭାକୁ ପଠେଇ ନିଜେ କଅଣ ପାଇବେ ? ସଙ୍କଟଜନକ ପରିସ୍ଥିତିରେ ସେ କାହାକୁ ପଠେଇ କାମ ସମ୍ଭାଳିବେ ? ବରଂ ତାଙ୍କୁ ରାଜ୍ୟ

ଭିତରେ କିଛି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦିଆଯାଇପାରେ । ତାଙ୍କୁ ବାହାରକୁ ପଠେଇ ମୁଖ୍ୟମନ୍ତ୍ରୀଙ୍କ ଲବିର ନାଭିକେନ୍ଦ୍ରଟିକୁ ଡିଷ୍ଟର୍ବ କରିବା ବିଚକ୍ଷଣ ରାଜନୀତିର କାମ ନୁହେଁ ।

ତାଙ୍କର ମନେ ହେଲା ଉର୍ବଶୀ ଯେମିତି ତାଙ୍କ ସାମନାରେ ଠିଆ ହୋଇଚନ୍ତି । ତାଙ୍କର ନିଟୋଳ ତଥା ହସ ହସ ମୁହଁରୁ ଯେମିତି ସକାଳର ସଜଫୁଟା ଆଞ୍ଜୁଳାଏ ମଲ୍ଲୀଫୁଲ ଅଜାଡ଼ି ହେଇ ପଡ଼ୁଛି । ମୁଖ୍ୟମନ୍ତ୍ରୀ ଟିକେ ହସି ଦେଲେ ଏବଂ କହିଲେ, ଗୁଡ, ଦେଖିବା । ମୁଁ ତ ଅଛି । ବ୍ୟସ୍ତ କାହିଁକି ?

ପର ପୃଷ୍ଠା । ଇସ୍ କି ବିଭତ୍ସ । ବିକଟାଳ ଆଖି । ଭୟଙ୍କର ମୁହଁ । ଗୋଟିଏ ରାବଣ ପରି ଚେହେରା । ସବୁ ଗୁଣରେ ଭରପୁର । ଆନ୍ତର୍ଜାତିକ ନିଶା ବେପାରି, ଖ୍ୟାତନାମା ହତ୍ୟାକାରୀ ଏଂବ ରେକର୍ଡ ପରିମାଣରେ ନାରୀ ଅପହରଣକାରୀ । କିଛି ତ ବାକି ନାହିଁ । ରାଜ୍ୟସଭାକୁ ଯାଇ ସବୁ ପାପରୁ ମୁକ୍ତି ପାଇବାକୁ ଚାହୁଁଚି, କହୁଚି, 'ମା, କସମ୍ । ଆଉ ମୋଟେ ସେ କାମ କରିବିନି ।'

ମା କସମ୍ ? ଆଜାଦ୍ ନିଜେ ଜାଣେ ତା ମାଆ କିଏ ? ତା ବାପ କିଏ ? ସେତ କେତେଥର କହିଚି, ମୋ ପାଖରେ ସବୁ ନାରୀ ସମାନ, କିଛି ବାଛ ବିଚାର ନାହିଁ । ତାକୁ ରାଜ୍ୟ ସଭାକୁ ପଠାଇଲେ ଦଳରେ ଥିବା ନାରୀମାନେ ସମସ୍ତେ ଏକ ସ୍ୱରରେ ବିଦ୍ରୋହ ଘୋଷଣା କରିବେ ।

ତଥାପି ଆଜାଦ୍ ଉପକାରୀ । ଭୋଟବେଳେ ଗୋଟାଏ 'ମଲାଛେଳିକୁ ଭୋଟରେ ଜିତାଇ ଦେ'କହିଲେ କରିଦେବ । ରାଜନୀତିରେ ଯାକୁଇ କୁହାଯାଏ ଲୟାଲଟି । ସେ କେମିତି କଅଣ କରେ କେଜାଣି । ଆଖି ପିଛୁଳାକେ ଇଧରକା ମାଲ ଉଧର ଓ ଉଧରକା ମାଲ ଇଧର । ଗୋଟିଏ ବଡ଼ କଥା ହେଲା ତାକୁ ଏଯାଏ ଲୋକ ଜାଣି ନାହାନ୍ତି ଯେ ସେ ଆମ ପାର୍ଟିର ଲୋକ । ଗୋଟାଏ ସ୍ୱେଚ୍ଛାସେବୀ ଅନୁଷ୍ଠାନର ସମ୍ପାଦକ ହିସାବରେ ତାକୁ ସମସ୍ତେ ଜାଣନ୍ତି । ଅନ୍ୟ ପାଖରେ, ପୋଲିସ୍ ତାକୁ ଜାଣେ ଜଣେ ଦୁର୍ଦ୍ଦାନ୍ତ ଅପରାଧୀ ହିସାବରେ । କିନ୍ତୁ କୋର୍ଟ କଚେରୀରେ ତାକୁ ଜଣେ ଅତ୍ୟନ୍ତ ଧର୍ମପରାୟଣ ବ୍ୟକ୍ତି ହିସାବରେ ସମସ୍ତେ ଜାଣନ୍ତି । ସେଠି ତାର ସୁନାମ ଅଛି । ଅନେକେ ସେଠି ତାକୁ ସାର୍ ବୋଲି ସମ୍ବୋଧନ କରି ଥାଆନ୍ତି ।

ଆଜାଦ୍ କଥା ମୁଖ୍ୟମନ୍ତ୍ରୀଙ୍କର ମନେ ପଡ଼ିଲେ ସେ ମନେ ମନେ ହସି ଉଠନ୍ତି । ଆଜାଦ୍ ତାଙ୍କୁ କହେ ଆପଣ ମୋତେ ଦସ୍ୟୁ ରତ୍ନାକରରୁ ବାଲ୍ମୀକି କଲେ । ତେଣୁ ମୁଁ ଆଉ ଅପରାଧ କରୁନାହିଁ । କରିବାକୁ ଇଚ୍ଛା ମଧ ନାହିଁ । ମନ ଭିତରେ ସବୁବେଳେ ଗୋଟିଏ ଧର୍ମଭାବ ଆସୁଚି । ଗୋଟିଏ ପବିତ୍ରତା ମୋତେ ଘାରି ପକାଉଚି । ନାରୀଟିକୁ ଦେଖିଲେ ମାଆ ଭଳିଆ ଲାଗୁଚି । ମନେ ହେଉଚି ତାକୁ କୁଣ୍ଢାଇ ମାଆ ବୋଲି ଡାକନ୍ତି । ଝିଅଟିଏ ଦେଖିଲେ ସେମିତି ମନରେ ପବିତ୍ର ଭାବ ଆସୁଚି । ତାକୁ ଦୁଇ ହାତରେ ଟେକି ଦେଇ ଚୁମାଟିଏ ଦିଅନ୍ତି । ଗେଲ କରନ୍ତି ।

ହେଇତ ସେଦିନ ଆଜାଦ୍ ସିଟି ମାରିଲା । କଲେଜ୍ ଗେଟ୍ ସାମନାରେ ଗୋଟିଏ ଝିଅକୁ ଦେଖି ସେମିତି କଲା । ଚହଳ ପଡ଼ିଗଲା । ସାରା ସହର ଦୁଲୁକିଲା । ପୁଲିସ୍ ତାକୁ ଧରିବା ପୂର୍ବରୁ ସେ କାର୍‌ରେ ଖସି ପଳେଇଲା । କାନ୍ଦୁଣୁ ମାନ୍ଦୁଣୁ ହୋଇ ମୋ ଗୋଡ଼ ତଳେ ପଡ଼ିଗଲା । କହିଲା, ମୁଁ ନୁହେଁ, ମୋ ସାନ ଭାଇ ହୋଇଥିବ । ମା ରାଣ । ଆଖି ଛୁଉଁଚି ।

ବଦମାସ କୋଉଠିକାର । ପ୍ରକୃତି କିଏ କଅଣ ଛାଡ଼ିଲାଣି । ଘୁଷୁରି ପ୍ରକୃତି । ପଙ୍କ ଦେଖିଲେ ମନଟା ହାଉଳି ଖାଏ ।

ଏବେ କହୁଚି ଏଠି ମୋର ଶତ୍ରୁ ବଢିଗଲେଣି । ମୋର ଭଲ କାମକୁ କେହି ସହି ପାରୁନାହାନ୍ତି । ଈର୍ଷା କରୁଛନ୍ତି । କିଛି ଦିନ ପାଇଁ ଦିଲ୍ଲୀ ଚାଲିଗଲେ ରକ୍ଷା ପାଇ ଯାଆନ୍ତି ।

ତାର ଲୋକସଭାକୁ ଯିବାକୁ ମୋଟେ ଇଚ୍ଛା ନାହିଁ । ସେ କହେ ସେଇଟାକୁ ଲୋକସଭା ନ କହି 'ଶୋକସଭା' କହିବା ଉଚିତ୍ । ତା ଛଡ଼ା ତାର ସ୍ଥାୟୀତ୍ୱ କେତେ ? ମାସେ କି ଦି ମାସ । ଯେତିକି ପରିଶ୍ରମ ଜଣେ କରେ ସେଠାକୁ ଯିବା ପାଇଁ, ତାର ଶହେ ଭାଗରୁ ଭାଗେ ବି ଉଠିବନି । ଯାଇ ଲାଭ ?

ତଥାପି ମୁଖ୍ୟମନ୍ତ୍ରୀ ତାକୁ ବୁଝେଇଲେ । ସେ କହିଲେ, ଆରେ ଆଜିକାଲି ଆଉ ସେ ଯୁଗ ଅଛି କି ? ଲୋକସଭା ଭାଙ୍ଗିଲେ ମଧ ସଦସ୍ୟମାନେ ସବୁ ପ୍ରକାର ସୁବିଧା ସୁଯୋଗ ପାଉଛନ୍ତି । ସେମାନଙ୍କର ତ ଉଭା ଯେତେ ପୋତା ସେତେ । କିଛି କାମ ନ କରି କୋଟି କୋଟି ଟଙ୍କା ଗୋଡ଼ ତଳେ । ଆସନ୍ତା

ଶତାବ୍ଦୀକୁ ଏମିତି ବି ହୋଇପାରେ, ଲୋକସଭା ମଲେ ମଧ୍ୟ ସଦସ୍ୟମାନେ ମରିବେ ନାହିଁ । ସେତେବେଳେ ବି ଏମିତି ହେବ ଭୂତ ସାଂସଦମାନେ ଜୀବିତ ସାଂସଦମାନଙ୍କ ପରି ମାନ୍ୟତା ପାଇବେ । ତେବେ ଆଉ ଅସୁବିଧା କଅଣ ? ଆଜାଦ୍ ସେକଥା ମଧ୍ୟ ମାନିଲାନି, ତାର ଗୋଟିଏ ଜିଦ୍ ସେ ରାଜ୍ୟସଭାକୁ ଯିବ । ତା ମତରେ ସେଠାକୁ ଯିବା ଅତି ସହଜ । କେବଳ ଜଣକୁ ସନ୍ତୁଷ୍ଟ କରିଦେଇ ପାରିଲେ ରାସ୍ତା ସାଫ୍ । ଅନ୍ୟ ଦିଗରେ ସେଠି କୁଆଡ଼େ 'ଲିଟିଲ୍ ଟୁ ଡୁ ଏଣ୍ଡ ପ୍ଲେଣ୍ଟି ଟୁ ଗେଟ୍' । ପାଞ୍ଚ ଛଅ ବର୍ଷ ଯାଏ ଆଉ ଚିନ୍ତା ନାହିଁ ।

ମୁଖ୍ୟମନ୍ତ୍ରୀ ଆଜାଦ୍ ବିଷୟରେ ଯେତେ ଚିନ୍ତା କରନ୍ତି ଆଉ କାହା ବିଷୟରେ ସେତେ ନୁହେଁ । ସେ କୁଆଡ଼େ ସକାଳୁ ଉଠି ପ୍ରଥମେ ଜଣାଣ କରନ୍ତି, ମାଆ ଶ୍ମଶାନ କାଳୀ, ଆଜି ଦିନ ଯାକ ମୋ ଆଜାଦ୍‌ଟିକୁ ଭଲରେ ରଖ, ସେ ଯାହା କରୁଚି କରୁ କିନ୍ତୁ ମୋ ପାଖକୁ ସେମିତି କୌଣସି ଅଭିଯୋଗ ନ ଆସୁ ।

ସେଦିନ ପଦ୍ମିନୀ ଅଡ଼ି ବସିଲେ । ସେ କହିଲେ ରାଜନୀତିଟା ତୁମ ମତରେ ଏମିତି କି ଜିନିଷ ଯେ ଯୋଉଥିରେ ମୋ ପରି ଗୋଟିଏ ସ୍ତ୍ରୀ ସେଥିରେ ଭାଗ ନେଲେ ତୁମ ଶାସନରେ କଳଙ୍କ ଲାଗିଯିବ ? ମୋର ଶିକ୍ଷା, ଦୀକ୍ଷା, ଜ୍ଞାନ, ଗୁଣ ଏସବୁଥିରେ ତୁମର ଏତେ ସନ୍ଦେହ କାହିଁକି ? କାହିଁକି ତୁମେ ଭାବୁଚ ଯେ ମୁଁ ତୁମକୁ ତୁମ କାମରେ ସାହାଯ୍ୟ କରି ପାରିବି ନାହିଁ? ମୁଁ ତୁମକୁ ତୁମ ରାଜନୀତିରେ ଉଚିତ୍ ପରାମର୍ଶ ଦେଇ ପାରିବିନି ବୋଲି ଭାବୁଚ କି ?

କଥାର ଶେଷ ଅଂଶକୁ ପଦ୍ମିନୀଙ୍କ କଣ୍ଠ ରୋଧ ହୋଇ ଆସିଥିଲା ।

ମୁଖ୍ୟମନ୍ତ୍ରୀଙ୍କୁ କଥାଟା ବଡ଼ ବାଧିଲା । ସେ ଯେ ତାଙ୍କ ଧର୍ମପତ୍ନୀଙ୍କୁ ଶାସନ କାର୍ଯ୍ୟରେ ଅପାରଗ ବୋଲି ଭାବୁଛନ୍ତି ସେ କଥା ନୁହେଁ । ଉଚିତ୍ ପରାମର୍ଶ ଦେବାରେ ସେ ଯେ ଅକ୍ଷମ ସେକଥା ମଧ୍ୟ ସେ ଚିନ୍ତା କରୁ ନାହାନ୍ତି । ସେ କେବଳ ଭାବୁଥିଲେ ଯେ ଏତେ ବଡ଼ ଗମ୍ଭୀର ସମସ୍ୟାର ସମାଧାନ ପଦ୍ମିନୀ କେମିତି କରିବେ ? ବିଶେଷ କରି ସେ ଯଦି ସମସ୍ୟାର ଉତ୍ପତିକୁ ଜାଣି ନ ଥାଆନ୍ତି । ତେଣୁ ରାଜ୍ୟସଭାର ଏକମାତ୍ର ଆସନ ପାଇଁ ଆଗରୁ

ଦିଆଯାଇଥିବା ତିନୋଟି ପ୍ରତିଶ୍ରୁତିକୁ ଏବେ କେମିତି ପାଳନ କରିବେ ସେକଥା ପଦ୍ମିନୀଙ୍କ ପରି ଗୃହିଣୀଙ୍କ ମୁଣ୍ଡକୁ କେମିତି ଆସିବ ?

ତେବେ ପଦ୍ମିନୀ ଗୃହିଣୀ ହେଲେ ମଧ ଅନେକ ସମୟରେ ମୁଖ୍ୟମନ୍ତ୍ରୀଙ୍କୁ ସୁପରାମର୍ଶ ଦେଇ ଆସିଚନ୍ତି । ଏକଥା ସେ ଅସ୍ୱୀକାର କରିପାରିବେ ନାହିଁ । ଅନେକ ବଡ଼ ବଡ଼ ସମସ୍ୟାମାନ ବେଳ ଅବେଳରେ ସେ ଯେତେବେଳେ ପଦ୍ମିନୀଙ୍କ ଆଗରେ ବାଢ଼ି ଦିଅନ୍ତି, ସେତେବେଳେ ସେ ଜଣେ ଅତ୍ୟନ୍ତ ଦକ୍ଷ ରାଜନୀତିଜ୍ଞ ପରି ଗୋଟିଏ ମିନିଟରେ ତାର ସମାଧାନର ବାଟ ଫିଟେଇ ଦେଇଚନ୍ତି । ଏଥିପାଇଁ ମୁଖ୍ୟମନ୍ତ୍ରୀ ତାଙ୍କୁ ପ୍ରଶଂସା କରନ୍ତି ।

ଶେଷରେ ମୁଖ୍ୟମନ୍ତ୍ରୀ ସବୁକଥା ତାଙ୍କୁ କହିଲେ ଏବଂ ଏହାହିଁ ତାଙ୍କ ରାତ୍ରି ଅନିଦ୍ରାର ଏକମାତ୍ର କାରଣ ସେକଥା ମଧ କହିଲେ ।

ଏଥର ପଦ୍ମିନୀ କର ଲେଉଟାଇଲେ ଏବଂ ନୀଳାଭ ଆଲୋକରେ ବିମର୍ଷ ସ୍ୱାମୀଙ୍କ ମୁହଁଟି ଦେଖିଲେ ତାପରେ ତାଙ୍କ ନାକଟାକୁ ଟିକେ ଚିପି ଦେଇ କହିଲେ, ଏଇ କଥା ? ତୁମେ ଚୁପ୍ ଚାପ୍ ଶୁଅ । କାଲି ସକାଳେ ମୁଁ ତୁମକୁ କହିବି ।

ଏଇ କଥା ପଦକରେ ମଧ ମୁଖ୍ୟମନ୍ତ୍ରୀଙ୍କର ଆଉ ନିଦ ହେଲା ନାହିଁ । ପଦ୍ମିନୀ କଥାଟା ଶୁଣୁ ଶୁଣୁ ଯେତେବେଳେ କହି ଦେଲେ ରାତି ପାହିଲେ କହିବି ସେତେବେଳେ ତାଙ୍କୁ ଆଉ ନିଦ ହେଉଚି କେଉଁଠି ? ତାଙ୍କୁ ଆଉ ନିଦ ହେବ ?

ପଦ୍ମିନୀ ପରଦିନ ସକାଳେ ନିଜ ହାତରେ ଦୁଇ କପ୍ ଚା ଧରି ଆସି ସ୍ୱାମୀଙ୍କ ପାଖରେ ବସି ପଡ଼ିଲେ ଏବଂ କହିଲେ ରାତିରେ ଭଲ ନିଦ ହେଲାତ ?

ନା ।

ନା କାହିଁକି ? ମୋ କଥା ବିଶ୍ୱାସ ହେଲାନି ବୋଧେ ।

ମୁଖ୍ୟମନ୍ତ୍ରୀ ହସିଦେଲେ ଏବଂ କପ୍‌ଟା ଉଠାଇ ନେଲେ ।

ପଦ୍ମିନୀ କହିଲେ ତମର ଜାଣିବା ଉଚିତ ଯେ ରାଜନେତାମାନଙ୍କର ରାଜନୀତିରେ ଜ୍ଞାନ ଯାହା ତାଙ୍କ ସ୍ୱାମୀମାନଙ୍କର ତା ଅପେକ୍ଷା ଅନେକ ବେଶୀ ।

ସେମାନେ ଖାଲି ଦେଖୁଥାଆନ୍ତି ଏବଂ ଭିତରେ ଭିତରେ ଗୁମୁରୁ ଥାଆନ୍ତି । ତେଣୁ ତମେ ଯେତେବେଳେ ରାଜନୀତିର ପଶା ଖେଳ ପାଇଁ ଆସନ ପାରିଦିଅ ସେତେବେଳେ ଆମେ ତମ ଭିତରେ ଅଦୃଶ୍ୟରେ ରହି ଗୋଟି ଚାଳନା ପାଇଁ ନିର୍ଦ୍ଦେଶ ଦେଉ । ତାର କାରଣ ଆମେ ନିରପେକ୍ଷ ଭାବରେ ଦୂରରେ ରହି ଘଟଣାଟାକୁ ଦେଖୁଥାଉ । ତମର ଏକଥା ମଧ୍ୟ ଜାଣିବା ଉଚିତ୍ ଯେ ତମର ଆସନଟି ଉପରେ ତମର ଯେତେ ଲୋଭ ଅଛି ତା ଅପେକ୍ଷା ବେଶୀ ଅଛି ଆମର । ତେଣୁ ତାର ସୁରକ୍ଷା ଦାୟିତ୍ୱ ତମ ଅପେକ୍ଷା ଆମର ବେଶୀ ।

ହଉ ଏଥର କଥା ଉପରକୁ ଆସ । ମୁଖ୍ୟମନ୍ତ୍ରୀ ସେତେବେଳକୁ ବ୍ୟସ୍ତ ହେଇ ପଡ଼ିଲେଣି ।

'ତୁମକୁ ଚତୁର୍ଥ ବ୍ୟକ୍ତି ପାଖକୁ ଯିବାକୁ ହେବ ।'

'ଚତୁର୍ଥ ବ୍ୟକ୍ତି ? ତୁମେ କଅଣ କହୁଚ ? ତିନିଟା ଲୋକ ମୋ ବେକରେ ଫାଶ ଲଗାଇ ତିନି ଆଡ଼କୁ ଟାଣୁଥିବା ବେଳେ ମୁଁ ଆଉ ଜଣକୁ ନିୟନ୍ତ୍ରଣ କରିବି ? ବଡ଼ ବିଚିତ୍ର ବୁଦ୍ଧି ତମର ?'

'ବୁଦ୍ଧିଟା ବିଚିତ୍ର ହେଇପାରେ । କିନ୍ତୁ ତାହାହିଁ ବାସ୍ତବତା । ତାଛଡ଼ା ଅନ୍ୟ ଉପାୟ ତମଠି ନାହିଁ ।'

'ତୁମେ ଯେ କଅଣ କୁହ ।'

'ମୁଁ ଠିକ୍ କହୁଚି । ରାଜ୍ୟସଭା ହେଉ ବା ଲୋକସଭା ହେଉ ଯେଉଁ ଲୋକଟି ସେଠାକୁ ଯିବ ସେ ତୁମର ଏକାନ୍ତ ବଶମ୍ବଦ ହେବା ଦରକାର । ଖାଲି ସେତିକି ନୁହେଁ, ସେ ଅନ୍ତତଃ ରାଜନୀତିର ସବୁ ପ୍ରକାର ପ୍ରତିକୂଳ ଅବସ୍ଥାରେ ତମକୁ ହିଁ ପ୍ରଭୁ ବୋଲି ମନେ କରୁଥିବ । ସିଧା କଥାରେ ସେମାନେ ତମର ଏକାନ୍ତ ଓ ବିଶ୍ୱସ୍ତ ଭୃତ୍ୟ ପରି କାମ କରୁଥିବେ । ନଚେତ୍ ଥରେ ଯଦି ସେ ସେଠି ତମ ରାଇଭେଲ୍ ଗୋଷ୍ଠୀର ପ୍ରରୋଚନାରେ ପଡ଼ିଯାଏ ତେବେ ତୁମ ପାଇଁ ସେ ବିପଦର କାରଣ ହେବ ନା ନାହିଁ ?'

ସେ ଟିକିଏ ରହିଲେ ଏବଂ କହିଲେ ତମର ତିନିଜଣ ପ୍ରାର୍ଥୀଙ୍କଠାରେ ତମ ପ୍ରତି ଚିରଦିନକୁ ଲୟାଲ ରହିବାର ଗ୍ୟାରେଣ୍ଟି ମୁଁ ଦେଖିପାରୁ ନାହିଁ ।

ସେମାନେ ଦିଲ୍ଲୀ ମାଟି ଛୁଇଁବା ମାତ୍ରେ ତମ ନାଁ ଭୁଲି ଯିବାର ସମସ୍ତ ଗୁଣ ତାଙ୍କଠାରେ ମୁଁ ସ୍ପଷ୍ଟ ଦେଖିପାରୁଚି । ଏମାନଙ୍କୁ ନେଇ ତମେ ରାଜନୀତିରେ ସ୍ଥାୟୀ ମାଲିକାଟି କେମିତି କରିବ ?'

ତମେ ଯେ କଅଣ କହୁଚ ମୁଁ ବୁଝି ପାରୁନି । ମୁଖ୍ୟମନ୍ତ୍ରୀ କଣ୍ଠ ସେତେବେଳକୁ ବେଶୀ ହତାଶିଆ ଶୁଭୁଥିଲା ।

ତୁମେ ଭାରତବର୍ଷରେ ଆମର ଏ ରାଜନୀତିର ଇତିହାସ କେବେ ଅନୁଧ୍ୟାନ କରିଚ ? କରିଚ କେବେ ନେତାଙ୍କ ଚରିତ୍ର ଉପରେ ଗବେଷଣା ? ଜୟଲଳିତା, ଲାଲୁ, ଆନ୍ଧ୍ରରେ ଚନ୍ଦ୍ରବାବୁ ଏବଂ ମହାରାଷ୍ଟ୍ରରେ ବାଲ୍ ଥାକ୍‌ରେଙ୍କ ନେତୃତ୍ୱକୁ ଦେଖ । ସେମାନେ ଟେଲିଫୋନ ଉଠାଇଲାବେଳକୁ ଦିଲ୍ଲୀରେ ଥିବା ତାଙ୍କ ମହାମାନ୍ୟ ଲୋକ ପ୍ରତିନିଧି କେନ୍ଦ୍ରମନ୍ତ୍ରୀଙ୍କ କଣ୍ଠ ଫାଟି ଯାଉଛି । ପାଟିରୁ କଥା ବାହାରେନି । ଖନି ମାରିଯାଏ । ଉଠ୍ କହିଲେ ଉଠ୍, ବସ୍ କହିଲେ ବସ୍ । ଏଇଟା ସେମାନଙ୍କ ଭିତରେ କି ସମ୍ପର୍କ କହିଲ ?

ମୁଖ୍ୟମନ୍ତ୍ରୀ ଚୁପ୍ ।

ମାଲିକ ଓ ଚାକରର ସମ୍ପର୍କ । ଏବଂ ସେଇ ସମ୍ପର୍କ ଯେଉଁଠି ଯେତେ ଗାଢ଼ ସେଠି ସେତିକି ପାର୍ଟିରେ ଦୃଢ଼ତା । ଅନ୍ୟଥା ତାହା ଗୋଟିଏ ମିନିଟ୍ ଟିକେନା । ସିଂହାସନ ଓଲଟିଯାଏ । ତମର ଏ ତିନୋଟି ଲୋକ ଭିତରେ କାହା ସହିତ ଏପରି ସର୍ମ୍ପକ ଅଛି କହିପାରିବ ? ଏକାନ୍ତ ଆନୁଗତ୍ୟ ନ ଥିଲେ ରାଜନୀତି ଚଳେନା । ଏବଂ ଏକାନ୍ତ ଆନୁଗତ୍ୟ ପାଠୁଆ, ପଢୁଆ କିମ୍ବା ଚାଲକ ଚତୁର ଲୋକଙ୍କ ଠାରେ ମିଳେନା । ସେଇଥିପାଇଁ କୁହାଯାଉଚି ରାଜନୀତିରେ ଶିକ୍ଷାଗତ ଯୋଗ୍ୟତା ଅନାବଶ୍ୟକ' ତେଣୁ ତୁମେ କୋଉ ବୁଦ୍ଧିରେ ଯେ ଏଇ ପ୍ରକାର ଲୋକଙ୍କ କଥା ନେଇ ଏତେ ଚିନ୍ତା କରୁଚ ମୁଁ ବୁଝି ପାରୁନି ।

ତୁମର ସେହି ଚତୁର୍ଥ ଲୋକଟି କିଏ ସେକଥା ମୋତେ କହିପାରିବ ? ମୁଖ୍ୟମନ୍ତ୍ରୀ ଉତ୍କଣ୍ଠାର ସହିତ ପଚାରିଲେ ।

ମୋ କଥା କଅଣ ତୁମେ ମାନିବ ? ମୁଁ ଜାଣେ ତୁମେ ମାନିବନି । କହି ଲାଭ ? ବରଂ ତମେ ନିଜେ ଖୋଜି ନିଅ । ମୋ ମତ ମୁଁ ଦେଲି । ଏଣିକି ତମ କାମ ତମେ କର । ସେ ଉଠିଲେ ।

ଆରେ ବସ, ବସ । ତମ କଥା ରଖିବି ନାହିଁ ବୋଲି କେମିତି ଜାଣିଲ ? ତମର ସବୁକଥା ଯେତେବେଳେ ମନକୁ ପାଉଚି, ଏକଥାଟା ମନକୁ ପାଇବନି ବୋଲି କାହିଁକି ଭାବୁଚ ?

ପଦ୍ମିନୀ ବସି ପଡ଼ିଲେ ଏବଂ ହସି ହସି କହିଲେ 'ସରକାର ଆଇନ୍‌ଟା ଦବଲ କରୁ କରୁ ରଖିଦେଲେ । ସବୁ ସାଂସଦଙ୍କ ବୟସ ଯଦି ଅଠରକୁ ଖସେଇ ଦିଅନ୍ତେ ତେବେ ଖୁବ୍ ଭଲ ହୁଅନ୍ତା । ଏମିତି ଗୋଟିଏ ପ୍ରସ୍ତାବ ଶୁଣା ଯାଉଥିଲା । ଦୁର୍ଭାଗ୍ୟ, ସେତିକିବେଳକୁ ସଂସଦଟା ଭାଙ୍ଗିଗଲା । ମୁଁ ସେତେବେଳକୁ ଦିଲ୍ଲୀରେ ପଢୁଥିବା ମୋ ସାନଝିଅକୁ ଆଖି ଆଗରେ ରଖିଥିଲି । କେତେ ସୁବିଧା ହୋଇଥାଆନ୍ତା କହିଲ ?

ଆଃ, ଏବେ କାହା କଥା ଚିନ୍ତା କରୁଚ କୁହ ।

ପଦ୍ମିନୀ କହିଲେ ମୋ କଥା ମାନ । ଦିଲ୍ଲୀରେ ଆମ ଫାର୍ମ ହାଉସରେ ରହି ଦେଖାଶୁଣା କରୁଥିବା ବୁଧରାମକୁ ପଠାଇଦିଅ । ସବୁଆଡ଼କୁ ପାଇବ । ଗୋଟିଏ ସ୍ଥାୟୀ ସମାଧାନ ମଧ ହୋଇଯିବ । ନୁହେଁ ?

(ସହଯୋଗୀ, ପୂଜା ସଂଖ୍ୟା - ୧୯୯୮)

***

# ଅପାଣ୍ଡବା ରାଜ୍ୟରେ

ଆମ ମହାରାଜ ଦିଗ୍‌ବିଜୟ ନାରାୟଣଙ୍କୁ ଯେଉଁ ଦିନ 'ଦିବ୍ୟାବାରିଧି' ଉପାଧି ଦିଆଯାଇ ରାଜ୍ୟର ପ୍ରଧାନ କାବ୍ୟ କବିତା ଗବେଷଣା କେନ୍ଦ୍ର 'ଦିବ୍ୟବାରିଧି ଏକାଡେମୀ'ର ମୁଖ୍ୟ ପଦବୀ ମଧ ଦିଆଯିବ ବୋଲି କଥାଟା ପ୍ରକାଶ ପାଇଲା ମୁଁ ଆଶ୍ଚର୍ଯ୍ୟ ହେଇଗଲି । ଆଶ୍ଚର୍ଯ୍ୟ ହେଲି ଏଇଥିପାଇଁ ଯେ ମହାରାଜ ତ ଶାସନ କାମରେ ସବୁବେଳେ ବ୍ୟସ୍ତ । ସେ ସବୁବେଳେ ଗସ୍ତରେ ଥାଆନ୍ତି । କ୍ୱଚିତ୍ ସେ ରାଜଧାନୀକୁ ଆସନ୍ତି । ରାଜାଙ୍କ ଅବର୍ତ୍ତମାନରେ ରାଣୀମା ହିଁ ଶାସନର ଇମ୍ପୋଟେଣ୍ଟ ଡିସିସନ୍ ନିଅନ୍ତି । ଏପରି ଅବସ୍ଥାରେ ମହାରାଜାଙ୍କ ସମୟ କାହିଁଯେ ଦେଶର ପ୍ରମୁଖ ପଣ୍ଡିତମାନଙ୍କ ସହ ଆଲୋଚନା କରି ଏକାଡେମୀ କାମ ଚୁଲାଇବେ । କିନ୍ତୁ କଥାଟା ଘୋଷଣା ଆକାରରେ ପ୍ରକାଶ ପାଇ ନ ଥିବାରୁ ମୁଁ ଟିକିଏ ସନ୍ଦେହରେ ପଡ଼ିଲି ।

ମୁଁ ମହାରାଜାଙ୍କ ପି.ଏ.ଙ୍କୁ ଫୋନ କଲି, କହିଲି ମୋର ଟିକିଏ ଜରୁରୀ କାମ ଅଛି । ସେ କହିଲେ ତମର ତ ମହାରାଜାଙ୍କ ସହିତ କ୍ଷୀର ନୀର ସମ୍ପର୍କ । ଏବେ ଚାଲି ଆସୁନ । ସେ ଏବେ ଭଲ ମୁଡରେ ଅଛନ୍ତି । ତେବେ ସାମ୍ବାଦିକଙ୍କ ପାଇଁ ପୁଣି ମୁଡ୍ କଅଣ ?

ମୁଁ ଗଲି । ଗଲାମାତ୍ରେ ତାଙ୍କୁ ଭିତରକୁ ଯାଇ ପ୍ରଣାମ କଲି ଏବଂ କହିଲି, ଅଭିନନ୍ଦନ ।

ସେ ଆଶ୍ଚର୍ଯ୍ୟ ହେଲେ । କହିଲେ ଅଭିନନ୍ଦନ କଅଣ ପାଇଁ ?

ଗୋଟିଏ ନୂଆ ଉପାଧି ପାଇଲେ ପରା ?

କି ଉପାଧି ? କିଏ ଦେଲା ? ମୁଁ ତ ଜାଣିନି ।

ମୁଁ ଟିକିଏ ଅପ୍ରସ୍ତୁତ ହେଲି, କହିଲି, ଶୁଣିଲି 'ବିଦ୍ୟାବାରିଧି' ଉପାଧି ଦେବା ପାଇଁ ଆପଣଙ୍କ ରାଜନୈତିକ କମିଟି ଡିସିସନ୍ ନେଇଚି ।

ସେ ବୋତାମ ଚିପିଲେ ଏବଂ କହିଲେ ଚକ୍ରଧରକୁ ଡାକ । ମୁଁ ଜାଣେଁ ଚକ୍ରଧର ମହାରାଜାଙ୍କ ଦେହଲଗା ଲୋକ । ସେ ଘରେ ବାହାରେ ମହାରାଜଙ୍କ ସବୁ କାମ କରେ । କହିବାକୁ ଗଲେ ସେ ତାଙ୍କ ଦେହରକ୍ଷୀ, ଚାକର ଏବଂ ରାଜନୈତିକ ଉପଦେଷ୍ଟା ମଧ୍ୟ ।

ଚକ୍ରଧର ଆସିଲା । କାନ୍ଧରେ ଥିବା ନାଲି ଗାମୁଛା କାନିରେ ହାତ ପୋଛୁ ପୋଛୁ ଠିଆ ହେଲା ଏବଂ ମୁରୁକି ମୁରୁକି ହସିଲା ।

ମହାରାଜ ତାକୁ ଥରେ ଖାଲି ଦେଖିଲେ ଏବଂ କହିଲେ 'ହଉ ତୁ ଯାଆ ।' ତା'ପରେ ମୋତେ କହିଲେ ମୋତେ ଅବଶ୍ୟ ସେ ଏ ବିଷୟରେ ଥରେ ଦି'ଥର କହିଚି । ମୁଁ କିନ୍ତୁ ହଁ କି ନା କିଛି କହି ନଥିଲି । ହଉ, ତମେ କଅଣ ପଚାରୁଚ ପଚାର ।

ଆପଣଙ୍କ ସାହିତ୍ୟିକ ପ୍ରତିଭା ବିଷୟରେ ମୋତେ କିଛି କହନ୍ତୁ ।

ମୁଁ ଅନେକ ବହି ଲେଖିଚି । ତୁମେ ଜାଣିନ ? ସବୁ ଛପା ହେଇଚି । ତା'ଭିତରୁ 'ଜେମା ଦେଇ କାନ୍ଦ', 'ରାଧା ପ୍ରେମର ମୂଳକଥା' ଅତ୍ୟନ୍ତ ଲୋକପ୍ରିୟ । ତାକୁତ ଅନେକ ଫରେନ୍ କାଗଜ ମଧ୍ୟ ଉଚ୍ଚ ପ୍ରଶଂସା କରିଚନ୍ତି । ମୋର ମୋଟ ଛପା ବହି ୩୦ ଖଣ୍ଡେ ହେବ । ଠିକ୍ କେତେ ଖଣ୍ଡ ଚକ୍ରଧର କହି ପାରିବ ।

କିନ୍ତୁ ମୋର କହିବାର କଥା ଏ ପ୍ରକାର ସର୍ବୋଚ୍ଚ ଉପାଧିଟା ମହାରାଜା ନିଜେ ନ ନେଇ ଆଉ କେହି ଜଣେ ମହାନ୍ କବି କି ପଣ୍ଡିତଙ୍କୁ ଦେଇଥିଲେ.... । ସେ କଥା ଛଡ଼େଇ କହିଲେ ମୋର ଜ୍ଞାନ ଗାରିମା କି ସାହିତ୍ୟିକ ପ୍ରତିଭା କଅଣ କମ୍ କି ? ମୋତେ ତ ପୁଣି 'ସେଲି'ଙ୍କ ସହିତ ତୁଳନା କରାଯାଇଛି । ଆଚ୍ଛା ଏ 'ସେଲି' କିଏ କି ହୋ ? ଆମ ଚକ୍ରଧର ବି ଜାଣେନି ।

ଟିକିଏ ରହି ସେ ପୁଣି କହିଲେ, ତୁମେ ଅନ୍ୟମାନଙ୍କ କଥା କହୁଚ । ଆଉ ଆମ ରାଜ୍ୟରେ କିଏ ପ୍ରକୃତରେ ଜ୍ଞାନୀ ଗୁଣୀ ଅଛି ଯେ ? ଦେଖୁନ କେମିତି ଭିକମଗାଙ୍କ ପରି ହଉଚନ୍ତି । ତାଙ୍କ ଭିତରେ ଏଇ ପ୍ରତିଯୋଗିତା ଏଡ଼େଇବାକୁ ମୁଁ ଚକରା କଥାରେ ମୌନ ସମ୍ମତି ଦେଇଦେଲି । ଏକଥା କିନ୍ତୁ ତମେ ଲେଖିବନି ।

ଏତିକିବେଳେ ଆଉ ଜଣେ ଭଦ୍ରଲୋକ ପଶି ଆସିଲେ । ସେ ମହାରାଜଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲେ ଏଇଥର ଯୋଗ୍ୟତମ ବ୍ୟକ୍ତିଙ୍କୁ ଉପାଧିଟା ଦିଆଯାଇଚି । ମୁଁ ଗୋଟିଏ କଥା ମହାରାଜାଙ୍କୁ କହିବାକୁ ଆସିଥିଲି । ଆପଣଙ୍କର ସେ ଦୁଇଟା ବହିକୁ ଏଥର ପି.ଜି.ରେ ପାଠ୍ୟ ପୁସ୍ତକ ରୂପେ ଗ୍ରହଣ କରିବାକୁ ଅନୁମତି ଦିଅନ୍ତୁ । ସିଲେକ୍ସନ୍ କମିଟିରେ ମୁଁ ଅଛି । ତା'ପରେ ସେ ମୋତେ ଚାହିଁ କହିଲେ, ଆପଣ ତ ବହି ପଢ଼ିଥିବେ । କି ତାର ନିର୍ଯ୍ୟାସ, କି ଅନ୍ତଃସ୍ୱର । କି ଚମତ୍କାର ତାର ଅନ୍ତର୍ଦୃଷ୍ଟି । ପଢ଼ୁ ପଢ଼ୁ ଭେଦି ଗଲେ ମଣିଷର.... । ସେ ଆଉ କହି ନ ପାରି ଆଖି ବୁଜି ଦେଲେ ।

ତା'ପରେ ସେ ଆଖି ଖୋଲି କହିଲେ ମହାରାଜାଙ୍କୁ ଗୋଟାଏ ରାଜ୍ୟସ୍ତରୀୟ ସମ୍ବର୍ଦ୍ଧନା ଦେବାକୁ ଆମେ ଠିକ୍ କରିଛୁ ।

ମହାରାଜା ତଳକୁ ମୁହଁ ପୋତି କହିଲେ ଟିକିଏ 'ଚକ୍ରଧର ସହିତ କଥା ହେଇ ଯାଅ ।'

ସେ ଉଠି ଯାଆନ୍ତେ ମହାରାଜା ମୋତେ କହିଲେ ଦେଖିଲ ତ । ମୁଁ କଅଣ ମିଛ କହୁଚି ! ଆତ୍ମ ବଢ଼ିମା ମୋତେ ମୋଟେ ଭଲ ଲାଗେନା ।

ମୁଁ କହିଲି, ମୁଁ କଅଣ ମହାରାଜାଙ୍କୁ ଜାଣିନାହିଁକି ? କିନ୍ତୁ ଗୋଟାଏ କଥା ବୁଝି ପାରୁନି । ଆପଣ ତ ସବୁବେଳେ ରାଜକାର୍ଯ୍ୟରେ ବ୍ୟସ୍ତ । ଗୋଟିଏ ମିନିଟ୍ ବି ଆପଣଙ୍କୁ ଫୁରସତ୍ ନାହିଁ । ସେଥିରେ ବିଦ୍ୟାବାରିଧି ଏକଡେମୀର କାମ କେତେବେଳେ ଦେଖିବେ ? ସେଥିର ତ ଅନେକ କାମ । ଆପଣ ସମୟ ଦେଇ ପାରିବେ ତ ?

ସେ ହସିଲେ । କହିଲେ ତୁମେ ବାୟା ହେଲ ? ସେଥିରେ କିଛି କାମ କରିବାର ନ ଥାଏ ବୋଲି ତ ସେ ମଣି ମୁକୁଟଟା ମୁଣ୍ଡେଇଚି । ଏକଥାଟା ତମେ ଜାଣିନ କେମିତି ?

(ପ୍ରଜାତନ୍ତ୍ର - ୨୩.୫.୧୯୯୮)

***

# ଓ ଅଂଜନା

ଚନ୍ଦ୍ର ଲୋକରେ ପୁଣି ଥରେ ସେଦିନ ଅଞ୍ଜନା ଦେବୀଙ୍କ ଉପରେ ହେଇଥିବା ଅତ୍ୟାଚାର କଥା ପ୍ରଘଟ ହେବା ପରେ ସାରା ରାଜ୍ୟରେ ଚହଳ ସୃଷ୍ଟି ହେଲା । ରାଜଧାନୀ ଖାଲି ଉଠିଲା ପଡ଼ିଲା । ଦଳମତ ନିର୍ବିଶେଷରେ ସମସ୍ତେ କଥାଟାକୁ ଛି ଛାକର କଲେ । ଅତି କଠୋର ଶବ୍ଦରେ ନିନ୍ଦା କଲେ । ଯେଉଁ ନେତାମାନେ ଅନେକ ଦିନୁଁ ଟିଭି ସାମନାକୁ ଆସିବାକୁ ସୁଯୋଗ ପାଉ ନଥିଲେ, ସେମାନେ ମଧ୍ୟ ବାହାରି ଆସିଲେ । ବିରୋଧି ଦଳଙ୍କୁ ଗୋଟାଏ ବିରାଟ ଖୋରାକ ମିଳିଗଲା । ସେମାନେ ଏ ସୁଯୋଗକୁ କେମିତି ହାତଛଡ଼ା କରନ୍ତେ । ସେମାନେ ସେମାନଙ୍କର ବନ୍ଧୁବାନ୍ଧବ ମାନଙ୍କୁ ଡାକି ତୁରନ୍ତ ମଇଦାନକୁ ବାହାରି ପଡ଼ିଲେ ଏବଂ ମିଳିତ ଶକ୍ତି ତରଫରୁ ଦିନକ ପାଇଁ 'ଚନ୍ଦ୍ରଲୋକ ବନ୍ଦ'ର ଡାକରା ଦେଲେ । ସେମାନେ ଏକଥା ମଧ୍ୟ ଅଭିଯୋଗ କଲେ ଯେ ଯେଉଁ ମୁଖ୍ୟମନ୍ତ୍ରୀ ଅମଳରେ ନାରୀ ମାନଙ୍କ ଉପରେ ଯୌନ ନିର୍ଯ୍ୟାତନା ଅତି ବିଭତ୍ସ ରୂପ ଧାରଣ କଲାଣି, ସେ ମୁଖ୍ୟମନ୍ତ୍ରୀ ତୁରନ୍ତ ଇସ୍ତଫା ଦେବା ଉଚିତ୍ ।

ଗୋଟିଏ ପଟେ ଅଞ୍ଜନା ଦେବୀଙ୍କ ଉପରେ ଅଜଣା ଅପରାଧିଙ୍କ ଅତ୍ୟାଚାର ଏବଂ ଅନ୍ୟ ଦିଗରେ ସମଗ୍ର ରାଜ୍ୟରେ ରାଜନୈତିକ ଉତ୍ତେଜନା ପୁଲିସ୍ ପ୍ରଶାସନର ମୂଳଦୁଆକୁ ଦୋହଲାଇ ଦେଲା । ପଦସ୍ଥ ଅଫିସରମାନେ ଚିନ୍ତିତ ହେଇ ପଡ଼ିଲେ । ସେମାନେ ଭାବି ପାରୁ ନଥିଲେ ଏ ପ୍ରକାର ଏକ ଜଟିଳ ପରିସ୍ଥିତିକୁ କେମିତି ମୁକାବିଲା କରିବେ । 'ଚବିଶି ଘଣ୍ଟା ଭିତରେ ଅପରାଧିମାନଙ୍କୁ ଆରେଷ୍ଟ କରି' ଦାବୀ ସହିତ କିପରି ମୁଖ୍ୟମନ୍ତ୍ରୀଙ୍କ ଆସନକୁ ଦୃଢ଼ ରଖାଯାଇ ପାରିବ, ତାହାହିଁ ଥିଲା ସେମାନଙ୍କ ମୁଣ୍ଡବ୍ୟଥାର କାରଣ ।

ସେମାନେ ଗୋଟିଏ ଉଚ୍ଚ ସ୍ତରୀୟ ମିଟିଂରେ ମିଳିତ ହେଲେ । ସେମାନଙ୍କ ଭିତରେ ପ୍ରଥମ ଆଲୋଚନାର ବିଷୟ ଥିଲା ଅପରାଧିମାନେ କିଏ ହେଇ ପାରନ୍ତି । ଜଣେ କହିଲା ଅପରାଧିମାନେ ନିଶ୍ଚୟ ଅସାମାଜିକ ବ୍ୟକ୍ତି । ଆଉ ଜଣେ କହିଲେ ଏହା ବିରୋଧି ଦଳର କାମ । ଆମର ପ୍ରିୟ ତଥା ସାଧୁ ଓ ସନ୍ଥଙ୍କ ପରି ଜୀବନ ଯାପନ କରୁଥିବା ମୁଖ୍ୟମନ୍ତ୍ରୀଙ୍କୁ ବଦନାମ କରାଇବା ଉଦ୍ଦେଶ୍ୟରେ ଏପରି କରାଯାଇଛି । ଅନ୍ୟତମ ଅଫିସର କହିଲେ ଯେହେତୁ

ତାଙ୍କର ମୁଖ୍ୟମନ୍ତ୍ରୀଙ୍କ ସହିତ ସମ୍ପର୍କ ଭଲ ନଥିଲା, ତେଣୁ ସେ ନିଜେ ଏମିତି ଭିଆଣ କରି ଥାଇ ପାରନ୍ତି ।

ପୁଲିସ୍ ମୁଖ୍ୟ ଏଥିରେ ବିରକ୍ତ ପ୍ରକାଶ କଲେ । ସେ କହିଲେ ଏ ପ୍ରକାର ଆଲୋଚନାରୁ କୌଣସି ସୁଫଳ ମିଳିବ ନାହିଁ । ଆମକୁ ପ୍ରକୃତ ଅପରାଧିକୁ ଆଜି ରାତି ଭିତରେ ଆରେଷ୍ଟ କରିବାକୁ ପଡ଼ିବ । ନଚେତ୍ କୌଣସି ପ୍ରକାରେ ଜନତାକୁ ଶାନ୍ତ କରି ହେବ ନାହିଁ । ଫଳରେ ଆମ ସମସ୍ୟା ବଢ଼ି ଯିବ ।

ଅଫିସରମାନେ ଯା' ତା' ମୁହଁକୁ ଅନେଇଲେ । ସେମାନେ ଏକଥା କିପରି ସମ୍ଭବ ବୁଝି ପାରୁ ନଥିଲେ । ଜଣେ ଅଫିସର ସାହସ ସଞ୍ଚୟ କରି କହିଲେ ଆଜି ରାତିରେ ଏହା କିପରି ସମ୍ଭବ ହେବ ସାର୍ ?

'ଏହା ସମ୍ଭବ ସାର୍' । ଟେବୁଲ ଉପରେ ଅଫିସରମାନଙ୍କୁ ଚା' ପରଶୁଥିବା ଅର୍ଦ୍ଦଳୀ ପାଟିରୁ ହଠାତ୍ କଥାଟି ବାହାରି ପଡ଼ିଲା ।

ସମସ୍ତେ ଦେଖିଲେ ଅର୍ଦ୍ଦଳୀଟି ହାତେ ଜିଭ କାମୁଡ଼ି ପକେଇ ଠିଆ ହେଇଚି । ସେମାନେ ଆଶ୍ଚର୍ଯ ହେଲେ । ଏତେବଡ଼ ଗୁରୁତର କଥାଟା ଉପରେ ସାମାନ୍ୟ ଅର୍ଦ୍ଦଳୀଟିଏ କିପରି ଏପରି ମନ୍ତବ୍ୟ ଦେଇ ପାରିଲା ।

ଅର୍ଦ୍ଦଳୀ କହିଲା ମୋର ଭୁଲ ହେଇ ଯାଇଚି ସାର୍ । ମୋତେ କ୍ଷମା କରନ୍ତୁ ।

ଅପେକ୍ଷାକୃତ ତଳ ପାହ୍ୟାର ଜଣେ ଅଫିସର ତାକୁ ବାହାରକୁ ଯିବାକୁ ନିର୍ଦ୍ଦେଶ ଦେଉଥିଲାବେଳେ ମୁଖ୍ୟ କହିଲେ 'ରୁହ । କିପରି ସମ୍ଭବ ତୁମେ କୁହ । ଭୟ କରନା ।' ସେ ଅନ୍ୟମାନଙ୍କୁ କହିଲେ ବେଳେବେଳେ କଠିନ ସମସ୍ୟାର ସମାଧାନ ରାସ୍ତା ତଳ ଶ୍ରେଣୀରୁ ହିଁ ମିଳିଥାଏ ।

ସେ କହିଲା ମୁଁ ମାତ୍ର ଘଣ୍ଟାକ ଭିତରେ ହି କହିଦେବି ।

କେମିତି ?

ଧ୍ୟାନ ବଳରେ । ମୁଁ ଜଣେ ସାଧକ । ମୁଁ ଏପରି ଅନେକ ସମସ୍ୟାର ସମାଧାନ କରିଚି । ସବୁଥାନା ଅଫିସର ମୋତେ ଜାଣନ୍ତି । ସେମାନଙ୍କୁ ଫୋନ କରି ପଚାରନ୍ତୁ ।

ସମସ୍ତଙ୍କ ଆଖି ଖୋସି ହେଇଗଲା ।

ମୁଁ ଧ୍ୟାନ ବଳରେ ସବୁ ଜାଣିପାରେ । ମୋ ପାଖରେ ଗୋଟିଏ କାଉଁରୀ ହାଡ଼ ଅଛି । ଧ୍ୟାନରେ ରହି ମନ୍ତ୍ରୋଚାରଣ କଲେ ସେ ହାଡ଼ ମୋତେ ସବୁ କହିଦିଏ । ଦେଖିବେ ?

ସେ ହାଠ ଖଣ୍ଡ ପକେଟରୁ କାଢ଼ି ରଖିଲା ଏବଂ ଆଖି ବୁଜି କହିଲା 'ଉଠ' । ହାଡ଼ଟି ଟଳମଳ ହେଲା । ସେ ସେଇଟିକୁ ମୁଠେଇ ଧରି କହିଲା, ଏବେ ଚିଫ୍ ସାହେବଙ୍କ ପକେଟରେ ୩ ଶହ ଟଙ୍କା ଅଛି । ସାର୍ ଠିକ୍ ନା ?

ସାହେବ ହସିଲେ ଏବଂ କହିଲେ, ଠିକ୍ । ସମସ୍ତେ ଆଟମ୍ଭିତ ହେଲେ । ସେତେବେଳେ ସେମାନେ ମନେ ମନେ ଭାବୁଥିଲେ ଧ୍ୟାନ ବଳରେ ସବୁ ଜାଣୁଥିବା ଲୋକଟିକୁ ଅଫିସରେ ଅଡର୍ଲି କରି ରଖିବା ନିରାପଦ ନୁହେଁ । ଆମର ଗୁପ୍ତ କଥା ସବୁ ନିଶ୍ଚୟ ଇଏ ଜାଣି ପାରିବ ।

ଚିଫ୍ କିନ୍ତୁ ନିର୍ବିକାର । ସେ କହିଲେ ଯେ ଯଦି କହି ପାରିବ କହୁଚି, ତେବେ କ୍ଷତି କଅଣ ? ଥରେ ସାହାଯ୍ୟ ନିଆଯାଉ । ସମସ୍ତେ ମୁଣ୍ଡ ଟୁଙ୍ଗାରିଲେ ।

ଅର୍ଦ୍ଦଳୀ ସଂଗେ ସଂଗେ ବାହାରକୁ ଯାଇ ଗେରୁଆ ବସ୍ତ୍ର ଖଣ୍ଡେ ପିନ୍ଧି ଆସିଲା ଏବଂ ତଳେ ପଦ୍ମାସନରେ ବସି ପଡ଼ିଲା । ସେ ହାଡ଼ଟିକୁ ଧରି କହିଲା, ମୁଁ ଧ୍ୟାନରେ ଥାଇ ଉଠି ପଡ଼ିଲେ ମୋତେ ସମସ୍ତେ ଫଲୋ କରିବେ ଏତକ କହି ସେ ଧ୍ୟାନ ମଗ୍ନ ହେଇଗଲା ।

ସମସ୍ତେ ତାକୁ ଘେରି ଠିଆ ହୋଇଥାଆନ୍ତି । କେତେବେଳେ ସେ ଉଠିବ । ତା'ପଛେ ପଛେ ସେମାନେ ଯିବେ । ତାଙ୍କ ଭିତରୁ ଜଣେ କବାଟଟିକୁ ଅଧା ଖୋଲି ଠିଆ ହେଲେ ।

ଧୀରେ ଧୀରେ ସେ ଉଠିଲା । ତା'ର ସମଗ୍ର ଦେହ ଦରଡ଼ା ପତ୍ର ପରି ଥରୁଥାଏ । ଅନ୍ୟମାନେ କଅଣ କରିବେ ବୁଝି ପାରୁ ନଥାନ୍ତି । ହଠାତ୍ ସେ କଇଁ କଇଁ କାନ୍ଦିବାକୁ ଆରମ୍ଭ କଲା ।

ଅନ୍ୟମାନେ ଆଶ୍ଚର୍ଯ୍ୟ ହେଲେ ।

କାନ୍ଦି କାନ୍ଦି ସେ କହିଲା, ସାର୍ ପାଇଚି, ସବୁ ପାଇଚି ।

କହ, ନାଁ କହ । ଚିଫ୍ ଗୋଟିଏ ପେଡରେ ଲେଖିବାକୁ ପ୍ରସ୍ତୁତ ହେଲେ ।

କାନ୍ଦି କାନ୍ଦି ସେ କହିଲା, କହି ପାରିବିନି ସାର୍ । ସେ ନାଁ ସବୁ କହି ପାରିବିନି । ମୋ ଚାକିରି ଚାଲିଯିବ ।

(ପ୍ରଜାତନ୍ତ୍ର - ୨୦.୮.୧୯୯୯)

***

# ବିରାଡ଼ି ଓ ବାତ୍ୟା

ବିରାଡ଼ିମାନେ ଯେତେବେଳେ ଜାଣିଲେ ଯେ ରାଜ୍ୟର ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରଳୟଙ୍କରୀ ବାତ୍ୟା ଯୋଗୁଁ ସମସ୍ତ ଜନପ୍ରଦ ଧ୍ୱଂସ ହୋଇଯାଇଚି ଏବଂ ହଜାର ହଜାର ମଣିଷ ରାସ୍ତା କଡ଼ରେ ପଡ଼ି କଲବଲ ହେଉଛନ୍ତି ସେତେବେଳେ ସେମାନେ ଦୁଃଖରେ ଭାଙ୍ଗି ପଡ଼ିଲେ । ସେମାନେ ଏକଥା ମଧ ଭାବିଲେ ଯେ ହଜାର ହଜାର ଲୋକ ମରିଥିବା ବେଳେ ଏବଂ ସେମାନଙ୍କ ଘରଦ୍ୱାର ସମ୍ପୂର୍ଣ୍ଣ ଉଜୁଡ଼ି ଯାଇଥିବାବେଳେ ସେ ଅଞ୍ଚଳରେ ବାସ କରୁଥିବା ଅସହାୟ ବିରାଡ଼ିମାନେ ମଧ ଦୟନୀୟ ଅବସ୍ଥରେ ମୃତ୍ୟୁବରଣ କରିଥିବେ, କିମ୍ବା ବଞ୍ଚିଥିଲେ ମଧ ଅନେକ କଷ୍ଟ ପାଉଥିବେ । ସେଠାକାର ବିରାଡ଼ି ପିଲାମାନେ ହୁଏତ ମୂଳପୋଛ ହୋଇଯାଇଥିବେ । ତାର ଅନ୍ୟ ଅର୍ଥ ହେଲା ଆଗାମୀ ଶତାବ୍ଦୀରେ ବିରାଡ଼ିଙ୍କ ସଂଖ୍ୟା ଅନେକ କମିଯିବ । ଏହା ମଣିଷ ସମାଜ ପାଇଁ ମଧ ଶୁଭ ସୂଚନା ନୁହେଁ । ତାର କାରଣ କୋଉ ଅନାଦି ଯୁଗରୁ ମଣିଷ ଓ ବିରାଡ଼ି ଭିତରେ ଗୋଟିଏ ଆତ୍ମୀୟ ସମ୍ପର୍କ ରହି ଆସିଚି । ସେମାନେ ପରସ୍ପର ଉପରେ ନିର୍ଭରଶୀଳ ।

ତେବେ ବିରାଡ଼ିମାନେ ନିଜ ବଂଶ କମିଆସୁଚି ଶୁଣି ଯେତେ ଚିନ୍ତିତ ନଥିଲେ, ତା ଅପେକ୍ଷା ବେଶୀ ଚିନ୍ତିତ ଥିଲେ ମଣିଷମାନଙ୍କ ଦୁଃଖ ଦୁର୍ଦ୍ଦଶା କଥା ଶୁଣି । ସେମାନେ ଭାବନ୍ତି ମଣିଷମାନଙ୍କ ଦୁଃଖ ସେମାନଙ୍କର ଦୁଃଖ । ସେମାନେ ସବୁବେଳେ ମଣିଷମାନଙ୍କୁ ସେମାନଙ୍କର ଏକାନ୍ତ ଆପଣାର ବୋଲି ମନେ କରନ୍ତି । ତେଣୁ ବାତ୍ୟାଜନିତ ମଣିଷଙ୍କ ଦୁଃଖ ସେମାନଙ୍କୁ ମ୍ରିୟମାଣ କରି ପକାଇଲା ।

ମଣିଷମାନଙ୍କର ଏ ଚରମ ଦୁର୍ଦ୍ଦିନରେ କଅଣ କରାଯାଇପାରେ ସେ ବିଷୟରେ ବିଚାର ବିମର୍ଶ ପାଇଁ ସେମାନେ ଗୋଟାଏ ସଭାର ଆୟୋଜନ କଲେ । ଗୋଟିଏ ମୋଟା ସୋଟା ବିରାଡ଼ି ଏଥିରେ ସଭାପତିତ୍ୱ କଲା । ତାର ଲମ୍ବ ନିଶରୁ ଜଣେ ବୀର ଏବଂ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବର୍ତ୍ତୁଳାକାର ମୁଖମଣ୍ଡଳରୁ ସେ ଜଣେ ପଣ୍ଡିତ ପରି ଜଣାପଡୁଥିଲା ।

ସଭାପତି ମହୋଦୟ ତାଙ୍କ ଭାଷଣରେ କହିଲେ ଏ ପ୍ରକାର ବାତ୍ୟା ଆମର ଅଶ୍ରୁତପୂର୍ବ । ସେଥିରେ ମୃତୁ ସଂଖ୍ୟା ଏତେ ଅଧିକ ଯେ ତାକୁ କଳନା କରି ହେଉ ନାହିଁ । ବାତ୍ୟାରେ ପଶୁମାନଙ୍କର ମୃତ୍ୟୁ ସଂଖ୍ୟା ଯଥେଷ୍ଟ ବେଶୀ । ତାହା ମଧ କଳନାନୀତ । ସେ ସରକାରଙ୍କର ଅପାରଗ ପଣିଆକୁ କଠୋର ସମାଲୋଚନା କରି କହିଲେ ପ୍ରତିଦିନ ସମ୍ବାଦପତ୍ର ତଥା ଇଲେକ୍ଟ୍ରୋନିକ ଗଣମାଧମରେ ଗାଈ ଗୋରୁ, ଛେଳି ମେଣ୍ଢା ପ୍ରଭୃତିଙ୍କର ମୃତ୍ୟୁ ସଂଖ୍ୟା ପ୍ରକାଶ ପାଉଥିବାବେଳେ ବିରାଡ଼ି ଭଳି ପ୍ରିୟ ଗୃହପାଳିତ ପଶୁ ଯେଉଁମାନଙ୍କୁ ମଣିଷ ତାର ପରିବାରର ସଦସ୍ୟ ରୂପେ ଗ୍ରହଣ କରିଥାଏ ତାର ମୃତ୍ୟୁ ସଂଖ୍ୟା ମୋଟେ ପ୍ରକାଶ ପାଉନାହିଁ । ଏହା ସରକାରଙ୍କର ଆମ ପ୍ରତି ହେୟ ମନୋଭାବର ସୂଚନା । ସେ ଏଥିପାଇଁ ମୁଖ୍ୟମନ୍ତ୍ରୀଙ୍କର ଇସ୍ତଫା ଦାବୀ କରିଥିଲେ ।

ଏହି ପ୍ରଥମ ପ୍ରସ୍ତାବଟି ଗୃହୀତ ହେଲା ପରେ ସେମାନେ ବାତ୍ୟାଞ୍ଚଳର ଲୋକମାନଙ୍କ ପାଇଁ କଅଣ କରିପାରିବେ ତା ଉପରେ ଆଲୋଚନା କଲେ । ସଭାପତି ମହୋଦୟ କହିଲେ ବାତ୍ୟା ଅଞ୍ଚଳକୁ ତ ପ୍ରତିଦିନ କୋଟି କୋଟି ଟଙ୍କାର ଜିନିଷ ଆସୁଚି ଏବଂ ତାହା ପୃଥିବୀର ବିଭିନ୍ନ ସ୍ଥାନରୁ ଆସୁଚି । ଏହା ଏକ ଶୁଭ ସୂଚନା । ଆମେ ସେଥିପାଇଁ ସେମାନଙ୍କୁ ଧନ୍ୟବାଦ ଦେବା ଉଚିତ୍ । କିନ୍ତୁ ଆମ୍ଭେମାନେ ବିରାଡ଼ି ଏବଂ ଖାସ୍ କରି ଜାତିରେ ପଶୁ ହେଇଥିବାରୁ ଆମେ ସେମାନଙ୍କଠାକୁ ଏପରି ଏକ ଜିନିଷ ପଠାଇବା ଯାହା ଅନ୍ୟ କେହି ପଠାଉ ନଥିବେ । ସେ ଜିନିଷ ମଧ ଏପରି ହେବା ଉଚିତ୍ ଯାହା ସେ ଅଞ୍ଚଳର ମଣିଷ ଓ ବିରାଡ଼ିମାନଙ୍କର ଅତ୍ୟନ୍ତ ପ୍ରିୟ ଖାଦ୍ୟ ହେଇଥିବ । ଏଥିରୁ ଅନ୍ତତଃ ଗୋଟିଏ କଥା ସ୍ପଷ୍ଟ ହେବ ଯେ ବିରାଡ଼ି ପଶୁ ହେଲେ ମଧ ତାର ମଣିଷ ଅପେକ୍ଷା ଉନ୍ନତ ରୁଚି ଅଛି ।

ସମସ୍ତେ ସଭାପତିଙ୍କ ମୁହଁକୁ ଅନାଇ ରହିଲେ । ଏହା ସେମାନଙ୍କୁ ଏକ କୌତୁକିଆ ପ୍ରଶ୍ନ ପରି ଲାଗିଲା । ତାର ଉତ୍ତର କଅଣ ହେବ ସେମାନେ ସେ କଥା ମୋଟେ ଚିନ୍ତା କରି ପାରୁ ନଥିଲେ । ଏପରି କେଉଁ ଜିନିଷ ଅଛି ଯାହା ଉଭୟଙ୍କର ଅତି ପ୍ରିୟ ?

ସେମାନେ ନୀରବ ରହିବାର ଦେଖି ସଭାପତି ମହୋଦୟ ପୁଣି କହିଲେ ଆମେ ଯଦି ରିଲିଫ୍ ଆକାରରେ କିଛି ଶୁଖୁଆ ପଠାଇବା ତେବେ କେମିତି ହେବ ?

ସମସ୍ତେ ତାଳିମାରି ସଭାସ୍ଥଳ କମ୍ପେଇ ପକେଇଲେ । ସେମାନେ କହିଲେ ବର୍ତ୍ତମାନ ଅବସ୍ଥାରେ ଶୁଖୁଆ ହିଁ ଏକମାତ୍ର ଖାଦ୍ୟ ଯାହାକୁ ଥାଳି ପାଖରେ ଦେଖୁ ଦେଖୁ ଖାଦ୍ୟ ଭିତରକୁ ଚାଲିଯିବ । ସେ କହିଲେ ଏବେ ସରକାରଙ୍କ ତରଫରୁ ଯେଉଁ ବଗଡ଼ା, ମୋଟା ଓ ଉସୁମୁଳିଆ ଗନ୍ଧଯୁକ୍ତ ଚାଉଳ ମିଳୁଥିବ ତାର ଭାତ ମୋଟେ ଖାଇ ହେଉ ନଥିବ । ଭୋକ ଜ୍ୱାଳାରେ ମଧ ରହି ହେଉ ନଥିବ । ତେଣୁ ତାର ପଖାଳ ଶୁଖୁଆ ପୋଡ଼ାର ବାସନାରେ କୁଆଡ଼େ କେମିତି ପଳେଇବ ସେକଥା ଜଣା ପଡ଼ିବନି । ତା'ଛଡ଼ା ଏବେ ସେ ଅଞ୍ଚଳରେ କିଛି ପରିବା ଥିବ ଯେ ସେମାନେ ତରକାରୀ ଟିକେ ପାଇବେ ? ଶୁଖୁଆ ସେମାନଙ୍କର ଅନେକ କାମରେ ଲାଗିବ ।

ଅନ୍ୟ ଜଣେ କହିଲେ ଖାଲି ମଣିଷ ପାଇଁ ନୁହେଁ ଏହା ବିରାଡ଼ିମାନଙ୍କ ପାଇଁ ମଧ ଏକ ଆଶୀର୍ବାଦ । ଯୋଉ ବଗଡ଼ା ଚାଉଳର ଭାତକୁ ମଣିଷମାନେ ଖାଇ ନପାରି ଫିଙ୍ଗିବେ ତାକୁ ଆମ ବିଲେଇମାନେ ଶୁଖୁଆ ବାସନାରେ ଗିଳି ପକେଇବେ । ସେ ଦିନର ମିଟିଂ ସେଇଠି ଶେଷ ହେଲା । ସେମାନେ ୧୦ ଟ୍ରକ୍ ଶୁଖୁଆ ପଠେଇବାକୁ ଠିକ୍ କଲେ ।

ରିଲିଫ୍ ଟ୍ରକ ଯିବା ଦିନ ଜିଲ୍ଲାପାଳଙ୍କ ଅଫିସ୍ ସାମନାରେ ଏକ ବିରାଟ ସଭା ହେଲା । ଜିଲ୍ଲାର ପ୍ରମୁଖ ବିଲେଇମାନେ ସେଦିନ ସେଠି ଏକତ୍ରିତ ହେଲେ । ବିଲେଇମାନେ ବାତ୍ୟାକ୍ଲିଷ୍ଟ ଲୋକଙ୍କ ପାଇଁ ଶୁଖୁଆ ପଠାଉଥିବାର ଖବର ଯା' ଭିତରେ ଚାରିଆଡ଼େ ପ୍ରଚାର ହେଇଯାଇ ଥିବାରୁ ସେଦିନ ସେଠାରେ ପ୍ରଚୁର ଲୋକ ଆସି ଜମା ହେଲେ । ସମ୍ବାଦପତ୍ରର ପ୍ରତିନିଧିମାନଙ୍କ ଗହଣରେ ଆରମ୍ଭ ହେଇଥିବା ଏ ସଭାରେ ସବୁ ରାଜନୈତିକ ଦଳର ନେତା, ସ୍ଥାନୀୟ ବିଧାୟକ, ସାଂସଦ ଏବଂ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଯୋଗ ଦେଇଥିଲେ । ସେମାନେ ସମସ୍ତେ ବିରାଡ଼ିମାନଙ୍କର ମାନବବାଦୀ କାର୍ଯ୍ୟକ୍ରମକୁ ଭୂୟସୀ ପ୍ରଶଂସା କରି ଭାଷଣ ଦେଲେ । ଜଣେ ନେତାତ କହୁ କହୁ ଏମିତି କହି ପକେଇଲେ ଯେ 'ଆମେ ସମସ୍ତେ ବିରାଡ଼ିମାନଙ୍କ ପଦାଙ୍କ ଅନୁସରଣ କରିବା ଉଚିତ୍ ।'

ସଭା ଶେଷରେ ପୁଲିସ୍ ମୁଖ୍ୟ ଜିଲ୍ଲାପାଳଙ୍କୁ କହିଲେ ଶୁଖୁଆ ଏକ ଅତ୍ୟନ୍ତ ଚୋରୀ ପ୍ରବଣ ସାମଗ୍ରୀ ହୋଇଥିବାରୁ ତାକୁ ବିନା ଜଗୁଆଳୀରେ ବାହାରକୁ ଛାଡ଼ିବା ଉଚିତ୍ ହେବ ନାହିଁ । ତା'ଛଡ଼ା ଆଜିକାଲି ଯେମିତି ରିଲିଫ୍ ସାମଗ୍ରୀ ବାଟମାରଣା ହେଉଛି ସେଥିରେ ଏହା ଯେ ଠିକ୍ ଜାଗାରେ ପହଞ୍ଚିପାରିବ ଏଥିରେ ମୋର ସନ୍ଦେହ ରହିଚି । ସେ କହିଲେ ମୁଁ ଦଶଟି ଟ୍ରକ୍‌ରେ ଦଶ ଜଣ ବନ୍ଧୁକଧାରୀ ପୁଲିସ୍ ଜଗୁଆଳୀ ଦେଇ ଦେଉଚି । କାରଣ ରିଲିଫ୍

ସାମଗ୍ରୀକୁ ଏବେ ଆମେ ଜାତୀୟ ସମ୍ପତ୍ତି ବୋଲି ମନେ କରିବା ଉଚିତ୍ । ତାର ସୁରକ୍ଷା ଆମର ଏକ ପବିତ୍ର କର୍ତ୍ତବ୍ୟ ।

ଏ କଥାଟା ସମସ୍ତଙ୍କ ମନକୁ ପାଇଲେ ମଧ୍ୟ ବିଲେଇମାନେ ଏ କଥାକୁ ସନ୍ଦେହ ଆଖିରେ ଦେଖିଲେ । ଏ ପ୍ରସ୍ତାବ ପଛରେ ପୁଲିସ୍ ମୁଖ୍ୟଙ୍କର କିଛି ମନ୍ଦ ଉଦ୍ଦେଶ୍ୟ ଥିବ ବୋଲି ସେମାନେ ଭାବିଲେ । ଆଜିକାଲି କାହାକୁ ବିଶ୍ୱାସ କରିହେବ ? ବିଲେଇଙ୍କ ନେତା କହିଲେ ପୁଲିସ୍ ଜଗୁଆଳୀ ପ୍ରସ୍ତାବକୁ ଆମେ ଗ୍ରହଣ କରିଛୁ । କିନ୍ତୁ ତା ସହିତ ଆମ ନିଜ ଲୋକ ମଧ୍ୟ ପ୍ରତି ଟ୍ରକ୍‌ରେ ଯିବ । ସେ ସଂଗେ ସଂଗେ ଦଶ ଜଣ ମୋଟା ତାଗଡ଼ା ବିଲେଇକୁ ଟ୍ରକ୍‌ରେ ଯିବାକୁ ନିର୍ଦ୍ଦେଶ ଦେଲେ ।

ଏତିକିବେଳେ ସ୍ଥାନୀୟ ବିଧାୟକ ଜିଲ୍ଲାପାଳଙ୍କ ପାଖକୁ ଲାଗି ଆସି କହିଲେ ରାସ୍ତାରେ ପୁଲିସ୍ ଓ ବିଲେଇମାନଙ୍କ ଭିତରେ ଯଦି କିଛି ବୁଝାମଣା ହୋଇଯାଏ ? ଆମର ଏ ଜାତୀୟ ସମ୍ପତ୍ତି ପାଇଁ ଆପଣ ଏମିତି ରିସ୍କ ନେବା ଉଚିତ୍ ନୁହେଁ ।

ଶେଷରେ ସମସ୍ତଙ୍କ ପରାମର୍ଶକ୍ରମେ ସର୍ବଦଳୀୟ କମିଟି ତରଫରୁ ଜଣେ ଜଣେ କୋଅର୍ଡିନେଟର ମଧ୍ୟ ଟ୍ରକରେ ଯିବାର ସ୍ଥିର ହେଲା । ସେମାନେ ରାସ୍ତାରେ ଆବଶ୍ୟକ ହେଲେ ସ୍ଥାନୀୟ ପ୍ରଶାସନ ଏବଂ ରାଜନୈତିକ ଦଳଙ୍କ ସାହାଯ୍ୟ ଲୋଡ଼ିପାରିବେ ।

ଟ୍ରକ୍‌ମାନଙ୍କର ଯାତ୍ରା ଆରମ୍ଭ ହେବା ବେଳକୁ ଜଣେ ଲୋକ ଧାଇଁ ଆସିଲା । ତା ହାତରେ ଖଣ୍ଡେ କାଗଜ । ସେ କାଗଜଖଣ୍ଡିକ ଜିଲ୍ଲାପାଳଙ୍କ ହାତକୁ ବଢ଼ାଇ ଦେଲା । ତାହା ଥିଲା ମୁଖ୍ୟମନ୍ତ୍ରୀଙ୍କର ମେସେଜ୍ । ସେଥିରେ ଯାହା ଲେଖାଥିଲା ତାର ସାରମର୍ମ ହେଲା, 'ବିଲେଇମାନେ ରିଲିଫ୍ ପଠେଇବା ବଡ଼ କଥା ନୁହେଁ, ବଡ଼ କଥା ହେଲା ମଣିଷମାନଙ୍କର ଚରମ ଦୁର୍ଗତି ସମୟରେ ବିଲେଇ ପରି ନୀରିହ ପଶୁମାନେ ମଧ୍ୟ ସମ୍ବେଦନଶୀଳ ହେଇ ସେମାନଙ୍କ ପ୍ରାଣଠାରୁ ପ୍ରିୟ ଶୁଖୁଆକୁ ଯେ ଦାନ କରିପାରିଲେ ତାହାହିଁ ବଡ଼ କଥା । ଏହାହିଁ ଆଗାମୀ ଶତାବ୍ଦୀରେ ଓଡ଼ିଆ ଜାତିର ଖାଲି ନୁହେଁ, ମଣିଷର ଇତିହାସକୁ ମଧ୍ୟ ନୂଆ କରି ଲେଖିବ ।'

ଜିଲ୍ଲାପାଳ ମେସେଜ୍‌ଟିକୁ ବିଲେଇଙ୍କ ନେତାଙ୍କ ହାତକୁ ବଢ଼େଇ ଦେଲେ ଏବଂ କହିଲେ ଆପଣ ଆମ ସମସ୍ତଙ୍କ ନମସ୍ୟ ।

ଅସଂଖ୍ୟ ଶଙ୍ଖ ଧ୍ୱନି ଏବଂ ହୁଳହୁଳି ମଧ୍ୟରେ ଏବଂ ଘନ ଘନ ଟିଭି କ୍ୟାମେରାର କ୍ଲିକ୍ କ୍ଲିକ୍ ଶବ୍ଦ ଭିତରେ ଟ୍ରକ୍‌ମାନଙ୍କର ଯାତ୍ରା ଆରମ୍ଭ ହେଲା । କଥା ହେଲା ଡ୍ରାଇଭରମାନେ ଏପରି ଭାବରେ ଗାଡ଼ି ଚଳେଇବେ ଯେପରିକି ସୂର୍ଯ୍ୟାସ୍ତର ଯଥେଷ୍ଟ ପୂର୍ବରୁ ଗାଡ଼ିଗୁଡ଼ିକ ଯଥା ସ୍ଥାନରେ ପହଞ୍ଚି ପାରିବ ।

ଠିକ୍ ତାହାହିଁ ହେଲା । ଠିକ୍ ଅପରାହ୍ନ ଚାରିଟା ସୁଦ୍ଧା ସବୁ ଗାଡ଼ି ଯାଇ ବାତ୍ୟାଞ୍ଚଳର ମୁଖ୍ୟ ରିଲିଫ୍ କେନ୍ଦ୍ରରେ ପହଞ୍ଚିଲା । ଗାଡ଼ି ପହଞ୍ଚିବାର ଯଥେଷ୍ଟ ପୂର୍ବରୁ ସେଠି ମୁଖ୍ୟ ରିଲିଫ୍ କମିଶନର୍ ତାଙ୍କ ସହକର୍ମୀମାନଙ୍କୁ ଧରି ବିଲେଇମାନଙ୍କୁ ସରକାରଙ୍କ ତରଫରୁ ରିସିଭ୍ କରିବାକୁ ଉପସ୍ଥିତ ଥିଲେ । ରିଲିଫ୍ ଇତିହାସରେ ଏହା ଏକ ବିଶେଷ ଘଟଣା ହେଉଥିବାରୁ ସେଠାରେ ମଧ୍ୟ ହଜାର ହଜାର ଲୋକ ଉପସ୍ଥିତ ଥିଲେ ।

ରିଲିଫ୍ କମିଶନର୍ ନିଜ ହାତରେ ଫୁଲମାଳ ଧରି ଆଗେଇ ଗଲେ । ତାଙ୍କ ପଛରେ ଅନ୍ୟାନ୍ୟ ନେତୃସ୍ଥାନୀୟ ବ୍ୟକ୍ତି, ଟିଭି କ୍ୟାମେରା, ଦେଶ ବିଦେଶର ସାମ୍ବାଦିକମାନେ, ଜାତିସଂଘ ଓ ବିଶ୍ୱବ୍ୟାଙ୍କର ସତନ୍ତ୍ର ପ୍ରତିନିଧିମାନେ, କେନ୍ଦ୍ର ସରକାରଙ୍କ ସତନ୍ତ୍ର ପ୍ରତିନିଧିମାନେ ଉପସ୍ଥିତ ଥାଆନ୍ତି । ସମସ୍ତଙ୍କ ନଜର ଗାଡ଼ି ଉପରେ । ସମସ୍ତଙ୍କ ଆଖି ଖୋଜି ବୁଲୁଥାଏ ସେଇ ବିଲେଇ ମହାତ୍ମାଙ୍କୁ ଦେଖିବାକୁ । ସମଗ୍ର ପୃଥିବୀରେ ଚହଳ ପଡ଼ି ସାରିଲାଣି । ବିଲେଇଙ୍କ ନେତା ଗାଡ଼ି ଭିତରୁ ବାହାରକୁ ଆସିଲା ମାତ୍ରେ ତାଙ୍କୁ ଯେଉଁ ସମ୍ବର୍ଦ୍ଧନା ଦିଆଯିବ ତାହା ସମଗ୍ର ପୃଥିବୀ ଦେଖିପାରିବ ।

କିନ୍ତୁ ଏ କଅଣ ? ଗାଡ଼ିରେ ତ କେହି ନାହିଁ । ଗଲେ କୁଆଡ଼େ ? କେହି ଜଣେ ଆସି କହିଲା ଗାଡ଼ିରେ ବି କିଛି ନାହିଁ । ଖଣ୍ଡିଏ ବୋଲି ଶୁଖୁଆ ଗାଡ଼ିରେ ଦେଖିବାକୁ ମିଳିଲା ନାହିଁ । ଗାଡ଼ି ସବୁ ତନ୍ନ ତନ୍ନ କରି ଖୋଜାଗଲା । କୋଉଠି କିଛି ଚିହ୍ନ ବର୍ଣ୍ଣ ମଧ୍ୟ ନାହିଁ । ତେବେ ଗୋଟିଏ ଗାଡ଼ିରେ ଦେଖାଗଲା ଯେ ତାର ଡ୍ରାଇଭର ସିଟ୍ ପାଖରେ ବିଲେଇଙ୍କ ନେତା ରକ୍ତାକ୍ତ ଶରୀରରେ ମରି ପଡ଼ିଛନ୍ତି । ତାଙ୍କ ଆଖି ଦୁଇଟା ତଥାପି ଯେମିତି ଜଳୁଥିଲା ।

ସମସ୍ତ ବାୟୁମଣ୍ଡଳ ଯେମିତି ସ୍ତବ୍ଧ ହେଇଗଲା । କମିଶନର୍ ସାହେବ ଆଗେଇ ଗଲେ ଏବଂ ତାଙ୍କର ବେକରେ ଫୁଲମାଳଟି ଲମ୍ବେଇ ଦେଲେ ।

(ପ୍ରଜାତନ୍ତ୍ର - ୧୨.୧୨.୧୯୯୯)

***

# ରୋଗ ହେଲେ

ଭାରତୀୟ ଆଦର୍ଶରେ ଅନୁପ୍ରାଣିତ ହୋଇ ଚନ୍ଦ୍ରଲୋକର ଲୋକପ୍ରିୟ ସରକାର ତାଙ୍କ ରାଜ୍ୟରେ ଗୋଟିଏ ଇସ୍ପାତ କାରଖାନା ପ୍ରତିଷ୍ଠା କଲେ । କାରଖାନାଟି ଇଣ୍ଡିଆ କୋଲବୋରେସନ୍‌ରେ ହେଇଥିଲା । ଚୁକ୍ତି ଅନୁସାରେ ଆମର କିଛି ଲୋକ ସେଠି ଏବେ ମଧ କାମ କରୁଛନ୍ତି । କାରଖାନା ଭଲ ଚାଲିଲା । ବେଶ ପ୍ରଫିଟ୍ ମଧ କଲା । ଚନ୍ଦ୍ରଲୋକର ଏକମାତ୍ର ଇସ୍ପାତ କାରଖାନା ପ୍ରଫିଟରେ ଚାଲିବା ସ୍ୱାଭାବିକ । ଏମିତି ହେଲା ଯେ, କାରଖାନାର ଲୋକମାନେ ଦିନକୁ ଘଣ୍ଟାଏ କାମ କଲେ ମଧ ପ୍ରଫିଟ୍ ହେଲା । ଥରେ ଥରେ ତ ଏମିତି ହେଲା କର୍ମଚାରୀମାନେ ମାସକୁ ଦି' ଚାରିଥର ଆସି ଖାଲି ମୁହଁ ମାରି ଦେଇ ଗଲେ ମଧ କାରଖାନା ଏମିତି ଚାଲିଲାଯେ ପ୍ରତିବର୍ଷ ବୋନସ୍ ହାର ପ୍ରବଳ ବେଗରେ ବଢ଼ି ଚାଲିଲା ।

କାରଖାନାର ସୁନାମ ଚାରିଆଡ଼େ ବିଛାଡ଼ି ହେଇ ପଡ଼ିଲା । କାରଖାନା ସୁନାମ ଯେତିକି ବଢ଼ିଲା ଆମ ଭାରତବର୍ଷର ନାଁ ସେତିକି ବଢ଼ିଲା । ସେ ସୁନାମ ଗ୍ରହରୁ ଗ୍ରହାନ୍ତରକୁ ବ୍ୟାପି ଗଲା । ଅନ୍ୟ ଗ୍ରହରୁ ସେଠାରେ ଷ୍ଟିଲ୍ ପ୍ଲାଣ୍ଟ ତିଆରି କରିବାକୁ ଆମ ପାଖରେ ଅନୁରୋଧମାନ ଆସି ପହଞ୍ଚିବାକୁ ଲାଗିଲା । ସତ କହିବାକୁ ଗଲେ ସେତେବେଳେ ଆମେରିକା, ଇଂଲଣ୍ଡ, ଜର୍ମାନୀ ଓ ଜାପାନ ପ୍ରଭୃତି ଯେଉଁ ଦେଶମାନେ ପୃଥିବୀରେ ଇସ୍ପାତ ଶିଳ୍ପ ପାଇଁ ସୁନାମ ଅର୍ଜନ କରିଥିଲେ ସେମାନେ ଆମ ଯଶ ଖ୍ୟାତି ଦେଖି ଈର୍ଷା ପରାୟଣ ହେଲେ ଏବଂ ଆମ ନିଜ ଇସ୍ପାତ କାରଖାନାମାନ ବୁଡ଼ିବାକୁ ବସିଲାଣି ବୋଲି ଆମ ବିରୁଦ୍ଧରେ ଅପପ୍ରଚାର ଆରମ୍ଭ କରି ଦେଲେ ।

ତେବେ ସେ ଯା ହେଉ ଚନ୍ଦ୍ରଲୋକର ସେ କାରଖାନାଟି କିନ୍ତୁ ବେଶ ଭଲ ଚାଲୁଥାଏ । ତାକୁ ଦେଖିବାକୁ ଚନ୍ଦ୍ରଲୋକର ମନ୍ତ୍ରୀ ତଥା ଭି.ଭି.ଆଇ.ପି. ମାନେ ମାସକୁ ତିନି ଚାରିଥର ଆସି ସେଠି କେମ୍ପ ପକେଇଲେ । ସେମାନେ

ପ୍ରାୟ ପ୍ରତିଦିନ ଶ୍ରମିକମାନଙ୍କର ଗୋଟାଏ ଦି'ଟା ବିରାଟ ବିରାଧ ସଭା କଲେ ଏବଂ ସେମାନଙ୍କ କାମ ପାଇଁ ସେମାନଙ୍କୁ ବାହାବା ଦେବାକୁ ଆରମ୍ଭ କଲେ । ସେମାନଙ୍କ ପାଇଁ ବିଭିନ୍ନ ପୁରସ୍କାର ଯୋଜନାମାନ ଖଞ୍ଜା ଗଲା ।

ଅନ୍ୟ ଦିଗରେ ମନ୍ତ୍ରୀ ଓ ଭି.ଆଇ.ପି. ମାନଙ୍କ ଗସ୍ତ ସଂଖ୍ୟା ଏତେ ବଢ଼ିଲା ଯେ ସେମାନଙ୍କ ପାଇଁ ଗେଷ୍ଟ ହାଉସ୍ ଅଭାବ ପଡ଼ିବାରୁ ନୂଆ ପଞ୍ଚତାରକା ଗେଷ୍ଟ୍ ହାଉସ୍ ମଧ୍ୟ ତିଆରି ହେଲା । ସମସ୍ତେ କାରଖାନାଟିକୁ 'ଜାତିର କୋଣାର୍କ' ବୋଲି କହିଲେ ।

ଦିନକର କଥା ସେହି କାରଖାନାରେ ଦିନେ ଘଟଣାଟିଏ ଘଟିଲା । କାରଖାନାର ଶ୍ରମିକମାନଙ୍କ ପାଇଁ ଥିବା ବିଶାଳକାୟ ହସ୍‌ପିଟାଲ୍‌ର ଚିଫ୍ ମେଡିକାଲ ଅଫିସର ସେଦିନ ରାତି ୨ଟାବେଳେ ଯେଉଁ ଟେଲିଫୋନ କଲଟିଏ ପାଇଲେ ସେଥିରେ ତାଙ୍କ ମୁଣ୍ଡ ବୁଲାଇଦେଲା । ଏତେ ରାତିରେ କଅଣ କରିବେ ସେ ଠିକ୍ କରି ପାରିଲେନି । ଅନ୍ୟ ଉପାୟ ନ ଦେଖି ସେ ଯେତେବେଳେ ହସ୍‌ପିଟାଲ୍‌ର ଅପରେସନ୍ ଥିଏଟର ପାଖର ଆସି ପହଞ୍ଚିଲେ ସେ ଦେଖିଲେ କାରଖାନର ସବୁ ବଡ଼ ବଡ଼ ଅଫିସର ସେଠି ମୁହଁ ଶୁଖେଇ ଠିଆ ହେଇଛନ୍ତି । ଏପରିକି ମେନେଜିଂ ଡାଇରେକ୍ଟର ମଧ୍ୟ ଗୋଟିଏ କୋଣରେ ପଡ଼ିଥିବା ସୋଫାରେ ମୁହଁ ତଳକୁ କରି ବସିଛନ୍ତି । ସମସ୍ତଙ୍କ ମୁହଁ କାନ୍ଦ କାନ୍ଦ ଭାବ । ଯେମିତି ଏଇନେ ଲୁହମାନେ ଆଷାଢ଼ ମେଘରୁ ଟପାଟପ୍ ତଳକୁ ଉଚ୍ଛୁଳି ପଡ଼ିବେ ।

ଅଫିସରମାନେ ଚିଫ୍ ମେଡିକାଲ ଅଫିସରକୁ ଘେରିଗଲେ । ସେମାନେ କହିଲେ ଡକ୍ଟର ଆପଣ କେମିତି ହେଲେ ରୋଗୀକୁ ବଞ୍ଚାନ୍ତୁ । ଆପଣଙ୍କ ଛଡ଼ା ଆମକୁ ଆଉ ଏଥିରେ କେହି ସାହାଯ୍ୟ କରି ପାରିବ ନାହିଁ । ଏହା ଆମ ପାଇଁ ଏକ ସମ୍ମାନର ପ୍ରଶ୍ନ ହୋଇ ପଡ଼ିଚି । ଏତିକିବେଳେ ମେନେଜିଂ ଡାଇରେକ୍ଟର ତାଙ୍କ ପାଖକୁ ଡାକି କହିଲେ ଏଥିପାଇଁ ଯେତେ ପଇସା ଖର୍ଚ୍ଚ ହେଉ ପଛେ ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ଏଥିପାଇଁ ମନ୍ତ୍ରୀଙ୍କ ପାଖରୁ ସ୍ପେଶାଲ ମଞ୍ଜୁରୀ ଆଣିଦେବି । ଯଦି ବାହାରୁ କୌଣସି ଡାକ୍ତର କିମ୍ବା ଔଷଧ ଦରକାର ତାର ବ୍ୟବସ୍ଥା ମଧ୍ୟ କରନ୍ତୁ । ସେ ତାଙ୍କ କାନ୍ଧରେ ହାତ ରଖି କହିଲେ କଥାଟା ମନ୍ତ୍ରୀଙ୍କ କାନକୁ ଯାଇ ସାରିଲାଣି । ହୁଏତ ସେ ନିଜେ ଆସି ଯାଇ ପାରନ୍ତି ।

ଚିଫ୍ ମେଡିକାଲ ଅଫିସର ସବୁ ଶୁଣିଲା ପରେ ତରତରରେ ଉଠି ଭିତରକୁ ପଶି ଯାଉଥିଲାବେଳେ ପଚାରିଲେ ରୋଗୀଟି କିଏ ?

ମେନେଜିଂ ଡାଇରେକ୍ଟର ଉତ୍ତର ଦେଲେ ରୋଗୀଟା କିଏ ସେଇଟା ଏବେ ବଡ଼ ପ୍ରଶ୍ନ ନୁହେଁ ଡକ୍ଟର । ଯାହା ଆମକୁ ବେଶୀ ଚିନ୍ତିତ ଓ ବ୍ୟଥିତ କରିଛି ତାହା ହେଉଛି ତାର ହେଇଚି କଅଣ ?

ଡାକ୍ତର ସେଇଠି ଅଟକି ଗଲେ ଏବଂ କହିଲେ, ଓହୋ ରୋଗଟା ତେବେ ଏ ଯାଏ ଚିହ୍ନା ପଡ଼ି ନାହିଁ ?

ସମସ୍ତେ ଏକାସ୍ୱରରେ କହିଲେ ନା ।

ସେ ସେଇଠି ଠିଆ ହେଲେ ଏବଂ କଥାଟାକୁ ଟିକିଏ ଚିନ୍ତା କରି କହିଲେ ତେବେ ତ ଏବେ ଆମ୍ଭର ସବୁ ବିଭାଗୀୟ ମୁଖ୍ୟଙ୍କୁ ଏଠାକୁ ଆଣିବାକୁ ପଡ଼ିବ । ସେ ସଂଗେ ସଂଗେ ପାଖରେ ଠିଆ ହେଇଥିବା ଜଣେ ଜୁନିଅର ଡାକ୍ତରଙ୍କୁ କହିଲେ ଶୀଘ୍ର ସବୁ ବିଭାଗୀୟ ମୁଖ୍ୟଙ୍କୁ ଆସିବାକୁ ଖବର ଦିଅ ।

ଜୁନିଅର ପଚାରିଲେ, ସ୍ତ୍ରୀରୋଗ ବିଶେଷଜ୍ଞ ?

ମୁଖ୍ୟ ଡାକ୍ତର ଏ କଥାର ଉତ୍ତର ଦେଇ ନ ପାରି ମେନେଜିଂ ଡାଇରେକ୍ଟରଙ୍କୁ ଅନେଇଲେ । ମେନେଜିଂ ଡାଇରେକ୍ଟର ଏକଜିକ୍ୟୁଟିଭ୍ ଡାଇରେକ୍ଟରଙ୍କୁ ଅନେଇଲେ । ଏକ୍‌ଜିକ୍ୟୁଟିଭ୍ ଡାଇରେକ୍ଟର ତାଙ୍କ ପାଖରେ ଠିଆ ହୋଇଥିବା ଡାକରେକ୍ଟର (ପ୍ରଡକ୍ସନ)ଙ୍କୁ ଦେଖିଲେ । ସେ ଜଣେ ଚତୁର ବ୍ୟକ୍ତି । ମନ୍ତ୍ରୀଙ୍କ ଲୋକ ହିସାବରେ ନୂଆ ଏପଏଣ୍ଟମେଣ୍ଟ ପାଇଛନ୍ତି । ଏବେ ଏବେ ତିନିଟା ଫରେନ୍ ଦେଶରୁ ଟ୍ରେନିଂ ମଧ ନେଇ ଫେରିଛନ୍ତି । ତେଣୁ ଅନ୍ୟାନ୍ୟ ସମସ୍ତ ଅଫିସରଙ୍କ ଅପେକ୍ଷା ତାଙ୍କର ଜ୍ଞାନ ଓ ବୁଦ୍ଧିକୁ ସମସ୍ତେ ତାରିଫ କରନ୍ତି । ସେ ତୁରନ୍ତ ଉତ୍ତର ଦେଲେ, 'ଆପଣ ଆଉ ଆମକୁ କିଛି ପଚାରନ୍ତୁ ନାହିଁ ଡକ୍ଟର । ଟେକ୍ ଇଓର ଓନ୍ ଡିସିସନ୍ ।'

ସାର୍, ଆନାସ୍ଥେସିଆ ମୁଖ୍ୟଙ୍କୁ ଡାକିବି ? ଜୁନିଅର ଡାକ୍ତର ପୁଣି ଥରେ ତାଙ୍କ ଚିଫ୍‌ଙ୍କୁ ପ୍ରଶ୍ନ କଲେ ।

ଏଥର ମେନେଜିଂ ଡାଇରେକ୍ଟର ନିଜ ତରଫରୁ କହିଲେ, 'ରୋଗୀତ ଏବେ ମଧ କୋମା ଷ୍ଟେଜ୍‌ରେ ଅଛି । ଆଉ ଆନାସ୍ଥେସିଆର ଆବଶ୍ୟକତା କଅଣ ? ତେବେ ଆପଣ ଚିନ୍ତା କରନ୍ତୁ ।'

ଅଳ୍ପ ସମୟ ଭିତରେ ସେଠାରେ ହସ୍‌ପିଟାଲ୍‌ର ସବୁ ବିଭାଗୀୟ ମୁଖ୍ୟ ଆସି ପହଞ୍ଚିଲେ । ମୁଖ୍ୟ ଡାକ୍ତର ସେମାନଙ୍କୁ କହିଲେ ଆପଣମାନେ ପ୍ରଥମେ ରୋଗୀକୁ ପରୀକ୍ଷା କରନ୍ତୁ ଏବଂ ମୋତେ ଆସି ରିପୋର୍ଟ କରନ୍ତୁ । ତାପରେ ସେ ଅପେକ୍ଷାରତ ଅଫିସରମାନଙ୍କୁ କହିଲେ ଆପଣମାନେ ଯାଇ ସେ ଲାଉଜରେ ବସନ୍ତୁ ।

ଏତିକବେଳେ ଦୁଇତିନିଜଣ ୟୁନିୟନ ନେତା ଆସି ସେଠି ପହଞ୍ଚିଲେ । ସେମାନେ କହିଲେ ମନ୍ତ୍ରୀ ମହୋଦୟ ଆସି ପହଞ୍ଚିଗଲେଣି । ସେ ସାଥିରେ ଦୁଇ ତିନିଜଣ ବଡ଼ ବଡ଼ ଡାକ୍ତର ମଧ ନେଇ ଆସିଛନ୍ତି । ରୋଗୀ ଏଠି ଭଲ ହୋଇ ନ ପାରିଲେ ସେ ତାକୁ ଫରେନ୍ ନେଇଯିବେ ।

ସେମାନେ ମଣିଷ ଡାକ୍ତର ? ମୁଖ୍ୟ ଡାକ୍ତର ପଚାରିଲେ ।

ନେତାଜଣକ ଚୁପ୍ ରହିଲେ । ମୁଖ୍ୟ ଡାକ୍ତର ତାଙ୍କ ପିଅନକୁ ଡାକିଲେ ଏବଂ କହିଲେ ମନ୍ତ୍ରୀ ମହୋଦୟ ଓ ତାଙ୍କ ଲୋକମାନେ ଆସିଲେ ସେମାନଙ୍କୁ ସେ ଲାଉଜ ପାଖରେ ଥିବା ଛୋଟ ରୁମଟିରେ ବସେଇ ଦବୁ । ତାପରେ ସେ ତାକୁ ପାଖକୁ ଡାକି ଆଣି କାନ ପାଖରେ କହିଲେ ସେ ରୁମ୍ ଭିତରକୁ ଯେମିତି ଆଉ କେହି ନ ଯାଏ । ସବୁଠାରୁ ଭଲ ହେବ ତୁ ଯଦି ତାଙ୍କୁ ରୁମ୍ ଭିତରେ ଭର୍ତ୍ତି କରି ବାହାରୁ ତାଲା ପକେଇ ଦଉ । କେହି ଜାଣିବେ ନାହିଁ ଯେ ତା ଭିତରେ କେହି ଜଣେ ଅଛି ବୋଲି ।

ପିଅନ ତାଙ୍କୁ ଟିକେ ଚାହିଁଲା ଏବଂ କହିଲା, ବୁଝିଗଲି । ଆପଣ ନିଶ୍ଚିନ୍ତରେ ଯାଆନ୍ତୁ ।

ଏତିକିବେଳେ ବାହାରେ ଭୀଷଣ ପାଟି ତୁଣ୍ଡ ଶୁଣାଗଲା । କେହି ଜଣେ ଆସି କହିଲା ହଜାର ହଜାର ସଂଖ୍ୟାରେ ଶ୍ରମିକମାନେ ଆସି ଗଲେଣି । ସେମାନଙ୍କୁ ଗେଟ୍ ବାହାରେ ଅଟକାଇ ଦିଆଯାଇଚି । ସେମାନେ ଉତ୍ତ୍ୟକ୍ତ ଥିଲା ପରି ଜଣାପଡୁଛି । ସେମାନେ କହୁଛନ୍ତି ଆମକୁ ବାଟ ଛାଡ଼ । ଆମେ ରୋଗୀକୁ ଖାଲି ଟିକିଏ ଦେଖିବୁ । ତୁମେ ଯଦି ତାକୁ ଭଲ କରି ନ ପାରିବ ତେବେ ତାକୁ ଆମକୁ ଦେଇ ଦିଅ ।

ମୁଖ୍ୟ ଡାକ୍ତର ଧୀର ପଦକ୍ଷେପରେ ସେମାନଙ୍କ ପାଖକୁ ଆଗେଇ ଗଲେ ଏବଂ କହିଲେ ଆପଣମାନେ ମୋତେ ବ୍ୟସ୍ତ ହୁଅନ୍ତୁ ନାହିଁ । ସବୁ ରୋଗର

ଚାବି ଆମ ହାତରେ ଅଛି । ଆମେ ଭଲ କରି ନ ପାରିଲେ ଆଉ କିଏ କରିବ ? ରୋଗଟାତ ଜଣା ପଡ଼ିଗଲାଣି । ତାର ଔଷଧ ମଧ ତିଆରି ସରିଲାଣି । ରୋଗ ଭଲ ହେବାକୁ ଆଉ କେତେ କାଳ ? ଆପଣ ମାନେ ଟିକିଏ ଧୈର୍ଯ୍ୟ ଧରନ୍ତୁ ।

ତାପରେ ସେ ତାଙ୍କ ବିଭାଗୀୟ ମୁଖ୍ୟମାନଙ୍କୁ ଡାକି କହିଲେ ଆପଣମାନେ ଏବେ ଘରକୁ ଯାଆନ୍ତୁ ।

ଏତିକିବେଳେ ସେ ପିଅନ୍‌ଟି ସେ ଆଡୁ ଆସିଲା ଏବଂ ଚାବିଟିଏ ମୁଖ୍ୟ ଡାକ୍ତରଙ୍କ ହାତକୁ ବଢ଼େଇ ଦେଇ କହିଲା ସାର ନିଅନ୍ତୁ । କାମ ସରିଯାଇଚି ।

ମୁଖ୍ୟ ଡାକ୍ତର ଚାବିଟି ପକେଟ୍‌ରେ ପୂରେଇଲେ । ତାଙ୍କ ମୁହଁରେ ଚେନାଏ ହସ ଉକୁଟି ଉଠୁଥିଲା ।

ବାହାରେ ପାହୁଥିବା ରାତିର ରଙ୍ଗ ଫୁଟି ଉଠୁଥିଲା ।

(ନାଗରିକ, ୧ମ ବର୍ଷ, ପ୍ରଥମ ସଂଖ୍ୟା)

***

# ନପୁଂସକମାନଙ୍କ ରାଜ୍ୟରେ

ପ୍ରଧାନମନ୍ତ୍ରୀ ସେଦିନ ଖବର କାଗଜଟି ହାତରେ ଧରି ଅଟକି ଗଲେ ତାଙ୍କ ଆଖି ସେ ଖବରଟି ଉପରେ ଲାଖି ରହିଲା । କେଜାଣି କାହିଁକି ସେ ଖବରଟି ବାରମ୍ବାର ପଢ଼ିବାକୁ ଲାଗିଲେ ଏବଂ ଯେତେଥର ପଢୁଥାଆନ୍ତି ସେତିକି ତାଙ୍କ ମୁଖ ମଣ୍ଡଳରେ ଗୋଟିଏ ଗଭୀର ଚିନ୍ତାର ରେଖା ଫୁଟି ଉଠୁଥାଏ । ସେ ତାଙ୍କ ପାଖରେ ଥିବା କମ୍ପ୍ୟୁଟରରେ ହାତ ମାରିଲେ । ସେଥିରେ ସେ ଯାହା ଦେଖିଲେ ସେଥିରେ ତାଙ୍କ ମନ ଅଧିକ ଭାରକ୍ରାନ୍ତ ହେଇ ଉଠିଲା । କ୍ଷଣକୁ କ୍ଷଣ ସେ ଯେମିତି ବଡ଼ ଆଶ୍ୱସ୍ତ ବୋଧ କଲେ ।

ସେ ଚଉକିରେ ସିଧା ହେଇ ବସିଲେ ଏବଂ ତାପରେ ଆଖି ବୁଜି କଅଣ ଚିନ୍ତା କରିବାକୁ ଲାଗିଲେ ।

ପ୍ରଧାନମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ବଡ଼ ବ୍ୟସ୍ତ ହେଇପଡ଼ିଲେ । ତାଙ୍କର ପ୍ରଧାନମନ୍ତ୍ରୀଙ୍କ ସହିତ ବହୁ ଦିନର ସମ୍ପର୍କ । ସେ କବାଟର ପିପ୍ ହୋଲ ଦେଇ ଯା ଭିତରେ ତିନି ଚାରିଥର ଦେଖି ସାରିଲେଣି । ଏତେ ଗଭୀର ଚିନ୍ତାମଗ୍ନ ଥିବା ସେ ପ୍ରଧାନମନ୍ତ୍ରୀଙ୍କୁ କେବେ ଦେଖି ନାହାନ୍ତି । ଫାଇଲ ଡିସ୍‌ପୋଜ କରିବାରେ ସେ ସିଦ୍ଧ ହସ୍ତ । ଖାଲି ଦେଖନ୍ତି ଓ ତାପରେ ସନ୍ତକଟିଏ କରି ଦେଇ ଅନ୍ୟ ପାଖରେ ଥୋଇ ଦିଅନ୍ତି । ଆବଶ୍ୟକ ପଡ଼ିଲେ ସେ କିଛି ପଦେ ଦି'ପଦ ସେଥିରେ ଲେଖନ୍ତି । ନଚେତ୍ ସେତକ ମଧ ଦରକାର ହୁଏ ନାହିଁ । ତାଙ୍କ ଅଫିସରେ ଗୋଟିଏ ଟ୍ରେରେ ଅବଶ୍ୟ କିଛି ଜାତୀୟ ସମ୍ବାଦପତ୍ର ଯଥା 'ଟାଇମ୍‌ସ ଅଫ୍ ଇଣ୍ଡିଆ', 'ଷ୍ଟେଟସ୍ ମ୍ୟାନ' 'ହିନ୍ଦୁ' ଇତ୍ୟାଦି ଇତ୍ୟାଦି ସବୁବେଳେ ଥାଏ । ଫାଇଲ ଦେଖୁ ଦେଖୁ ଥକି ଗଲେ ସେ ନିଜ ମନକୁ ଟିକିଏ ହାଲୁକା କରବାକୁ ବେଳେବେଳେ ସେଇ ଖବରକାଗଜ ଦେଖନ୍ତି । ନଚେତ୍ ଆବଶ୍ୟକ ହୁଏ ନାହିଁ । ସାଧାରଣତଃ ଏସବୁ ଦରକାର ହୁଏ ରାତି ଦଶଟା ପରେ । କିନ୍ତୁ ଆଜି ଏମିତି କଅଣ ହେଲା ଯେ ପ୍ରଧାନମନ୍ତ୍ରୀ ଖବରଟା ଦେଖୁ ଦେଖୁ ଚିନ୍ତାମଗ୍ନ ହେଇଗଲେ ?

ପ୍ରାଇଭେଟ୍ ସେକ୍ରେଟାରୀ ଭାବିବାକୁ ଲାଗିଲେ । ମନ୍ତ୍ରୀମଣ୍ଡଳକୁ ଏବେ ନିକଟ ଭବିଷ୍ୟତରେ କୌଣସି ବିପଦ ନାହିଁ ବୋଲି ଏକ ଦୁଇ ଦିନ ତଳେ ପାର୍ଟି ଅଫିସରୁ ଗୋଟିଏ ବିବୃତ୍ତି ଦିଆଯାଇଥିଲା । ତାହାତ ଖୁବ୍ ବଡ଼ ବଡ଼ ଅକ୍ଷରରେ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଚି । ଇଲେକ୍ଟ୍ରୋନିକ ମିଡ଼ିଆମାନେ ତାକୁ ନିୟମ ଅନୁସାରେ ତିନିଦିନ ଯାକ ତିନିଥର ଲେଖାଏଁ ପ୍ରଚାର କରି ସାରିଛନ୍ତି । ତାଛଡ଼ା ପ୍ରଧାନମନ୍ତ୍ରୀଙ୍କ ଏକାନ୍ତ ବିଶ୍ୱସ୍ତ ଜ୍ୟୋତିଷ ସମ୍ରାଟ, ପଦ୍ମଶ୍ରୀ ଶ୍ରୀଯୁକ୍ତ ରାମ ଲଖଣ ଶର୍ମା, ଜ୍ୟୋତିଷ ଶିରୋମଣି ଯେ କି ପ୍ରତି ସପ୍ତାହରେ ଶନିବାର ଦିନ ମନ୍ତ୍ରୀମଣ୍ଡଳର ସ୍ଥାୟିତ୍ୱ ଉପରେ ବିଶେଷ ଗଣନା କରି ଯେଉଁ ଉପଦେଶ ଦିଅନ୍ତି ସେଇଟା ମଧ ସେ ଆଜି ପାଇଛନ୍ତି । ପ୍ରଧାନମନ୍ତ୍ରୀ ତାକୁ ମଧ ଦେଖିଛନ୍ତି । ତାଛଡ଼ା ତାଙ୍କ ସ୍ୱାସ୍ଥ୍ୟ ମଧ ଏକଦମ୍ ଠିକ୍ ଅଛି । ଆଜି ସକାଳେ ଆସିଥିବା ବିଶେଷଜ୍ଞଦଳଙ୍କ ସତନ୍ତ୍ର ବୁଲେଟିନ୍ ମଧ ସେ ଦେଖିଛନ୍ତି । ଖାଲି ବେଳେବେଳେ ତାଙ୍କ ଡାହାଣ ଆଖିଟା କାହିଁକି ଡେଉଁଚି ତା'ରି ଉପରେ ଅଧିକ ପରୀକ୍ଷାର ଆବଶ୍ୟକତା ରହିଚି ବୋଲି ଅଲ ଇଣ୍ଡିଆ ଇନ୍‌ସଟିଚିଉଟ୍‌ରୁ ଆସିଥିବା ଚକ୍ଷୁ ବିଶେଷଜ୍ଞ ଦଳ ଯେଉଁ ରିପୋର୍ଟ ଦେଇଛନ୍ତି ତାକୁ ସେ ସ୍ୱାସ୍ଥ୍ୟମନ୍ତ୍ରୀଙ୍କପାଖକୁ ପଠେଇ ଦେଇଛନ୍ତି । ସ୍ୱାସ୍ଥ୍ୟମନ୍ତ୍ରୀ ମଧ ଏଇ ସନ୍ଧ୍ୟାରେ ଟେଲିଫୋନ କରି ଜଣେଇଛନ୍ତି ଯେ ସେ ଏଥିପାଇଁ ଆମେରିକାରୁ ଗୋଟିଏ ବିଶେଷଜ୍ଞ ଦଳ ଆସିବାକୁ ରିକ୍ୟୁଜିସନ୍ ପଠେଇ ସାରିଛନ୍ତି । ଏଥିପାଇଁ ଅର୍ଥ ମନ୍ତ୍ରଣାଳୟକୁ ମଧ ଏକ କୋଟି ତିରିଶି ଲକ୍ଷ ପଚିଶି ହଜାର ଟଙ୍କା ମଞ୍ଜୁର କରିବାକୁ ଲେଖିଚନ୍ତି ବୋଲି ମଧ ଜଣେଇଚନ୍ତି । ସେ ଫୋନ୍‌ରେ ଏକଥା ମଧ କହିଲେ ଯେ ଯଦି ପ୍ରଧାନମନ୍ତ୍ରୀ ପଚାରନ୍ତି ଏତେ ଟଙ୍କା କାହିଁକି ଖର୍ଚ୍ଚ ହେବ ତେବେ ଆପଣ କହିବେ ଯେ ଅତି ନିକଟରେ ଆମ ଦଳରେ ଜଏନ କରିଥିବା ଜଣେ ସାଂସଦଙ୍କ ଆଖିରୁ ସବୁବେଳେ ନେଞ୍ଜରା ବୋହୁଥିଲ । ତାକୁ ଏଠାରେ କୌଣସି ଡାକ୍ତର ଭଲ କରି ନ ପାରିବାରୁ ତାଙ୍କ ପାଇଁ ଆମେରିକାରୁ ଯେଉଁ ଔଷଧ ପତ୍ର ଅଣାଗଲା ତା ପାଇଁ ମୋଟାମୋଟି ଦଶ ହଜାର ଡଲାର ଖର୍ଚ୍ଚ ହେଇଚି । ସେଇ ଅନୁସାରେ ପ୍ରଧାନମନ୍ତ୍ରୀଙ୍କ ଆଖି ଡେଇଁବା ରୋଗର ଚିକିତ୍ସା ପାଇଁ କିଛି ଅଧିକ ଖର୍ଚ୍ଚତ ନିଶ୍ଚୟ ହେବ ।

ବ୍ୟକ୍ତିଗତ ଶଚିବ ବ୍ୟସ୍ତ ହେଇ ପଡ଼ିଲେ । ଯେତେବେଳେ ପ୍ରଧାନମନ୍ତ୍ରୀଙ୍କ ବ୍ୟକ୍ତିଗତ ସହାୟକ ଆସି ପୁଣି ଥରେ ଖବର ଦେଲେ ଯେ ଏବେ ପ୍ରଧାନମନ୍ତ୍ରୀ

ଏକ ଲୟରେ ଛାତକୁ ଚାହିଁ ରହିଚନ୍ତି । ସେ ଭାବିଲେ ପ୍ରଧାନମନ୍ତ୍ରୀ ତ କେବେବି ଛାତକୁ ଦେଖନ୍ତି ନାହିଁ । ସେ କଅଣ ଅନ୍ୟମାନଙ୍କ ପରି ଅର୍ଡିନାରୀ ପ୍ରଧାନମନ୍ତ୍ରୀ ହେଉଚନ୍ତି କି ? ତାଙ୍କ ଜ୍ଞାନ କେତେ ଗଭୀର । ନଖ ଦର୍ପଣରେ ସବୁ ଦେଖୁଥିବା ପ୍ରଧାନମନ୍ତ୍ରୀ କେବେବି ଛାତକୁ ଦେଖିବେ ନାହିଁ । ଛାତରେ ବା କଅଣ ଅଛି ? ତାଙ୍କ ମୁଣ୍ଡ ଉପରେ ଥିବା ଛାତଟା ଯେ କେତେ ଶକ୍ତ ସେକଥା କଅଣ ସେ ଜାଣିନାହାନ୍ତି ?

ସେ ପ୍ରଧାନମନ୍ତ୍ରୀଙ୍କୁ ନିଜେ ଯାଇ ଦେଖି ଆସବାକୁ ଇଛା କଲେ । କିନ୍ତୁ ବିନା କାରଣରେ ଭିତରକୁ ଯିବେ କେମିତି ? ତେଣୁ ଗୋଟିଏ ଫାଇଲ ଧରି ସେ ସନ୍ତର୍ପଣରେ ଭିତରକୁ ପ୍ରବେଶ କଲେ ଏବଂ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କଲା ଭଳି ସ୍ଥାନରେ ଠିଆ ହେଲେ ।

ପ୍ରଧାନମନ୍ତ୍ରୀ ଜାଣିଲେ ସେକ୍ରେଟାରୀ ଆସିଛନ୍ତି । ସେ ତାଙ୍କ ଆଡ଼କୁ ନ ଅନେଇ ହାତ ଠାରି ଦେଲେ-ଅର୍ଥାତ ଫାଇଲ ଆଣ ।

ସେକ୍ରେଟାରୀ ଫାଇଲ ରଖିଲେ । ପ୍ରଧାନମନ୍ତ୍ରୀ ଯେତେବେଳେ ଦେଖିଲେ ଯେ ସେ ସେଥିରେ ଆଗରୁ ଦସ୍ତଖତ କରି ସାରିଛନ୍ତି ସେ ସେକ୍ରେଟାରୀଙ୍କୁ ଅନେଇଲେ । ସେକ୍ରେଟାରୀ ନିଜର ଭୁଲ ବୁଝି ପାରିଲେ । ସେ ଲାଜରେ ସଙ୍କୋଚିତ ହେଇଗଲେ । ଏତେବଡ଼ ଗୁରୁତର ଅପରାଧ ସେ କେବେ କରି ନାହାନ୍ତି । ତାଙ୍କ ମୁହଁ ତଳକୁ ହେଇଗଲା । ଏଆଡ଼େ ପ୍ରଧାନମନ୍ତ୍ରୀ ହୁଏତ ବୁଝି ପାରିଲେ ଯେ ସେକ୍ରେଟାରୀ କଅଣ ପାଇଁ ବିନା କାମରେ ଭିତରକୁ ପଶି ଆସିଲେ ।

ସେ କହିଲେ ମାନବସମ୍ବଳ ମନ୍ତ୍ରୀଙ୍କୁ ଡାକ ।

ସେକ୍ରେଟାରୀ ଦୃଢ଼ ପଦକ୍ଷେପରେ ସେଠୁ ବାହାରି ଆସିଲେ । ତାଙ୍କ ସ୍ୱାସ୍ଥ୍ୟ କଥା ତାଙ୍କୁ ଆଉ ପଚାରିବାକୁ ତାଙ୍କର ମୋଟେ ମନେ ପଡ଼ିଲାନି । ତାଛଡ଼ା ଆସିଲାବେଳେ ମଧ ସେ ଦେଖିଲେ ଯେ ପ୍ରଧାନମନ୍ତ୍ରୀଙ୍କ ହାତରେ ଏବେ ମଧ ସେହି ଖବରକାଗଜଟା ରହିଚି । ସେ ତେଣୁ କବରକାଗଜ, କମ୍ପ୍ୟୁଟର ଓ ଛାତ ସହିତ ମାନବ ସମ୍ବଳ ମନ୍ତ୍ରୀଙ୍କର କି ସମ୍ପର୍କ ରହିଛି କିଛି ବୁଝି ପାରୁ ନଥିଲେ । କିନ୍ତୁ ପ୍ରଧାନମନ୍ତ୍ରୀଙ୍କର ବ୍ୟକ୍ତିଗତ ସଚିବ ହିସାବରେ ସେ ଏସବୁ ସାଙ୍କେତିକ ଚିହ୍ନର ଅର୍ଥ ବୁଝିବା କଥା ନଚେତ୍ ସେ ଅଫିସ୍ ଚଳେଇବେ କେମିତି ? ଏଇନେ ମାନବ ସମ୍ବଳ ମନ୍ତ୍ରୀ ଯଦି ପଚାରିବେ କୋଉ ବିଷୟରେ

ପ୍ରଧାନମନ୍ତ୍ରୀ ଡାକୁଚନ୍ତି, ସେ କଅଣ କହିବେ ? ବହୁ ଭୟ, ଆଶଙ୍କା ଓ ଅନିଶ୍ଚିତା ଭିତରେ ଥାଇ ସେ ମାନବ ସମ୍ବଳ ମନ୍ତ୍ରୀଙ୍କୁ ଫୋନ୍ ଲଗେଇଲେ ।

କଥାରେ ଅଛି 'ଯୋଉଠି ବଥା ସେଇଠି କଥା' । ସେ କହିଲେ ବିଷୟଟା ନ ଜାଣିଲେ ମୁଁ ତାଙ୍କ ସାମନାରେ ଅପ୍ରସ୍ତୁତ ହେବି । ଆପଣ ଯଦି ଜାଣି ନାହାନ୍ତି ତେବେ ତାଙ୍କର ପୂର୍ବାପର ଭାବଟା ମୋତେ ଟିକିଏ କହନ୍ତୁ ।

ସେକ୍ରେଟାରୀ ସେଇ କଥା କହିଲେ । ଆଉ ଥରେ ଦୋହରାଇଲେ । ଖବର କାଗଜର ନାଁ ମଧ୍ୟ ମୁଁ ଜାଣି ନାହିଁ । ତାପରେ କମ୍ପ୍ୟୁଟର । ତା ପରେ ଫାଙ୍କା ଆଖିରେ ଛାତକୁ ଅନେଇଲେ । ତାପରେ ଆଖି ବୁଜି ଦେଲେ । ୟାଠୁ ଅଧିକ କିଛି ମୁଁ ଜାଣି ନାହିଁ ।

ସେତେବେଳେ ସେ କେଉଁ ଫାଇଲ ଦେଖୁଥିଲେ ? କହି ପାରିବିନି । କିନ୍ତୁ ଖବରକାଗଜଟିଏ ଥିବାର ଦେଖିଛି । ସେତେବେଳେ ଆଉ କେହି ଫୋନ କରିଥିଲେ ? ମୋ ମାଧ୍ୟମରେ ଆସିନି । ଯଦି ସେଲ୍ ଫୋନ୍‌ରେ ଆସିଥିବ କହିପାରିବିନି ।

ଠିକ୍ କେତେଟା ସମୟରେ ସେ ଚିନ୍ତାମଗ୍ନ ହେଇ ଗଲେ ? କହି ପାରିବିନି । ତେବେ ମୁଁ ୯.୪୫ ମିନିଟ୍ ୬ ସେକେଣ୍ଡରେ ତାଙ୍କୁ ଚିନ୍ତାମଗ୍ନ ଥିବାର ପ୍ରଥମେ ଦେଖିଲି ।

ତା ପରେ ?

ସେ ଛାତକୁ ଅନେଇଲେ ଏବଂ ତା ପରେ ପରେ ଆଖି ବୁଜି ଚିନ୍ତାରେ ନିମଗ୍ନ ହେଇଗଲେ ।

ଆଖି ବୁଜିଦେଲେ ? ଠିକ୍ ଜାଣିଛନ୍ତି ?

ଆଜ୍ଞା ହଁ, ମୁଁ ତ ସେଇଆ ଦେଖିଚି ।

ବୁଝିଗଲି ।

ସାର୍, କଅଣ ବୁଝିଲେ ?

ଏଇଟା ପାକିସ୍ଥାନ ବିଷୟର କଥା । ଏହାର ଉତ୍ତର ପାଇଁ ମୋତେ ଦେଶରକ୍ଷା ଏବଂ ବୈଦେଶିକ ବିଭାଗ ମନ୍ତ୍ରୀଙ୍କ ସହିତ ପରାମର୍ଶ ପରେ ଯାହା କିଛି ଠିକ୍ କରିବାକୁ ହେବ । ଏମିତି ଖାଲି ଚାଲି ଗଲେତ ହେବ ନାହିଁ ।

ସାର, ତେବେ ତ ସର୍ବନାଶ ।

କାହିଁକି ?

ଦେଶରକ୍ଷା ମନ୍ତ୍ରୀ ଏଇ ସମୟରେ ବିଜ୍ଞାନ ଭବନରେ । ଆମେରିକାରୁ ଆସିଥିବା ଡେଲିଗେଟ୍‌ମାନଙ୍କୁ 'ସମ୍ପୂର୍ଣ୍ଣ କ୍ରାନ୍ତି' ବିଷୟରେ ଭାଷଣ ଦେଉଚନ୍ତି । ସେତ ଏବେ ଫ୍ରି ହେବାକୁ ଆହୁରି ଘଣ୍ଟାଏରୁ ବେଶୀ ସମୟ ଲାଗିବ ଏବଂ ବୈଦେଶିକ ମନ୍ତ୍ରୀ ଏବେ ଇଂଲଣ୍ଡର ହାଇ କମିଶନ୍‌ଙ୍କ ସ୍ୱାଙ୍କର ପଚାଶତମ ଜନ୍ମ ଜୟନ୍ତୀ ପାର୍ଟିରେ ଯୋଗ ଦେଉଚନ୍ତି । ତାଙ୍କୁ ମଧ ଆପଣ ପାଇବେ ନାହିଁ ।

ହାୟ ରାମ ! ଏବେ ତା ହେଲେ କଅଣ ହେବ ?

କିନ୍ତୁ ସାର୍, ଆପଣ କାହିଁକି ଭାବୁଚନ୍ତି ଯେ ସେ ପ୍ରଶ୍ନଟା ପାକିସ୍ଥାନ ସମ୍ପର୍କୀତ ? ସେମିତି ହେଇଥିଲେ ସେ ଆପଣଙ୍କୁ କାହିଁକି ଖୋଜନ୍ତେ ?

ଆପଣ ଜାଣି ନାହାନ୍ତି ? ସେ ଆଖି ବୁଜିଲେ ପାକିସ୍ଥାନ କଥା ଚିନ୍ତା କରନ୍ତି । ତେବେ ଏଥିରେ ମୋତେ ଯୋଡ଼ିବାର ଅର୍ଥ ପ୍ରଶ୍ନଟା ଚିଷୟ ପାକିସ୍ଥାନରେ ଜେତେ ବେକାର ଅଛନ୍ତି ଏବଂ ଆମର କେତେ । ଲୋକ ସଂଖ୍ୟା ଅନୁପାତରେ କାହାର କେତେ ? ଏମିତିକା ଗୋଟେ କିଛି ହେଇଥିବ ବୋଲି ମୋର ଅନୁମାନ । କିମ୍ବା ଏମିତି ବି ହେଇପାରେ, ଆମ ବଜେଟ୍‌ରୁ କିଛି କାଟି ଡିଫେନ୍‌ସ ବଜେଟ୍‌କୁ ଦିଆଯାଇପାରେ । କାରଣ ସେଠିକା ଆବଶ୍ୟକତା ଏବେ ବେଶୀ । ସମସ୍ତେ ଏବେ ସେ ମନ୍ତ୍ରଣାଳୟ ଉପରେ ବେଶୀ ଗୁରୁତ୍ୱ ଦେଉଚନ୍ତି ।

ସେକ୍ରେଟାରୀ ଆଉ ଧୈର୍ଯ୍ୟ ଧରି ରହି ପାରିଲେନି । ସେ କହିଲେ କଥାଟା ଯା ହେଉନା କାହିଁକି ଆପଣ ଶୀଘ୍ର ଆସନ୍ତୁ । ମୁଁ ଅନ୍ତତଃ ଆସନ୍ନ ବିପଦରୁ ରକ୍ଷା ପାଇ ଯାଏଁ ।

ମାନବ ସମ୍ବଳମନ୍ତ୍ରୀ କହିଲେ ଯେତେ ଶୀଘ୍ର ଗଲେବି ପନ୍ଦର କିଲୋମିଟର ରାସ୍ତାକୁ କୋଡ଼ିଏ ମିନିଟ ନିଶ୍ଚୟ ଲାଗିବ । ଟ୍ରାଫିକ୍ ଜାମ ଏବେ ମଧ ଅଛି । ତେଣୁ ଆପଣ ଗୋଟେ କାମ କରନ୍ତୁ । ତାଙ୍କୁ ଟିକିଏ ଗୁଡ଼ମୁଡକୁ ଆଣିବା ପାଇଁ ଗୋଟାଏ କପ୍ ଲିମୋନ୍ ଟି ଦେଇ ଦିଅନ୍ତୁ । ସେଇଟା ତାଙ୍କର ପ୍ରିୟ ପାନୀୟ ।

ସେ ହୁଏତ ଆହୁରି କିଛି କହିବାକୁ ଯାଉଥିଲେ । ସେକ୍ରେଟାରୀ କହିଲେ, ସାର ବୋଧେ ଜାଣି ନାହାନ୍ତି ସେ ଆଉ ଖଟା ମୋଟେ ଖାଉ ନାହାନ୍ତି ।

କେବେଠୁଁ ?

ଏଇ ସାତ ଆଠଦିନ ହେଲା । ସେଥର ସେ ଯେଉଁ ଲକ୍ଷ୍ନୌ ଯାଇଥିଲେ ସେଠି ଜଣେ ତାନ୍ତ୍ରିକ ତାଙ୍କୁ ତେଉଁରିଆଟିଏ ଦେଇ କହିଚି ଯେ କୌଣସି ପ୍ରକାର ଖଟା ତିନି ସପ୍ତାହ ପାଇଁ ସମ୍ପୂର୍ଣ୍ଣ ବନ୍ଦ । ତେବେ ସେ ଯା ହେଉ, ସେଦିନ ମାନବସମ୍ବଳ ମନ୍ତ୍ରୀ ପ୍ରଧାନମନ୍ତ୍ରୀଙ୍କଠାରେ ଯାଇ ପହଞ୍ଚିଲା ବେଳକୁ ରାତି ୧୦ । ସେ ପହଞ୍ଚିଲା ମାତ୍ରେ ପ୍ରଧାନମନ୍ତ୍ରୀ ତାଙ୍କ ହାତକୁ ଖବର କାଗଜଟା ବଢ଼େଇ ଦେଲେ ଏବଂ କହିଲେ ପଢ଼ନ୍ତୁ ସେଇ ନାଲି ଗାର ଦିଆ ହେଇଥିବା ଅଂଶଟାକୁ ପଢ଼ନ୍ତୁ ।

ମନ୍ତ୍ରୀ ଦେଖିଲେ ।

କିଛି ବୁଝିଲେ 'ଓପିନିୟନ୍ ପୁଲ୍‌ରୁ' ?

ମନ୍ତ୍ରୀ ମହୋଦୟ ଫାଙ୍କା ଆଖିରେ ପ୍ରଧାନମନ୍ତ୍ରୀଙ୍କୁ ଅନେଇଲେ । ସେ ସେଥିରୁ କିଛି ବୁଝି ନ ଥିଲେ ।

କିଛି ବୁଝି ପାରିଲେନି ? ଆପଣ ଦେଖନ୍ତୁ, ଏତେ ବଡ଼ ଗୋଟାଏ ଜାତୀୟ ପ୍ରଶ୍ନ ପଚାରା ଯାଇଚି ଇଣ୍ଟର୍‌ନେଟ୍‌ରେ ଜନମତ ସଂଗ୍ରହ ପାଇଁ । ସେ ପ୍ରଶ୍ନର ଉତ୍ତରରେ କୋଡ଼ିଏ ପରସେଣ୍ଟ କହୁଚନ୍ତି Yes ୩୦ କହୁଚନ୍ତି No ଏବଂ ବାକି ୫୦ ପରସେଣ୍ଟ କହୁଚନ୍ତି Can't say । ଏଥିରୁ ଆପଣ କଅଣ ବୁଝୁଛନ୍ତି ? ବଡ଼ ବଡ଼ ଜାତୀୟ ଆନ୍ତର୍ଜାତୀୟ ପ୍ରଶ୍ନ ଉପରେ ଆମ ଦେଶର ଗୋଟାଏ ବିରାଟ ଜନସଂଖ୍ୟା ଯଦି କେବଳ 'କାଣ୍ଟ ସେ' କହନ୍ତି ଅର୍ଥାତ ଆମ ଦେଶର ପଚାଶ ଭାଗ ଲୋକ ଯଦି ଦେଶର ସମସ୍ୟା ଗୁଡ଼ିକ ବୁଝି ନ ପାରନ୍ତି ତେବେ ଆମ ପାଇଁ ଏହା ଏକ ବିପଜ୍ଜନକ ପରିସ୍ଥିତି ସୃଷ୍ଟି କରିବ ନାହିଁକି ? ଆପଣ ଆଉ ଗୋଟାଏ କଥା ଲକ୍ଷ୍ୟ କରିଚନ୍ତି ? ଆମ ଦେଶରେ ଦିନକୁ ଦିନ ଏଇ 'କାଣ୍ଟ ସେ' କହିବା ଲୋକଙ୍କ ସଂଖ୍ୟା ବଢ଼ୁଚି ଏବଂ ଅତି ଦ୍ରୁତ ଗତିରେ । ମୁଁ କମ୍ପ୍ୟୁଟରରେ ତାର ଗୋଟାଏ ହିସାବ ରଖିଚି । ଦୁଇ ବର୍ଷ ତଳେ ସେମାନଙ୍କ ସଂଖ୍ୟା ଯାହା ଥିଲା ଏବେ ତାହା ୧୫ ଗୁଣ ବଢ଼ିଚି । ତାର ଅର୍ଥ ଦିନ ଆସିବ ଯେତେବେଳେ ଏଇମାନେ ହିଁ ସଂଖ୍ୟା ଗରିଷ୍ଠ ହେବେ ଏବଂ Yes ଓ No ମାନେ ଅର୍ଥାତ ଯେଉଁମାନେ ସମସ୍ୟାଟିକୁ ଠିକ୍ ଭାବେ ବୁଝିଥିବେ ସେମାନଙ୍କ

ସଂଖ୍ୟା ଶୂନରେ ପହଞ୍ଚିବ ଏବଂ ଏଇ 'କାଣ୍ଟ ସେ' ଅର୍ଥାତ ଯେଉଁମାନେ ସମସ୍ୟାଟି କଅଣ ବୋଲି ଜାଣି ନଥିବେ ସେମାନେ ଆଗକୁ ମାଡ଼ି ଆସିବେ । ଏଥିରେ ଆମ ଦେଶ କେମିତି ଚଳିବ ?

ମନ୍ତ୍ରୀ ମହୋଦୟ ପ୍ରଧାନମନ୍ତ୍ରୀଙ୍କ ମୁହଁକୁ ହାଁ କରି ଅନେଇ ରହିଲେ । ଏତେ ସାମାନ୍ୟ ଭଳି ଦେଖାଯାଉଥିବା କଥାଟା ଭିତରେ ଯେ ଏତେ ଗୁରୁତର ସମସ୍ୟାଟିଏ ଲୁଚି ରହିଚି ଏକଥା ଚିନ୍ତା କରି ସେ ଆଶ୍ଚର୍ଯ୍ୟ ହେଇଗଲେ । ଦେଶର ଭବିଷ୍ୟତ ଯେ ଏହା ଉପରେ ନିର୍ଭର କରୁଚି ଏ କଥା ସେତେବେଳେ ବୁଝି ପାରିଲେ ।

ପ୍ରଧାନମନ୍ତ୍ରୀ ପୁଣି ଆରମ୍ଭ କଲେ । ଧରନ୍ତୁ ଇଣ୍ଟରନେଟ୍‌ରେ ଗୋଟିଏ ପ୍ରଶ୍ନ ଆସିଲା ଆମ ସମ୍ବିଧାନରେ 'ସେକୁଲାରିଜିମ୍' ଶବ୍ଦ ରହିବା ଉଚିତ୍ କି ନୁହେଁ । କିମ୍ବା ମନେ କରନ୍ତୁ ପ୍ରଶ୍ନ ଆସିଲା ଆମ ଦେଶରେ ଗଣତନ୍ତ୍ର ରହିବା ଉଚିତ୍ କି ନୁହେଁ । ଆମେ ସରକାରରେ ଥାଇ ଲୋକଙ୍କଠୁ କେବଳ ହଁ କି 'ନା' ଆଶା କରିବା କଥା । ସେଥିରୁ ଆମେ ହୁଏତ କିଛି ନିର୍ଦ୍ଦେଶ ମଧ ପାଇ ପାରିବା । କିନ୍ତୁ ଯଦି ସମସ୍ତେ ବା ସଂଖ୍ୟାଧିକ ଲୋକ କହନ୍ତି 'କାଣ୍ଟ ସେ' ତେବେ କଅଣ ହେବ ?

ମନ୍ତ୍ରୀ ମହୋଦୟ ହସିଲେ ।

ହସିଲେ ଯେ ?

ସାର୍ ଯେଉଁମାନେ ବୋକା ସେଇମାନେ ହିଁ 'କାଣ୍ଟ ସେ' ବୋଲି କହି ଥାଆନ୍ତି । ଆମେ ତାକୁ ଆଉ କଅଣ କରି ପାରିବା ?

ମୁଁ ଏମିତିକା ଉତ୍ତରଟିଏ ଆଶା କରୁ ନଥିଲି ।

ମନ୍ତ୍ରୀ ମହୋଦୟ ଲଜ୍ଜିତ ହୋଇ ପଡ଼ିଲେ । ପ୍ରଧାନମନ୍ତ୍ରୀ ଯେ ତାଙ୍କ କଥା ପସନ୍ଦ କରୁ ନାହାନ୍ତି ଏକଥା ସେ ବୁଝି ପାରିଲେ ।

ପ୍ରଧାନମନ୍ତ୍ରୀ କହିଲେ ତାର ଅର୍ଥ ଏଇଆ ଯେ ଏଇଟା ଗୋଟିଏ ବୋକାଙ୍କ ଦେଶ ଏବଂ ମୁଁ ତାର ପ୍ରଧାନମନ୍ତ୍ରୀ ।

ମନ୍ତ୍ରୀ ତଳକୁ ମୁହଁ ପୋତିଲେ ।

ପ୍ରଧାନମନ୍ତ୍ରୀ କହିଲେ ଆପଣ ଜାଣନ୍ତି ଆମ ଗଣତନ୍ତ୍ରରେ ସ୍ୱାଧୀନ ସଦସ୍ୟଙ୍କ ଭୂମିକା ଯାହା ଏ 'କାଣ୍ଟ ସେ' ବାଲାଙ୍କ ଭୂମିକା ସେଇଆ । ଗୁରୁତର

ସମସ୍ୟା ଉପସ୍ଥିତ ହେଲେ ଏମାନେ ବାଡ଼ ଉପରେ ବସି ଗୋଡ଼ ହଲାନ୍ତି । ଏଇମାନେ ହିଁ ଗଣତନ୍ତ୍ର ପ୍ରତି ବିପଦ । ଏମାନଙ୍କ ଉପରେ ନିର୍ଭର କଲେ ଦେଶ ନର୍କକୁ ଚାଲିଯିବ ।

ମନ୍ତ୍ରୀଙ୍କ ଆଖି ବିସ୍ଫାରିତ ହେଇଗଲା । ସେ ମନେ ମନେ ଭାବିଲେ କେତେ ଗଭୀର ତଥା ତୀକ୍ଷ୍ଣ ଅନ୍ତର୍ଦୃଷ୍ଟି ଥିବାରୁ ସିନା ସେ ପ୍ରଧାନମନ୍ତ୍ରୀ ହେଇ ପାରିଲେ । ସମସ୍ତେ କଅଣ ସେମିତି ହେଇ ପାରିବେ । ସତଃ ତାଙ୍କ ପାଟିରୁ ବାହାରି ଆସିଲା, 'ତେବେ ଏମାନଙ୍କୁ ନେଇ ଆମେ କଅଣ କରି ପାରିବା ?'

ସେ କାମ ଆପଣଙ୍କ ମନ୍ତ୍ରଣାଳୟର । ଆପଣ ଚିନ୍ତା କରନ୍ତୁ । ଏମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଯଥାଯାଥ ଥଇଥାନ କରାଇ ନ ପାରିଲେ ଏମାନେ ଦିନେ ଆମ ମନ୍ତ୍ରୀମଣ୍ଡଳ ପାଇଁ ବିପଦ ସୃଷ୍ଟି କରିବେ ।

କେମିତି ?

ବୁଝି ପାରିଲେ ନାହିଁ ? ଆମ ମନ୍ତ୍ରୀମଣ୍ଡଳ କେବଳ 'Yes' ଓ 'No' ମାନଙ୍କ ଦ୍ୱାରା ବଞ୍ଚିଛି । ସବୁ ମନ୍ତ୍ରୀମଣ୍ଡଳ କେବଳ 'Yes' ଓ 'No' ମାନଙ୍କ ଦ୍ୱାରା ବଞ୍ଚିଥାଏ । ସବୁ ମନ୍ତ୍ରୀମଣ୍ଡଳ ଏମିତି ବଞ୍ଚେ । ଏ ପାଖ ନ ହେଲେ ସେ ପାଖ । ତାକୁଇ କୁହାଯାଏ ଗଣତନ୍ତ୍ର । କିନ୍ତୁ ଏ 'Can's Say' ମାନେ କୋଉ କାମରେ ଲାଗନ୍ତି ? ଏମାନଙ୍କ ସଂଖ୍ୟା ବଢ଼ିଲେ ଦେଶ ରହିବ ?

କଅଣ କରି ହେବ ?

ମୋ କଥା ମାନନ୍ତୁ । ଏମାନଙ୍କ ପାଇଁ ଗୋଟିଏ ଟ୍ରେନିଂ ସ୍କୁଲ ଖୋଲି ଦିଅନ୍ତୁ । ଯେତେ 'କାଣ୍ଟ ସେ' କହିବା ଲୋକ ଅଛନ୍ତି ସେମାନଙ୍କ ପାଇଁ ଟ୍ରେନିଂଟା ବାଧତାମୂଳକ ହେଉ । ଟ୍ରେନିଂଟା ବର୍ଷିକିଆ ହେବ କି ମାସିକିଆ ହେବ ସେ କଥା ଆପଣଙ୍କ ଉପରେ ନିର୍ଭର କରେ । ଟ୍ରେନିଂ ର ସମସ୍ତ ଖର୍ଚ୍ଚ ସରକାର ବହନ କରୁ । ଅଧିକ ଖର୍ଚ୍ଚ ପାଇଁ ଆପଣ ଚିନ୍ତା କରନ୍ତୁ ନାହିଁ । ଯାଆନ୍ତୁ ଶୀଘ୍ର କାମ ଆରମ୍ଭ କରନ୍ତୁ ।

ଠିକ୍ ବର୍ଷକ ପରେ ପ୍ରଧାନମନ୍ତ୍ରୀ ପୁଣି ଥରେ ମାନବ ସମ୍ବଳ ମନ୍ତ୍ରୀଙ୍କୁ ଡକେଇଲେ । ପଚାରିଲେ କାମ ସବୁ ଠିକ୍ ଚାଲିଛି ତ ?

ମନ୍ତ୍ରୀ କହିଲେ ସବୁ ଠିକ୍ ଚାଲିଚି ହଜାର ହଜାର ସଂଖ୍ୟାରେ ସେମାନଙ୍କୁ ଟ୍ରେନିଂ ଦେଇ ତାଙ୍କ ନିଜ ନିଜ ରାଜ୍ୟକୁ ପଠେଇ ସାରିଲୁଣି । ସେମାନେ

ସଫଳତାର ସହିତ କାମ ମଧ୍ୟ କରୁଛନ୍ତି ବୋଲି ତାଙ୍କ ପ୍ରୋଗ୍ରେସ ରିପୋର୍ଟରୁ ଜଣା ପଡ଼ୁଛି । କିନ୍ତୁ ସାର.... ।

ପୁଣି କିନ୍ତୁ କଅଣ ?

କେବଳ ଗୋଟିଏ ଦଳକୁ ମୁଁ ପାରୁନାହିଁ । ସେମାନେ ମୋଟେ ବଦଳୁନାହାନ୍ତି । 'ଯେତେ ମାଠିବୁ ମାଠ, ମୁଁ ସେଇ ଦରପୋଡ଼ା କାଠ' । ସେମାନଙ୍କ ସଂଖ୍ୟା ବି ବେଶୀ ନୁହେଁ । ମାତ୍ର ଦେଢଶହ ଭିତରେ ।

ବଦଳିଲେ ନାହିଁ ବୋଲି କେମିତି ଜାଣିଲ ?

ଦୁଇ ଥର ଟ୍ରେନିଂ ଦେଲା ପରେ ମୁଁ ସେମାନଙ୍କୁ ଯେତେବେଳେ ପଚାରିଲି କଳିଙ୍ଗ ବୀର ବିଜୁ ପଟ୍ଟନାୟକଙ୍କୁ ଭାରତ ରତ୍ନ ଉପାଧି ଦିଆଯିବା ଉଚିତ୍ ? ସେମାନେ କହିଲେ 'କାଣ୍ଟ ସେ' ।

ସେମାନଙ୍କୁ ପୁଣି ପଚାରିଲି ମହାବାତ୍ୟାକୁ ଜାତୀୟ ବିପତ୍ତି ବୋଲି ଘୋଷଣା କରାଯିବା ଉଚିତ୍ ? ସେମାନେ ପୁଣି କହିଲେ 'କାଣ୍ଟ ସେ' ।

ପ୍ରଧାନମନ୍ତ୍ରୀ ମୁଣ୍ଡରେ ହାତ ଦେଇ ବସିଗଲେ ।

***

# ଯୋଜନାର ସଫଳ ରୂପାୟନ

ମୁଖ୍ୟମନ୍ତ୍ରୀ ସେଦିନ ଗୋଟିଏ ଉପନିର୍ବାଚନ ମଣ୍ଡଳୀରୁ ତୃତୀୟ ତୁଫାନୀ ଗସ୍ତ ସାରି ଫେରିଲେ ଏବଂ ତୁରନ୍ତ ମନ୍ତ୍ରୀମଣ୍ଡଳରେ କେତେକ ବିଶ୍ୱସ୍ତ ସଦସ୍ୟଙ୍କୁ ଡକାଇଲେ । ସେମାନଙ୍କୁ କହିଲେ ମୁଁ ଏଥର ନିର୍ବାଚନ ପ୍ରଚାରରେ ଯାଇ କେତେକ ଅସୁବିଧାର ସମ୍ମୁଖୀନ ହେଇଚି । ସେମିତି ଆପଣମାନେ ମଧ୍ୟ ଅସୁବିଧା ଅନୁଭବ କରୁଥିବେ ।

ଅର୍ଥମନ୍ତ୍ରୀ କହିଲେ ରାସ୍ତାଘାଟ ନା ରାତ୍ରୀରହଣୀ କଥା କହୁଚନ୍ତି କହିଲେ ? ଗାଁମାନଙ୍କରେ ସେ ସବୁ ସ୍ୱାଭାବିକ । ଯୋଜନା ମନ୍ତ୍ରୀ କହିଲେ ଗାଁରେ ସେ ଗୋଟିକିଆ ଗେଣ୍ଡୁଫୁଲର ମାଳା ଦେଖିଲେ ମୋ ମୁଣ୍ଡକୁ ପିତ୍ତ ଚଢ଼ିଯାଏ । ଗୋଟିଏ ସରପଞ୍ଚକୁ ମୁଁ ଥରେ ପିଟି ପକେଇଲି ।

ମୁଖ୍ୟମନ୍ତ୍ରୀ ହସିଲେ । କହିଲେ, ନାଁ, ସୌଭାଗ୍ୟକୁ ସେ ଅସୁବିଧା ମୋର ହୋଇନାହିଁ । ଆମ ପି.ଆର ମନ୍ତ୍ରୀ ତା'ର ବ୍ୟବସ୍ଥା ଆଗରୁ କରିଥାଆନ୍ତି । ଏଡ଼େ ମୋଟା ଓ ଏଡ଼େ ଲମ୍ବା ଫୁଲମାଳ ସେ ନିଶ୍ଚୟ ମାଡ୍ରାସ୍ କି କଲିକତାରୁ ମଗାଇ ଥିବେ । ତାଙ୍କୁ ଧନ୍ୟବାଦ । ରାତ୍ରୀ ରହଣି ଓ ରାସ୍ତାଘାଟର ଦାୟିତ୍ୱ ନିଅନ୍ତି ନିଜେ ପୂର୍ତ୍ତମନ୍ତ୍ରୀ । ରିଏଲି ବିଉଟିଫୁଲ୍ । ଥରେ ଆସନ୍ତୁ ମୋ ସାଥିରେ ।

ମୁଖ୍ୟମନ୍ତ୍ରୀ ଟିକିଏ ରହିଗଲେ ଏବଂ କହିଲେ, ମୋର ଯୋଉ ଅସୁବିଧା କଥାଟା କହୁଥିଲି ସେଇଟା ହେଉଚି, ମୁଁ ଏ ଉପନିର୍ବାଚନ ମଣ୍ଡଳୀକୁ ଯେତେ ଥର ଯାଇଛି ଏବଂ ଯୋଉଠିକୁ ଯାଇଛି, ସେଠି ମୁଁ ଯୋଉ ପ୍ରତିଶ୍ରୁତିମାନ ଦେଇଛି ତାକୁ ପରେ ଭୁଲି ଯାଉଛି । ନିର୍ବାଚନ ସଭାରେ ପ୍ରତିଶ୍ରୁତି ଛଡ଼ା ବା ଆଉ କଅଣ ଥାଏ । ଆପଣମାନଙ୍କର ତ ବେଶୀ ଅନୁଭୂତି ଥିବ । ମୁଁ କିନ୍ତୁ ଅଡୁଆରେ ପଡ଼ୁଚି - ଯେତେବେଳେ ଲୋକମାନେ ସେ ପ୍ରତିଶ୍ରୁତି କଥା ପଚାରି ଦଉଛନ୍ତି । ତେବେ ସାମ୍ବାଦିକମାନଙ୍କୁ ସେଥିରୁ ନିବୃତ୍ତ କରାଇ

ହେବ । କିନ୍ତୁ ଲୋକମାନଙ୍କ ମୁହଁକୁ କେମିତି ବନ୍ଦ କରିବେ ? ପବ୍ଲିକ୍ ମିଟିଂରେ ସବୁ ଅଡୁଆ ହୋଇଯାଏ ।

ଅର୍ଥମନ୍ତ୍ରୀ କହିଲେ ଏସ.ପି.ଙ୍କୁ କହିଦେଲେ ହେବ । ମୁଁ ସେମିତି କରେଁ । ଜଣେ ମନ୍ତ୍ରୀ ମିଟିଂରେ ଏମ୍‌ବାରାସ୍‌ଡ୍ ହେବ.... ମାନେ .... । ଯୋଜନା ମନ୍ତ୍ରୀ କହିଲେ ସେ କଥା ଠିକ୍ କିନ୍ତୁ ଗୋଟିଏ ନିର୍ବାଚନୀ ସଭାରେ ଏମିତି କଲେ ପ୍ରତିକୂଳ ପ୍ରଭାବ ପଡ଼ିପାରେ । ଅପୋଜିସନ୍ ସେ ଆଡଭାନ୍‌ଟେଜ୍ ନେବ ।

ସେତେବେଳକୁ ରାତି ହୋଇ ଆସୁଥାଏ । ମୁଖ୍ୟମନ୍ତ୍ରୀ କହିଲେ ଟିକିଏ ସଫ୍ଟ ମିଳିବ ? ବଡ଼ ଟାୟାର୍ଡ ଲାଗୁଚି । ସେ ଗୋଡ଼ ଲମ୍ବାଇ ବସିଲେ । ତା'ପରେ କହିଲେ, ନା କଥାଟା ଉପରେ ଟିକିଏ ସିରିୟସ୍‌ଲି ଚିନ୍ତା କରନ୍ତୁ । ଆମ ପକ୍ଷେ ପ୍ରତିଶ୍ରୁତି ଗୁଡ଼ାକ ଭୁଲିଯିବା ଉଚିତ୍ ନୁହେଁ । ଏହା ଲୋକଙ୍କ ପ୍ରତି ବିଶ୍ୱାସଘାତକତା ହେବ । ତେଣୁ ମୁଁ ଗୋଟିଏ ସୁକ୍ଷ୍ମ ଉପାୟ ଚିନ୍ତା କରିଛି । ଆପଣମାନେ ବିଚାର କରନ୍ତୁ ।

ସମସ୍ତେ ତାଙ୍କୁ ହାଁ କରି ଅନେଇଲେ ।

ମୁଖ୍ୟମନ୍ତ୍ରୀ କହିଲେ ସବୁ ପ୍ରତିଶ୍ରୁତି ଗୁଡ଼ିକୁ ଯଦି ଗୋଟିଏ କମ୍ପ୍ୟୁଟର ସାହାଯ୍ୟରେ ରେକର୍ଡ କରି ରଖାଯାଆନ୍ତା ? ଗୋଟିଏ ସେଣ୍ଟ୍ରାଲ ରେକର୍ଡ ରୁମ୍ ହେଉ । ସବୁ ମନ୍ତ୍ରୀଙ୍କର ପ୍ରତିଶ୍ରୁତିକୁ ସେଠି ପ୍ରଥମେ ରେକର୍ଡ କରାଯାଉ । ଗସ୍ତରେ ଯିବା ପୂର୍ବରୁ ସେସବୁ ମନେ ପଡ଼ିବ । ତା'ପରେ ପ୍ରାୟରିଟି ଅନୁସାରେ ତା'ର ବ୍ୟବସ୍ଥା କରାଯିବ । ସେ କଥା ପରେ । କିନ୍ତୁ ପ୍ରଥମେ ରେକର୍ଡ କରାଯାଉ । ଯୋଜନା ମନ୍ତ୍ରୀ କହିଲେ ଚମତ୍କାର ଆଇଡିଆ । ମୁଁ ଭାବୁଛି ତା'ର ନାଁ ସେଣ୍ଟ୍ରାଲ ରେକର୍ଡ ରୁମ୍ ନ ରଖି 'ପ୍ରତଶ୍ରୁତି ବିଭାଗ' ରଖାଯାଉ ଏବଂ ତାକୁ ଜଣେ ସିନିୟର ଅଫିସରଙ୍କ ଦାୟିତ୍ୱରେ ରଖାଯାଉ । କିଛି ଷ୍ଟାଫ୍ ମଧ୍ୟ ତାଙ୍କୁ ଦିଆଯାଉ । ଆବଶ୍ୟକ ହେଲେ ଜଣେ ମନ୍ତ୍ରୀ ସେ ବିଭାଗକୁ ଦେଖନ୍ତୁ । ଯଦି ପ୍ରକୃତିରେ କାମ କରିବାକୁ ହୁଏ, ଏଇଟା ହେବ ସବୁଠୁ ଗୁରୁତ୍ୱପୂର୍ଣ୍ଣ ବିଭାଗ ।

ଅର୍ଥମନ୍ତ୍ରୀ କହିଲେ, ମୋର ଆପତ୍ତି ନାହିଁ । ବର୍ତ୍ତମାନ ପାଇଁ ସେ ବିଭାଗଟା ଆଡିସ୍‌ନାଲ୍ ଚିଫ୍‌ଙ୍କ ଅତିରିକ୍ତ ଦାୟିତ୍ୱରେ ଥାଉ । ସେ ଏକ୍ସଅଫିସିଓ ଭାବେ

କାମ କରନ୍ତୁ ଏବଂ ଯୋଜନା ମନ୍ତ୍ରୀ ମଧ... ଏଥିରେ ଅଧିକ ଅର୍ଥର ଆବଶ୍ୟକତା ରହିବ ନାହିଁ ।

ବିଭାଗ ଖୋଲା ହେଲା । କାମ ଯୋରସୋରରେ ଚାଲିଲା ।

ବର୍ଷକ ପରେ ହଠାତ୍ ଦିନେ ବିଭାଗୀୟ ସେକ୍ରେଟାରୀ ଆସି ମୁଖ୍ୟମନ୍ତ୍ରୀଙ୍କୁ କହିଲେ, ଆମେ ଆଉ ପ୍ରତିଶ୍ରୁତି ଗ୍ରହଣ କରିପାରିବୁ ନାହିଁ । କମ୍ପ୍ୟୁଟରରେ ଆଉ ଯାଗା ନାହିଁ । ମୁଖ୍ୟମନ୍ତ୍ରୀ ଚିନ୍ତିତ ହୋଇ ପଡ଼ିଲେ । ସେ ସଂଗେ ସଂଗେ ବିଭାଗୀୟ ମନ୍ତ୍ରୀଙ୍କୁ ଡକେଇଲେ । ସେ ତ ଜଣେ ପୋଖତ ମନ୍ତ୍ରୀ । ଟିକିଏ ଚିନ୍ତା କରି କହିଲେ ଆମର ଇନ୍‌ପୁଟ୍ ଠିକ୍ ଅଛି । ଅର୍ଥାତ ଯୋଜନା ଅନୁସାରେ କାମ ହେଉଚି । କିନ୍ତୁ ତା'ର ଆଉଟ୍‌ପୁଟ୍ ମୋଟେ ନାହିଁ । ମାନେ ପ୍ରତିଶ୍ରୁତି ପାଳନ କଥାଟା ଆମେ ସେତେବେଳେ ଚିନ୍ତା କରିନଥିଲୁଁ । ତେଣୁ କମ୍ପ୍ୟୁଟର ଜାମ ହୋଇଯାଇଛି ।

ତେବେ ଉପାୟ ? ମୁଖ୍ୟମନ୍ତ୍ରୀ ପଚାରିଲେ ।

ଉପାୟ ଅଛି । ଆମକୁ ଖୁବ୍ ଶୀଘ୍ର ଆଉ ଗୋଟିଏ ବିଭାଗ ଖୋଲି ପ୍ରତିଶ୍ରୁତିମାନଙ୍କୁ ଟ୍ରାନ୍‌ସ୍‌ଫର କରିବାକୁ ହେବ । ଆଉଟ୍‌ପୁଟ୍ ବଢ଼େଇବାକୁ ହେବ । ଅର୍ଥାତ ପ୍ରତିଶ୍ରୁତି ପାଳନ କରିବାକୁ ହେବ ।

ମୁଖ୍ୟମନ୍ତ୍ରୀ କହିଲେ ନୂଆ ବିଭାଗ ମାନେ ଅଧିକ ଅର୍ଥ ....

ଯୋଜନା ମନ୍ତ୍ରୀ କହିଲେ ବିନା ଅର୍ଥରେ ମଧ ସେ କାମ ହୋଇପାରିବ । ରାଜନୈତିକ ଇଚ୍ଛାଶକ୍ତି ସବୁ ଉପାୟର ଉଦ୍‌ଭାବକ । ଆପଣ ଆଗେ ନୂଆ ବିଭାଗର ମଞ୍ଜୁରୀ ଦିଅନ୍ତୁ ।

ତା ନାଁ କଅଣ ହେବ ? ମୁଖ୍ୟମନ୍ତ୍ରୀ ପଚାରିଲେ ।

'ପ୍ରତାରଣା ବିଭାଗ ।'

(ପ୍ରଜାତନ୍ତ୍ର : ୨୨.୧୦.୨୦୦୧)

***

# ସ୍ୱର୍ଗରେ ବିପ୍ଳବ

ସ୍ୱର୍ଗ ରାଜ୍ୟରେ ସେଦିନ ନୂଆ କଥାଟିଏ ଘଟିଲା । ଯମ ରାଜାଙ୍କ ଦରବାର ହଲ ସାମନାରେ ହଜାର ହଜାର ଶିଶୁ ଏକତ୍ରିତ ହୋଇ ସ୍ୱର୍ଗ ରାଜ୍ୟର ଶାସନ ବିରୋଧୀ ସ୍ଲୋଗାନ ଦେବାକୁ ଆରମ୍ଭ କଲେ । ସେମାନେ ହାତରେ ପ୍ଲାକାର୍ଡ ମଧ୍ୟ ଧରିଥିଲେ । ସେଥିରେ ଲେଖାଥିଲା "ଯମ ରାଜା-ମୁର୍ଦାବାଦ, ଚିତ୍ରଗୁପ୍ତ-ମୁର୍ଦାବାଦ, ବ୍ରହ୍ମା-ମୁର୍ଦାବାଦ, ବିଷ୍ଣୁ-ମୁର୍ଦାବାଦ" ସେମାନେ ଏକଥା ମଧ୍ୟ କହୁଥିଲେ - "ଦେବଗଣ - ସ୍ୱର୍ଗ ଛାଡ଼", "କୈଳାଶ ପତି - ସ୍ୱର୍ଗ ଛାଡ଼" ।

ସବୁଠାରୁ ଲମ୍ବା ବାନରଟିରେ ଯାହା ଲେଖାଥିଲା ତାହା ଅନ୍ୟମାନଙ୍କୁ ବେଶୀ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ସେଥିରେ ଲେଖାଥିଲା ଦେବଗଣ -

"ସ୍ୱର୍ଗ ଛାଡ଼ି ପୃଥିବୀକୁ ଯାଅ ।"

"ସ୍ୱପ୍ନ ଛାଡ଼ି ବାସ୍ତବକୁ ଯାଅ"

"ପୂଜା ପାଇବା ଛାଡ଼ି ପୂଜା କରିବା ଶିଖ ।"

ପୃଥିବୀରେ ଯେମିତି ଇଣ୍ଟରନେଟ୍ ଓ ମୋବାଇଲ ଅଛି ସ୍ୱର୍ଗ ଲୋକରେ ସେସବୁ ବହୁତ ଆଗରୁ ଅଛି । ଆମକୁ ଯନ୍ତ୍ରଟିଏ ବ୍ୟବହାର କରିବାକୁ ହୁଏ, ସୁଇଚ୍ ଟିପିବାକୁ ହୁଏ କିମ୍ବା ମୂଷା ବା ମାଉସ୍‌କୁ ଚଳେଇବାକୁ ହୁଏ । ଦେବତା ମାନଙ୍କ ଭିତରେ ଯଥେଷ୍ଟ ଉନ୍ନତ ଧରଣର ସେଟ୍ ଥିବାରୁ (ମୋନେ ମନେ କର ଆମର ଟୁ-ଜି ବା ଟୁ-ଥ୍ରି ଥିଲା ବେଳେ ସେମାନେ ଟୁ-ଶହେ ଭଳିଆ ସେଟ୍ ରଖିଛନ୍ତି) । ସେମାନଙ୍କ ସେଟ୍ ସବୁ କିଛି ଆଖିକୁ ଦେଖାଯାଏନି । ମନେ ମନେ ଭାବିଲେ ଅନ୍ୟ ଦେବତାମାନେ ଯୋଉଠି ଥିଲେ ବି ସଂଗେ ସଂଗେ କଥା ହେଇ ପାରନ୍ତି ।

ତେଣୁ ଯମରାଜାଙ୍କ ଦରବାର ହଲ୍ ସାମନାରେ ଛୋଟ ଛୋଟ ପିଲାମାନେ ହଠାତ୍ ଯୋଉ ବିକ୍ଷୋଭ ଆରମ୍ଭ କଲେ ତାହା ଗୋଟିଏ ସେକେଣ୍ଡରୁ କମ୍ ସମୟ ଭିତରେ ସମଗ୍ର ସ୍ୱର୍ଗ ରାଜ୍ୟରେ ପ୍ରତ୍ୟେକ ଦେବଦେବୀଙ୍କ ପାଖରେ ପହଞ୍ଚିଗଲା । ଖାଲି ଯେ ଖବର ପହଞ୍ଚିଲା ତା ନୁହେଁ ସେମାନଙ୍କ ସାମନାରେ ମନକୁ ମନ ଟିଭି ପର୍ଦ୍ଦା ପରି ବିକ୍ଷୋଭର ସ୍ଥାନଟି ମଧ୍ୟ ଉଦ୍‌ଭାସିତ ହେଇ ଉଠିଲା । ସମସ୍ତେ ସେମାନଙ୍କ ବେଡ୍‌ରୁମ୍‌ରେ ଥାଆନ୍ତୁ କି ବାଥ ରୁମ୍‌ରେ, ଚା ପିଉଥାଆନ୍ତୁ କି ରୋଷେଇ ଘରେ ଥାଆନ୍ତୁ, ପିଲାମାନଙ୍କ ବିକ୍ଷୋଭ ସ୍ଥାନଟା ସମ୍ପୂର୍ଣ୍ଣ ରୂପେ ଦେଖି ପାରୁଥିଲେ ।

ସ୍ୱର୍ଗ ରାଜ୍ୟରେ ଏ ପ୍ରକାର ବିକ୍ଷୋଭ ପ୍ରଥମ । ସେଠିତ ବଡ଼ମାନେ କେବେ ସାହସ କରି ପଦେ କଥା କହନ୍ତି ନାହିଁ । ପ୍ରତିବାଦର ପ୍ରଶ୍ନ ଉଠିନି ବରଂ ଦେବତାଙ୍କ ଚାକର ଚାକରାଣୀ ରାସ୍ତାରେ ଯାଉଥିଲା ବେଳେ ବଡ଼ମାନେ ତାଙ୍କୁ ଦେଖି ମୁଣ୍ଡ ନୁଆଁଇ ଠିଆ ହୁଅନ୍ତି ।

ଏ ପ୍ରଥା ଆମ ପୃଥିବୀରେ ଖାସ କରି ଭାରତରେ ଅଛି । ଆମ ରାଜା କି ମନ୍ତ୍ରୀମାନେ ରାସ୍ତାରେ ଯାଉଥିଲା ବେଳେ ସାଧାରଣ ଲୋକ ହାତ ଯୋଡ଼ି ଠିଆ ହୁଅନ୍ତି ।

ସ୍ୱର୍ଗ ଲୋକର ଏ ପ୍ରକାର ନୂଆ କଥାଟିଏ ଦେଖି ଦେବଲୋକର ଦେବତାମାନଙ୍କ ଭିତରେ ଭାଳେଣି ସୃଷ୍ଟି ହେଲା । ବିଶେଷ କରି ଭଗବାନ ବିଷ୍ଣୁ, ଶିବ ଓ ବ୍ରହ୍ମାମାନେ ପରାମର୍ଶ କରିବାକୁ ଲାଗିଲେ । ଏବର ଯୁଗରେ ଭିଡିଓ କନ୍‌ଫରେନ୍‌ସିଂ ପରି ସେମାନେ ନିଜ ନିଜ ଜାଗାରେ ଥାଇ ପରସ୍ପର ଭିତରେ କଥା ହେଉଥିଲେ । ସେମାନଙ୍କର ପ୍ରଥମ ନିଷ୍ପତ୍ତି ହେଲା ପିଲାମାନେ (ଏମାନଙ୍କ ଭିତରେ ପ୍ରଚୁର ପରିମାଣରେ ଶିଶୁ ଓ ନବ ଜନ୍ମିତ ଶିଶୁ ମଧ ଥିଲେ) । ସ୍ୱର୍ଗରାଜ୍ୟର ଶାନ୍ତି ଶୃଙ୍ଖଳା ଭଙ୍ଗ କରୁଥିଲେ ମଧ ସେମାନଙ୍କୁ ପୋଲିସ୍ ଲଗେଇ ଘଉଡ଼ାଇ ଦିଆଯିବ ନାହିଁ । ଏପରିକି ସେଠାକୁ ପୋଲିସ୍ ମୋଟେ ଯିବ ନାହିଁ । କାରଣ ପୋଲିସ୍‌ର ବିକଟାଳ ମୂର୍ତ୍ତି ଦେଖି ସେମାନେ ଡରି ଯାଇ ପାରନ୍ତି । ସ୍ୱର୍ଗରାଜ୍ୟ ଶାସନରେ ଛୋଟ ପିଲାଙ୍କ ମନରେ ଭୟ ବା ଦୁଃଖ ସୃଷ୍ଟି ହେଲା ଭଳି କୌଣସି କାମ କରିବା ନୀତି ବିରୁଦ୍ଧ ।

କେହି କେହି ପ୍ରଶ୍ନ କରି ପାରନ୍ତି 'ନବ ଜନ୍ମିତ' ମାନେ ବିକ୍ଷୋଭରେ କେମିତି ଭାଗ ନେଲେ ।

ତାର ଉତ୍ତର ଅତି ସହଜ । ସ୍ୱର୍ଗ ରାଜ୍ୟରେ ନବଜନ୍ମିତ ପିଲାମାନେ ଚାଲି ପାରନ୍ତି । ଆମ ଘରେ ବାଛୁରୀଟିଏ ଜନ୍ମ ହେଲେ ଚାଲି ପାରେ । ଠିକ୍ ସେମିତି ସେଠି ନବଜନ୍ମିତ ଶିଶୁକୁ ସେ ଶକ୍ତି ଦିଆ ଯାଇଥାଏ । ତାର କାରଣ ନବ ଜନ୍ମିତ ସ୍ୱର୍ଗକୁ ଗଲେ ତା ମାଆ ସାଥିରେ ନଥିବ । ତେଣୁ ସ୍ୱର୍ଗରେ ଶିଶୁଟି ପହଞ୍ଚିଲା ମାତ୍ରେ ନିଜେ ସବୁ କାମ କରି ପାରିବା ଭଳି କ୍ଷମତା ମନକୁ ମନ ପାଇଯାଏ ।

ସ୍ୱର୍ଗରେ ହିଁ କେବଳ ଶିଶୁକୁ ସେ ଅଧିକାର ମିଳିଥାଏ । ତାର ଆବଶ୍ୟକତା ଅନୁଯାୟୀ ଖାଦ୍ୟ, ପାନୀୟ, ବସ୍ତ୍ର, ସ୍ୱାସ୍ଥ୍ୟ ସେବା ଇତ୍ୟାଦି ତା ପାଖରେ ପୂର୍ବ ନିର୍ଦ୍ଧାରିତ । ବଡ଼ଠାରୁ ସାନ ଯାଏ ସମସ୍ତ ଆବଶ୍ୟକତା ତା'ଠାରେ ମନକୁ ମନ ପହଞ୍ଚିଯାଏ । ଆଦେଶକୁ ଅପେକ୍ଷା କରେ ନାହିଁ ।

ଆଲୋଚନା ବେଳେ ଭଗବାନ ଶ୍ରୀକୃଷ୍ଣ ପଚାରିଲେ ଏମାନେ ପୃଥିବୀର କୋଉ ଅଞ୍ଚଳର ପିଲା ?

ବ୍ରହ୍ମା କହିଲେ ଏମାନେ ସବୁ ଭାରତବର୍ଷର ପିଲା ।

ଦେବଭୂମି ଭାରତ ବର୍ଷ ? ଶ୍ରୀକୃଷ୍ଣ ହସିଲେ ଏବଂ କହିଲେ ମୁଁ ବି ସେଇଆ ଭାବୁଥିଲି । ଭାରତର ପିଲା ନ ହୋଇଥିଲେ ଆଉ କୋଉ ଦେଶର ପିଲା ମନରେ ଏତେ କ୍ଷୋଭ ଥିବ ? ଏତେ ଦୁଃଖ ଯନ୍ତ୍ରଣା ଆଉ କୋଉ ପିଲାର ମନରେ ଥିବ ? କୋଉ ଦେଶର ପିଲା କିମ୍ବା ଶିଶୁ ଏତେ କଷ୍ଟ ଓ ଅଯତ୍ନ ପାଉଥିବେ ?

ବ୍ରହ୍ମାଙ୍କୁ କଥାଟା ଟିକେ ବାଧିଲା । ସେ ଭାବିଲେ ତେବେ କଅଣ ମୋର ସୃଷ୍ଟି ପରିଚାଳନାରେ କୋଉଠି ଭୁଲ ରହି ଯାଇଛି ? ମୁଁ ପାତର ଅନ୍ତର କରୁଛି ?

ଶ୍ରୀକୃଷ୍ଣ ବ୍ରହ୍ମାଙ୍କ ମନର କଥା ବୁଝି ପାରିଲେ । ତାଙ୍କ ମନରୁ ସେ ଦୁଃଖ ଦୂର କରିବା ପାଇଁ ସେ କହିଲେ, ଆପଣ ଟିକିଏ ବୁଝନ୍ତୁ ସେ ପିଲାମାନଙ୍କର ବିକ୍ଷୋଭ ପ୍ରଦର୍ଶନର କାରଣ କଅଣ ? ଆମେ ଅନ୍ତତଃ ଜାଣି ପାରିବା ଆମର ଦୋଷ ତ୍ରୁଟି କୋଉଠି ଅଛି ?

ତେବେ କଅଣ ଆମେ ଯାଇ ତାଙ୍କୁ ଭେଟିବା ? ବ୍ରହ୍ମା ପଚାରିଲେ ।

ଭଗବାନ ଶ୍ରୀକୃଷ୍ଣ ବ୍ରହ୍ମାଙ୍କୁ ସେ ଅନୁମତି ଦେଲେ ନାହିଁ । ସେ କହିଲେ ଆପଣଙ୍କ ବଡ଼ ବଡ଼ ନିଶ ଦାଢ଼ି ଦେଖିଲେ ସେମାନେ ଡରିଯିବେ । ତେଣୁ ଆପଣ ନିଜେ ନ ଯିବା ଉଚିତ୍ । ପିଲାମାନଙ୍କ ପାଇଁ ଆମେ ଯେତେ ସଂବେଦନଶୀଳ ହେବା ସେତେ ଭଲ । ପିଲା ବୋଲି ସେମାନଙ୍କୁ ହେୟ ଜ୍ଞାନ କରିବା ଠିକ୍ ହେବ ନାହିଁ ।

ବ୍ରହ୍ମା କହିଲେ ମୁଁ ଆପଣଙ୍କ ସହିତ ଏକମତ । କିନ୍ତୁ ସେମାନେ କହୁଛନ୍ତି 'ପୂଜା ପାଇବା ଛାଡ଼ି ପୂଜା କରିବା ଶିଖ' । ତାଙ୍କର ଏ ଦାବୀ ଆମେ ମାନି ପାରିବା ? ମାନିଲେ ଆମ ସ୍ୱର୍ଗରାଜ୍ୟ ରହିବ ? ଆମେ ଶାସକ ।

ଭଗବାନ ଶ୍ରୀକୃଷ୍ଣ ପୁଣି ଥରେ ହସିଲେ । କହିଲେ ଆପଣ ବେଦ ପତି । ଆପଣ ବେଦ ସୃଷ୍ଟି କରୁଛନ୍ତି ମଣିଷ ମାନଙ୍କ ପାଇଁ । ବେଦର ନିୟମ ଯଦି ଆମେ ନ ମାନିବା ତେବେ ମଣିଷମାନଙ୍କୁ କେମିତି ମାନିବାକୁ କହିବା ? ମୋର ମନେ ହୁଏ ଏଇଟାହିଁ ସମସ୍ୟା ଯେଉଁଥିପାଇଁ ପିଲାମାନେ ଆମ ବିରୁଦ୍ଧରେ ଠିଆ ହୋଇଛନ୍ତି । ସେ ପୁଣି କହିଲେ ସ୍ୱର୍ଗର ଅର୍ଥ ହେଲା ଯୋଉଠି ଅନ୍ୟାୟ, ଅନୈତିକତାର ପ୍ରଶ୍ନ ଉଠେନା ଏବଂ ଯୋଉଠି ଯାହାର ଯାହା ଆବଶ୍ୟକ ସେ ସବୁ କହିବା ପୂର୍ବରୁ ମିଳିଯାଏ । ତାହାହିଁ ସୁଖ ଓ ଶାନ୍ତି । ଜୀବିତାବସ୍ଥାରେ ମଣିଷ ଯେ ସୁଖ ପାଏ ନାହିଁ ବୋଲି ସ୍ୱର୍ଗରେ ତାର ବ୍ୟବସ୍ଥା କରାଯାଇଛି । ମର୍ତ୍ତ୍ୟରେ ମଣିଷମାନେ ଆଇନ୍ କରନ୍ତି, କିନ୍ତୁ ନିଜେ ପାଳନ କରନ୍ତି ନାହିଁ ବୋଲି ଦୁଃଖ ଭୋଗ କରନ୍ତି ।

ଠିକ୍ ଅଛି ମୁଁ ନିଜେ ଯାଉଛି ପିଲାଙ୍କୁ ଭେଟିବି । କୃଷ୍ଣ କହିଲେ ।

ଭଗବାନ ଶେଷରେ ନିଜେ ପିଲାଙ୍କ ସମ୍ମୁଖରେ ଠିଆ ହେଲେ ।

ପିଲାମାନେ ତାଙ୍କୁ ପ୍ରଥମେ ହାତ ଯୋଡ଼ି ନମସ୍କାର କଲେ । ଭଗବାନ ମଧ୍ୟ ନମସ୍କାର କଲେ ଓ ଆଶୀର୍ବାଦ ସୂଚକ ହାତ ଦେଖାଇଲେ । ମୁଁ ତ ତୁମ ମାନଙ୍କ ପାଖକୁ ଆସି ଥାଆନ୍ତି, ସେ କହିଲେ ।

ପିଲାମାନଙ୍କ ରାଗ ବୋଧହୁଏ ଟିକେ କମିଗଲା । କୃଷ୍ଣ ସେମାନଙ୍କ ପାଖକୁ ଆସିଲେ ଏବଂ ଗୋଟିଏ ଦୁଇ ଦିନର ଶିଶୁକୁ ଉଠେଇ ତାକୁ ବୋକ ଦେଲେ ଏବଂ କୋଳରେ ଧରିଲେ ।

ଛୋଟ ଶିଶୁଟି ମୁହଁରୁ ଜଣା ପଡୁଥିଲା ସେ ଯେମିତି ତଥାପି ଖୁସି ନୁହେଁ । ସେ କେବଳ ବନ୍ଧୁମାନଙ୍କ ଦେଖୁଥିଲା ।

ପିଲାମାନଙ୍କ ସାମନାରେ ଭଗବାନ ଶ୍ରୀକୃଷ୍ଣ ଠିଆ ହେଲାବେଳେ ପିଲାମାନେ ତାଙ୍କୁ ଭଲ ଭାବରେ ଦେଖି ପାରୁନଥିଲେ । ତାର କାରଣ ଶ୍ରୀକୃଷ୍ଣଙ୍କ ମୁହଁ ସେମାନଙ୍କ ମୁହଁର ଅନେକ ଉପରେ ରହୁଥିଲା । ଶ୍ରୀକୃଷ୍ଣ ଏକଥା ବୁଝିପାରି ନିଜେ ଛୋଟ ହେଇ ଗଲେ । ଶ୍ରୀକୃଷ୍ଣ ଏସବୁ ମେଜିକ୍ କାମ କରିବାରେ ଧୂରନ୍ଧର । କେତେବେଳେ ଖୁବ୍ ଛୋଟ, ପୁଣି କେତେବେଳେ ଖୁବ୍ ଲମ୍ବା ମଧ୍ୟ ହୋଇ ଯାଆନ୍ତି । ଆଉ କେତେବେଳେ ହଠାତ୍ ଉଭେଇ ଯାଆନ୍ତି । ଯେମିତି ଆମର ଇନ୍ଦ୍ରଜାଲ ସମ୍ରାଟ ପି. ସି. ସରକାର କରୁଥିଲେ । ମଣିଷ କିମ୍ବା ବସ୍ତୁକୁ ଉଭେଇ ଦେବା କିମ୍ବା ପୁଣି ଆବିର୍ଭାବ କରେଇବା ଖାଲି ଯେ ଦେବତାମାନଙ୍କ ପକ୍ଷେ ସମ୍ଭବ ତା ନୁହେଁ, ଏବେ ମଣିଷ ମଧ୍ୟ ଏ କାମ କରି ପାରୁଛି । ତେଣୁ ପିଲାମାନଙ୍କ ସାମନାରେ ଶ୍ରୀକୃଷ୍ଣ ଛୋଟ ହୋଇଯିବାରେ ପିଲାମାନେ ଆଶ୍ଚର୍ଯ୍ୟ ହେଲେ ନାହିଁ ।

ଭଗବାନ ପିଲାମାନଙ୍କ ଠାରୁ ନିଜ ପ୍ରଶ୍ନର କୌଣସି ଉତ୍ତର ନ ପାଇବାରୁ ବୁଝିଲେ ପିଲାମାନେ ସଂତୁଷ୍ଟ ନାହାନ୍ତି । ସେ ପୁଣି ପଚାରିଲେ ମୁଁ ତୁମର ସମସ୍ତ ଅସୁବିଧା ଏଇ ମୁହୂର୍ତ୍ତରେ ଦୂର କରି ଦେଇ ପାରିବି । ସ୍ୱର୍ଗରାଜ୍ୟରେ ଅସୁବିଧା ଶବ୍ଦ ରହି ପାରିବ ନାହିଁ । ଆମ ଅଭିଧାନରେ ମଧ୍ୟ ସେ ଶବ୍ଦ ସ୍ଥାନ ପାଇ ନାହିଁ ।

ବିରାଟ ଶିଶୁ ସମାବେଶରେ ପଛ ପାଖରୁ ଦୁଇ ତିନି ଦିନର ଶିଶୁଟିଏ କହିଲା, ଆପଣ ପ୍ରଥମେ କହନ୍ତୁ ଆମକୁ ଏଠାକୁ କାହିଁକି ଅଣାଯାଇଛି ? ଆମେ ଶୁଣିଥିଲୁଁ କିଛି ପାପ ଥିଲେ ମଣିଷକୁ ଏଠାକୁ ଅଣାଯାଏ । ଆମେ କି ପାପ କଲୁଁ ଓ କେବେ କଲୁଁ ?

ଆଉ ଗୋଟିଏ ଶିଶୁ କହିଲା ମୁଁ ଜନ୍ମ ହେଲା ମାତ୍ରେ ଏଠାକୁ ଆସିଗଲି । ପାପ କରିବାକୁ ସମୟ କାହିଁ ?

ଆଉ ଜଣେ କହିଲା ମୁଁ ଜନ୍ମ ପୂର୍ବରୁ ଏଠାକୁ ଆସିଲି । ମୋ ମାଆକୁ ମୁଁ ଦେଖିନାହିଁ କି ତା ସ୍ନେହ ପାଇ ନାହିଁ । ସେ ସବୁ ମୋର ଜନ୍ମଗତ ଅଧିକାର । ମୋତେ ଯିଏ ସେଥିରୁ ବଞ୍ଚିତ କଲା ତା ପାଇଁ କିଏ ଦାୟୀ ?

ସମସ୍ତେ ଏକ ସ୍ୱରରେ ପାଟି କରି ଉଠିଲେ, "କୁହ କିଏ ଦାୟୀ ?"

ସ୍ୱର୍ଗ ଭୂମିର ଗଗନ ପବନ କମ୍ପି ଉଠିଲା । ଏ ପାଟି ଶୁଣି ଅନ୍ୟ ଦେବତା ମାନେ ନିଜ ନିଜ ଜାଗାରୁ ଦୌଡ଼ି ଆସିଲେ ।

ଶ୍ରୀକୃଷ୍ଣଙ୍କ ବାମନାବତାର ଦେଖି ଦେବତାମାନେ ଆଶ୍ଚର୍ଯ୍ୟ ହେଲେ । ତାଙ୍କ କପଟତା ଦେବତାମାନେ କେବେ ବି ବୁଝି ପାରନ୍ତି ନାହିଁ ।

ଭଗବାନଙ୍କ ପାଟି ଚୁପ୍ ହୋଇଗଲା । ସେ କି ଉତ୍ତର ଦେବେ, ପିଲାମାନଙ୍କୁ ସେ କେମିତି ବୁଝେଇବେ ଯେ ମର୍ତ୍ତ୍ୟ ଲୋକରେ (ଖାସ୍ କରି ଭାରତରେ) ପିଲାମାନଙ୍କ ଅକାଳ ମୃତ୍ୟୁ ପାଇଁ କିଏ ଦାୟୀ ? କାହାକୁ ସେ ଦାୟୀ କରିବେ ? ଈଶ୍ୱର ଟିକିଏ ଚିନ୍ତା କଲେ । ତାଙ୍କ ପାଖରେ ଠିଆ ହେଇଥିଲେ ବ୍ରହ୍ମା ଓ ତାଙ୍କ ପାଖରେ ଯମରାଜ ନିଜେ ।

ଈଶ୍ୱର ପ୍ରଶ୍ନ କଲେ ଦୁଇ ଜଣଙ୍କୁ ଚାହିଁ । କଥାର ରହସ୍ୟ ମୋତେ ଟିକିଏ ବୁଝାଇ ଦିଅନ୍ତୁ । ପ୍ରକୃତରେ ଏତେ ପିଲା ଆମର ଏଠାକୁ ହଠାତ୍ କେମିତି ଆସିଗଲେ ? ଆମର କୋଉଠି ଭୁଲ ରହି ଯାଇଛି ବୋଧେ ?

ବ୍ରହ୍ମା କହିଲେ ମଣିଷର ଜନ୍ମ ଓ ମୃତ୍ୟୁ ଆମ ନିର୍ଦ୍ଧାରିତ । ଆମର ଏ ସିଷ୍ଟମ୍ ଏତେ ତ୍ରୁଟି ଶୂନ୍ୟ ଯେ ତାହା କମ୍ପ୍ୟୁଟର ଅପେକ୍ଷା ଅଧିକ ସଠିକ୍ ଭାବରେ କାମ କରେ । ପୃଥିବୀକୁ ଯିବା ଓ ଆସିବାରେ ଗୋଟିଏ ସେକେଣ୍ଡ ମଧ ଏପାଖ ସେପାଖ ହୁଏ ନାହିଁ ।

ଶ୍ରୀକୃଷ୍ଣ କହିଲେ ଏ କଥା ଠିକ୍ । କିନ୍ତୁ ମଣିଷମାନଙ୍କୁ ମଧ ଆମେ ଏତେ ସହଜରେ ବୁଝି ପାରିବା ନାହିଁ । ସେମାନେ ତାଙ୍କ ଜ୍ଞାନ କୌଶଳକୁ ଏପରି ଭାବରେ ପ୍ରୟୋଗ କରୁଛନ୍ତି ଯେ ଏବେ ସେମାନେ ପୃଥିବୀରେ ଆଉ ଏକ ସ୍ୱର୍ଗ ତିଆରି କରିବା କଥା ଚିନ୍ତା କଲେଣି । ମଣିଷର ପରମାୟୁକୁ ବଢ଼େଇ ସେମାନେ ଏବେ ଅଶୀ ନବେ ପର୍ଯ୍ୟନ୍ତ ଆଣିଲେଣି । ସେମାନେ ଏବେ ଶହେରେ ପହଞ୍ଚିଲେ ଏଠାକୁ ଆଉ ଆସିବ କିଏ ? ଆମ କ୍ଷମତା ଓ ସିଷ୍ଟମ୍‌କୁ ସେମାନେ ଚେଲେଞ୍ଜ କରୁ ନାହାନ୍ତି ?

ଯମରାଜ କହିଲେ ଏହା ଏକଦମ୍ ଠିକ୍ ପ୍ରଭୋ ! ମୋର ଦୂତମାନେ ମୋତେ ଅନେକ ଥର ରିପୋର୍ଟ କଲେଣି ଯେ ସେମାନେ ଯେତେବେଳେ ଜଣକ ପାଖରେ ପହଞ୍ଚି ତାକୁ ଆଣିବାକୁ ଚେଷ୍ଟା କରନ୍ତି ସେତେବେଳେ ଆଉ ଦଳେ କହନ୍ତି,

"ଆମେ ଛାଡ଼ିବୁ ନାହିଁ" । ସେମାନଙ୍କ ନାଁ ଡାକ୍ତର ।

ଏସବୁ ଆମ ସିଷ୍ଟମକୁ ବିଗାଡ଼ି ଦଉଚି । ବ୍ରହ୍ମା କହିଲେ ।

ମୁଁ କିନ୍ତୁ ସେ କଥା ଭାବୁ ନାହିଁ । ଯଦି ପରମାୟୁ ସରିଥିବା ଲୋକଟିକୁ ସେମାନେ ଅଧିକ ସମୟ ଅଟକାଇ ପାରୁଚନ୍ତି ତେବେ ଯୋଉମାନଙ୍କ ପରମାୟୁ ଆରମ୍ଭ ହେଉଚି ସେମାନଙ୍କୁ କେମିତି ଛାଡ଼ି ଦଉଚନ୍ତି ? ଏ ସବୁର କାରଣ ଖୋଜିବାକୁ ଚେଷ୍ଟା କରିଛନ୍ତି ?

ବ୍ରହ୍ମା କଥାଟାକୁ ହେଜିଲେ । ସତ କଥା, ଏମିତି କାହିଁକି ହେଉଚି ? କିଏ ଏମିତି କରୁଚି ? ପିଲାଙ୍କ ଅଭିଯୋଗ ଯଥାର୍ଥ ।

ପିଲାମାନେ ପୁଣି ମୁର୍ଦ୍ଦାବାଦ ଧ୍ୱନି ଆରମ୍ଭ କଲେ ।

ସେମାନେ କହିଲେ "ଜବାବ ଦିଅ, ଜବାବ ଦିଅ ।"

"ଛଳନା ଏଠି ଚଳିବ ନାହିଁ", "ଚଳିବ ନାହିଁ, ଚଳିବ ନାହିଁ ।"

ଶ୍ରୀକୃଷ୍ଣ ସୋମନଙ୍କୁ ଶାନ୍ତ ହେବାକୁ କହିଲେ । ତା ପରେ ବନ୍ଦ ଥିବା ଆଖି ଖୋଲି କହିଲେ । ଏଥିପାଇଁ ବାପ ମାଆଙ୍କୁ ହିଁ ଦାୟୀ କରା ଯାଇ ପାରିବ ।

ସଂଗେ ସଂଗେ ପ୍ରତିବାଦର ସ୍ୱର ଲମ୍ବି ଆସିଲା । ସେ ସ୍ୱର ଥିଲା ପୂର୍ବର ସବୁ ସ୍ୱର ଅପେକ୍ଷା ତୀବ୍ର ଓ ଗମ୍ଭୀର । ସତେ ଅବା ସ୍ୱର୍ଗଟା ଭାଙ୍ଗି ପଡ଼ିବ ।

ନା, ନା, ଆପଣ ସେ କଥା କହନ୍ତୁ ନାହିଁ । ସେମାନଙ୍କର କିଛି ଦୋଷ ନାହିଁ । ସେମାନଙ୍କୁ ଦୋଷୀ କରିବା ଏକ ଅପରାଧ ।

ଶ୍ରୀକୃଷ୍ଣ ପିଲାଙ୍କ ପ୍ରତିବାଦରେ ଭୟ ପାଇଗଲେ । ସେ ଭାବିଲେ ଏମାନଙ୍କ ଭିତରେ ଏତେ ଦମ୍ଭ କେଉଠୁ ଆସିଲା ? ସେ ଯେ ଭାବୁଥିଲେ ଛୋଟ ଛୋଟ ପିଲାଙ୍କୁ କୌଣସି ପ୍ରକାରେ ଭୁଲେଇ ଦେଇ ପାରିବେ, ନା ସେ କଥା ହେଲା ନାହିଁ । ସେ ଭାବିଲେ ତାଙ୍କ ଜୀବନରେ ଏଇଟାହିଁ ପ୍ରଥମ ପରାଜୟ । ସେତକ ପୁଣି ଶିଶୁ ଓ ନବଜାତମାନଙ୍କ ପାଖରେ । ତାଙ୍କୁ ଏଥର ସତ କହିବାକୁ ପଡ଼ିବ । ଛଳନାର ମାୟାଜାଲ ଭିତରେ ସତ୍ୟକୁ ଆଉ ବେଶୀ ଦିନ ଲୁଚାଇ ହେବ ନାହିଁ ।

ସେ ଶେଷରେ ଘୋଷଣା କଲେ, ତୁମ ମାନଙ୍କ ପ୍ରତି ହେଉଥିବା ଅନ୍ୟାୟ ଓ ଅବିଚାର ପାଇଁ ଯିଏ ଦାୟୀ ଆମେ ସେମାନଙ୍କୁ ଖୁବ୍ ଶୀଘ୍ର ଆଣି ତୁମମାନଙ୍କ ସାମନାରେ ହାଜର କରାଇବୁଁ ।

ଯମରାଜ କଥା ଯୋଡ଼ିଲେ, ସେମାନଙ୍କୁ ନର୍କକୁ ନିକ୍ଷେପ କରିବୁଁ । ସେମାନେ କେହି ଏଥିରୁ ବର୍ତ୍ତି ପାରିବେ ନାହିଁ ।

(ନାଗରା - ୨୦୧୨)

***

# ଅଶେଷ ଅନ୍ଧାର

ରସାନନ୍ଦ ବାବୁ ସକାଳେ ଉଠି ତାଙ୍କ ସ୍ତ୍ରୀଙ୍କୁ କହିଲେ - ମୁଁ ଆଜି ଟିକେ ବ୍ୟସ୍ତ ରହିବି ଦିନଯାକ । ବାହାରକୁ ମଧ ଯାଇପାରେ । କେତୋଟି ମିଟିଂ ଅଛି । ଏସବୁ ବ୍ୟସ୍ତତା ଭିତରେ ମୁଁ ଟେଲିଫୋନ୍ ଧରିବାକୁ ହୁଏତ ବେଳ ପାଇବି ନାହିଁ । କିମ୍ବା ବାଜେ କଲ୍ ଧରି ମୁଁ ସମୟ ନଷ୍ଟ କରିବାକୁ ଚାହେଁନାହିଁ । ନଗେନ୍ଦ୍ର ଆଜି ଆସିବ ନାହିଁ । ତେଣୁ ଅଫିସ୍ ରୁମ୍‌ଟା ଆଜି ବନ୍ଦ ରହିବ । ମୁଁ ଅବଶ୍ୟ ଆଉ ଜଣେ ଲୋକ ରଖିବା କଥା ଚିନ୍ତା କରୁଛି । ତେବେ ସେ କଥାଟା ଏଇ ଝାମେଲାଟା ସରିଗଲେ ସ୍ଥିର ହୋଇଯିବ ।

ସେ ଚା' ପିଇସାରି କପ୍‌ଟା ଟେବୁଲ ଉପରେ ରଖିଦେଲେ, ତା'ପରେ କହିଲେ, ତମେ ଟିକେ ଆଜି ସତର୍କ ଥିବ । ଯେ କୌଣସି ମୁହୂର୍ତ୍ତରେ କଲ ଆସିଯିବ ।

ମୁଁ କଅଣ କରିବି ? ମୋର ତେଣେ କେତେ କାମ । ମୁଁ ଟେଲିଫୋନ୍‌କୁ କେତେ ଜଗିବି ? ତା ପରେ ତମେ ପୁଣି ବାଜେ କଲ୍ କଥା କହୁଛ ! ମୁଁ କେମିତି ଜାଣିବି କୋଉଟା ବାଜେ, କୋଉଟା ଭଲ ? ସ୍ତ୍ରୀ ସୁମତି ଦେବୀ କହିଲେ ଚା କପ୍‌ଟା ଉଠାଉ ଉଠାଉ ।

ତୁମେ ଏତିକି ଜାଣି ପାରିବ ନାହିଁ କୋଉଟା ଭଲ କୋଉଟା ଖରାପ ? କଲ କରିବା ଲୋକ କହିବନି ? ରସାନନ୍ଦ ବାବୁ ଟିକେ ବିରକ୍ତ ହେଲେ ।

ସେ କଅଣ କହିବ ମୁଁ ବାଜେ ଲୋକ କହୁଛି ? ନା କହିବ ମୁଁ ଭଲ ଲୋକ କହୁଛି ? କଅଣ ଯେ ତୁମେ କୁହ । ସୁମତି ଆହୁରି ବିରକ୍ତ ହେଲେ ।

ସେ କଥା କଅଣ କେହି କୁହେ ? ମୋର କହିବାର କଥା ଚିଫ୍‌ଙ୍କ ଅଫିସରୁ ଫୋନ ଆସିଲେ ସେ ପ୍ରଥମେ କହିବ ମୁଁ ଚିଫ ଅଫିସରୁ କହୁଛି । ଅନ୍ୟ କୋଉଠୁ ଆସିଲେ ସେ ତା ନିଜ ନାଁ କହିବ ।

ଚିଫ୍‌ଙ୍କ ଅଫିସରୁ ଆଜି ଫୋନ ଆସିବାର ଅଛି ? ମୋତେ ତ ସେମିତି କିଛି ଲାଗୁନି । ସୁମତି ପୁଣି ଥରେ ଚେଆରରେ ବସି ପଡ଼ିଲେ ଏବଂ କଲିଂ ବେଲ୍‌ର ସୁଇଚ୍ ଟିପିଲେ । ରୋଷେଇ ଘରୁ ଆୟା ଦଉଡ଼ି ଆସିଲା । ମାଆ ଚା' ଆଣିବି ?

ନାଁ ଦରକାର ନାହିଁ । ଏଇଟା ଉଠେଇ ନେଇଯା । ସେ କପ୍ ପ୍ଲେଟ ତା ଆଡ଼କୁ ବଢ଼େଇ ଦେଲେ । ଆୟା ଚାଲିଗଲା ।

ତୁମେ କେମିତି ଜାଣିଲ ଆଜି ସେଠୁ ଫୋନ୍ ଆସିବାର ନାହିଁ ବୋଲି ? ତୁମର ଏଇ ନେଗେଟିଭ୍ ଆଟିଚିଉଟ୍ ମୋତେ ଭଲ ଲାଗେନା । ସେଇଥିପାଇଁ ତ ମୁଁ ସୁଧନ୍ୟାକୁ ବାହାର କରି ଦେଇ ସୁମତିକୁ ଆଣିଲି । ତଥାପି ସେଇ କଥା । ରାଜନୀତି ବିଷୟରେ ତାର ମୋଟେ କିଛି ଧାରଣା ନ ଥିଲା । ତୁମେ ପଲିଟିକାଲ ସାଇନ୍ସରେ ଏମ.ଏ. । ଅଧାପିକାରୁ ମୁଁ ତୁମକୁ ଆଣି ଅଂକଶାୟିନୀ କଲି । ତମେ ଟିକିଏ ଆଗକୁ ଦେଖ । Beyond horizon ଦେଖିବା କଥା

ସୁମତି ହସିଲେ । କହିଲେ ମୁଁ Beyond horizon ଦେଖୁ ଥିବାରୁ ଏକଥା କହିଲି । ଆଜି ତୁମଠାରୁ ଚିଫ୍‌ଙ୍କ ଅଫିସ୍‌ରୁ ଫୋନ୍ ଆସିବାର ନାହିଁ । ହଁ ତେବେ ଗୋଟିଏ କଥା, ଗତକାଲି ମଧ ରାତିରେ ତୁମର ସେନାପତି ସହିତ କଅଣ କଥା ହେଲା ସେ କଥା ମୁଁ ଜାଣିନି । ତୁମେ କହିନ । କିନ୍ତୁ ଖବରଦାର କହି ଦଉଚି ତୁମେ ଆଉ ଥରେ ହେଲେ ମୋ ସାମନାରେ ସେ ସୁଧନ୍ୟା ନା ଉଚ୍ଚାରଣ କରବ ନାହିଁ । ସେ ଉଠି ଚାଲିଗଲେ ।

ଅରେ, ଆରେ ତମେ ଚାଲି ଯାଉଚ ଯେ ?

ସୁମତି ରସାନନ୍ଦଙ୍କ ଦ୍ୱିତୀୟ ପତ୍ନୀ । ପତ୍ନୀ ନୁହେଁ କିନ୍ତୁ ପତ୍ନୀର ମାନ୍ୟତା ପାଇଛନ୍ତି । ସେମାନଙ୍କର ବିବାହ ହେଇନାହିଁ କି ପ୍ରଥମ ବିବାହିତ ପତ୍ନୀ ସୁଧନ୍ୟାକୁ ଛାଡ଼ପତ୍ର ମଧ ଦେଇ ନାହାନ୍ତି । ରସାନନ୍ଦ କହନ୍ତି ମୁଁ ସତ୍ୟ ଓ ବିଶ୍ୱାସନୀୟତାରେ ବିଶ୍ୱାସ କରେ । ଅଗ୍ନିକୁ ସାକ୍ଷୀ ରଖିବା କି କୋର୍ଟରେ ଶପଥ କରବା ଏ ସବୁର ମୂଲ୍ୟ ନାହିଁ ଯଦି ମଣିଷ ଜବାବରେ ହାରିଯାଏ । ବାସ୍, ଏଇ ପଦେ କଥାରେ ସୁମତି ଆସିଗଲେ ରସାନନ୍ଦଙ୍କ ତ୍ରିତଳ ରାଜ ଉଆସକୁ । ଆସିଲେ ବୋଲି କହିଲେ ଠିକ୍ ହେବ ନାହିଁ । ତାଙ୍କୁ ଉଠେଇ ଅଣାଗଲା । ସୁମତି ଅବଶ୍ୟ ରସାନନ୍ଦଙ୍କ ସହିତ ରାଜନୀତିରେ ସାହାଯ୍ୟ କରୁ କରୁ ଯୋଡ଼ି ହୋଇ ଯାଇଥିଲେ । ଏଇଟା ଅବଶ୍ୟ ସାଧାରଣ କଥା । କିନ୍ତୁ ତୁମେ ଥାଉ ଥାଉ ଆଉ ଜଣେ କେମିତି ଆସିବ ? ତେଣୁ ସୁମତିଙ୍କ ତରଫରୁ କୁଆଡ଼େ ପ୍ରସ୍ତାବ ଆସିଗଲା ତାଙ୍କୁ ଉଠେଇ ଆଣ । ଜଣେ ଆସିଗଲେ ଆଉ ଜଣେ ନିଶ୍ଚୟ ଯିବ ।

ରସାନନ୍ଦ ଏଇଥିପାଇଁ ସୁମତିଙ୍କ କଥାକୁ ବେଶୀ ମାନ୍ୟତା ଦିଅନ୍ତି । ଦେବା କଥା । ଦ୍ୱିତୀୟା ଯେ ସବୁବେଳେ ପ୍ରାଥମିକତା ପାଏ ଏଥିରେ ସନ୍ଦେହ ନାହିଁ । ରସାନନ୍ଦ ଟିକେ ନରମ ଗଳାରେ କହିଲେ । ଆରେ ତୁମେ ଚାଲି ଗଲ ଯେ । ଆମ କଥା ସରିନାହିଁ ।

ଗଡ଼ ଜିଣିଗଲେ ସୁମତି । ଗମ୍ଭୀର ହେଇ ସେ ଆସି ବସିଲେ ତାଙ୍କ ସାମନାରେ । ତା ପରେ ପଚାରିଲେ, ତମେ ଆଗ କୁହ, ତମେ ଆଜି ମାନେ ଏବେ କେଉଁ ଦଳରେ ଅଛ ? ତା ମାନେ ତମେ ଗତକାଲି ରାତିରେ ସେନାପତି ସହିତ କଅଣ କଥାବାର୍ତ୍ତା ହେଲ ? ଏଡଭାନ୍ସ ରଖିଲ କି ?

ରସାନନ୍ଦ ହସିଲେ । କହିଲେ, ଓ, ଏତେବେଳେ ବୁଝିଲି ବିରାଡ଼ିର ମନ ଯାଇ ଶିକାରେ । ଆରେ ଏଡଭାନ୍ସ ନେଇଥିଲେ ମୁଁ ତୁମକୁ ଦେଇ ନଥାନ୍ତି ? ସେନାପତିର ଗୋଟାଏ କି ପାର୍ଟି ମ ? ତାର ପିତ୍ତ କେତେ ସେ ମୋତେ କିଣିବ ? ଚିଫ୍ ତ ସାହସ କରି ପାରୁନି । ଇଏ କଅଣ କରିବ ? ସେ ସୁମତିଙ୍କ ପାଖକୁ ଘୁଞ୍ଚି ଆସିଲେ ଏବଂ କହିଲେ, ମୁଁ ସେନାପତିକୁ ଶୁଣେଇ ଦେଲି ଦୁଇ କୋଟିରୁ ମୁଁ ତଳକୁ ଖସି ପାରିବିନି । ସେ ପଳେଇଲା ।

ଏବେ ତୁମର ଭବିଷ୍ୟତ କାର୍ଯ୍ୟକ୍ରମ କଅଣ ? ସୁମତି ପଚାରିଲେ ।

ମୁଁ ତ ସେଇ କଥା କହୁଚି ।

ଚିଫ୍‌ଙ୍କ ଅଫିସରୁ କଲ ଆସିବାର ସମ୍ଭାବନା ବେଶୀ । ଆଜି ନ ହେଲେ କାଲି ।

ଟେଲିଫୋନ୍ ବାଜି ଉଠିଲା ।

ରସାନନ୍ଦ ବ୍ୟସ୍ତ ହୋଇ ଉଠିଗଲେ । ଗଲାବେଳେ ସୁମତିଙ୍କୁ କହିଲେ, ଦେଖିଲ, ମୁଁ କହୁ ନଥିଲି !

ସେ ଯାଇ ଫୋନ୍ ଧରିଲେ । ହାଲୋ ! ତା ପରେ ମୁହଁଟାକୁ ବିକୃତ କରି କହିଲେ "ବାବୁ ଘରେ ନାହାନ୍ତି । ପରେ ଟେଲିଫୋନ କର ।" ଆଉ ଥରେ ରିଂଗ ଆସିଲା । ରସାନନ୍ଦ ବାବୁ ପୁଣି ଧରିଲେ ଏବଂ କହିଲେ ମୁଁ ପରା କହିଲି.... ।

ତାପରେ ଟିକିଏ ରହି ସେ ହସିଲେ ଏବଂ କହିଲେ ଆରେ ଗୌତମ, ତୁ କିରେ ? ୟା ପୂର୍ବରୁ ତୁ ଫୋନ କରିଥିଲୁ ?

ନା, ମୁଁ ତ କରିନି ।

ହଁ, ତେବେ ଠିକ୍ ଅଛି । କହ ।

ମୁଁ ଶୁଣିଲି ତୁମେ କୁଆଡ଼େ ସରକାରୀ ଦଳରେ ଯୋଗ ଦେଇଚ ? ମୁଁ ସେଇକଥା ଶୁଣିଲି । ଗାଁରେ ହାଟ ହେଇ ଗଲାଣି ।

ଗୌତମ ରସାନନ୍ଦଙ୍କ ପୁତୁରା । ସାନଭାଇର ପୁଅ । ସେ ମଧ୍ୟ ଥିଲା ରସାନନ୍ଦଙ୍କ ନିର୍ବାଚନ ବେଳର ପ୍ରଧାନ କାରପଟଦାର । ନିର୍ବାଚନର ସମସ୍ତ କାମ ସିଏ କରେ । ଏପରିକି ରସାନନ୍ଦ ତାଙ୍କ ପ୍ରଥମ ସ୍ତ୍ରୀ ସୁଧନ୍ୟା ଅପେକ୍ଷା ଗୌତମକୁ ବେଶୀ ବିଶ୍ୱାସ କରନ୍ତି । ସୁଧନ୍ୟା ଅନେକ ସମୟରେ ଟଙ୍କାର ହିସାବ

ରଖନ୍ତି ନାହିଁ, ମାନେ ଜାଣିଶୁଣି ଏବଂ ସେ ଟଙ୍କା କୁଆଡ଼େ ଯାଏ କେଜାଣି ପରେ ଯେତେବେଳେ ଭିଜିଲାନ୍ସ ଘର ରେଡ୍ କଲା ସେତେବେଳେ ଦେଖାଗଲା ସୁଧନ୍ୟାଙ୍କ ନାମରେ ଦୁଇଟା ଆକାଉଣ୍ଟ ସୁଇସ୍ ବ୍ୟାଙ୍କରେ । ରସାସନ୍ଦ ଏଇଟାକୁ ବିଶ୍ୱାସ ଘାତକତା ବୋଲି କହିଥିଲେ । ତେବେ ସୁଧନ୍ୟା କିନ୍ତୁ କହିଥିଲେ ଏଥିରୁ ନିର୍ବାଚନର ସୁପରିଚାଳନା ପ୍ରମାଣିତ ହେଉଛି । ଅଯଥା କର୍ମୀମାନଙ୍କ ପଛରେ ଏତେ ବେଶୀ ଖର୍ଚ୍ଚ କରିବା କଅଣ ଦରକାର । ସେ କହିଲେ, ତୁମେ କୁହ ନିର୍ବାଚନରେ ମଦ ଓ ମାଇକିନିଆଙ୍କ ପାଇଁ ଖର୍ଚ୍ଚ ଦେଖେଇ ହେବ ନାହିଁ । ଅଥଚ ତମ ଲୋକେ ଭୋଟ୍ ପାଇଁ ଯୋଉ ଦାମିକା ନାରୀମାନଙ୍କୁ ମୁମ୍ବାଇରୁ ଭଡ଼ାରେ ଆଣିଲେ ମୁଁ ସେ ଖର୍ଚ୍ଚ କମେଇବା ସତ୍ତ୍ୱେ ତୁମେ ଜିଣିଲ । ପଚାଶ ଲକ୍ଷ ଏଥିରୁ ବଞ୍ଚିଲା । ମୁଁ ତୁମ ଭବିଷ୍ୟତ ପାଇଁ ରଖିଛି । ରାଜନୀତିରେ ଭବିଷ୍ୟତରେ ସୁରକ୍ଷାଟା ବଡ଼କଥା ।

ଏଇ ସବୁ କଥା ଯେତେବେଳେ ସୁଧନ୍ୟା ଭିଜିଲାନ୍ସ ଟିମ୍ ଆଗରେ ଖୋଲାଖୋଲି କହିଲେ, ସେତେବେଳେ ସାରା ରାଜ୍ୟରେ ଗୋଟିଏ ହଇଚଇ ସୃଷ୍ଟି ହେଲା । ଗଣମାଧ୍ୟମ ତ ଥେଇ ଥେଇ ନାଚିଲେ ।

କିନ୍ତୁ ସୁଧନ୍ୟାଙ୍କ ଏ କାମ ପାଇଁ ସବୁ ରାଜନେତା (ସବୁ ଦଳର) ତାଙ୍କୁ ନିନ୍ଦା କରିଥିଲେ । ବିଶେଷ କରି କେତେକ ନେତାଙ୍କ ସହଧର୍ମିଣୀ ଯୋଉମାନେ ସୁଧନ୍ୟା ଓ ତାଙ୍କ ପରିବାର ସହିତ ଘନିଷ୍ଠ ସମ୍ପର୍କ ରଖିଥାଆନ୍ତି ସେମାନେ ଆସି ତାଙ୍କୁ ବୁଝେଇଲେ । ନାନୀ, ଏଇଟା ଠିକ୍ ହେଲାନି । ଯଦିବା ଏମିତି କରିଥିଲ, କିଏ ବା ଏମିତି କରେନି ? ତା ବୋଲି ପୋଲିସ୍ ଆଗରେ କହିବାଟା ମୋତେ ଠିକ୍ ହେଲାନି । ତୁମେ ଚୁପ୍ ରହି ଥାଆନ୍ତ । ମୁଁ କିଛି ଜାଣେନା କହି ଥାଆନ୍ତ । ଏଥିରେ ତୁମର କିଏ କଅଣ କରି ଥାଆନ୍ତା ? ସୁଧନ୍ୟା କିନ୍ତୁ ଅଟଳ ମହାମେରୁ । ସେ କହିଲେ ମୁଁ ମିଛ କହି ପାରିବି ନାହିଁ । ମୋତେ ସେ ସବୁ ଆସେ ନାହିଁ । ମୁଁ ନିର୍ବାଚନର ବାଜେ ଖର୍ଚ୍ଚ ରୋକିଚି । ମାଇକିନିଆଙ୍କୁ ଭଡ଼ାରେ ଆଣିବା କଅଣ ଦରକାର ? ସେଥିରେ ପୁଣି ମଦ । ତୁ ଜାଣିନୁ ୟାଙ୍କୁ ! ଇଏ ବି ଖାଲି ସେମାନଙ୍କୁ ସାଙ୍ଗରେ ନେଇ ନାଚିଲେ । ସେ ଟୋକି ବି ସେମିତି । ଆଲୋ ପଇସା ପାଇବ ବୋଲି ମର୍ଦ୍ଦମାନେ ଯାହା କହିବେ ସେଇଆ କରିବ ?

ସୁଧନ୍ୟା କହିଲେ ମୁଁ ଯୋର ଦେଇ କହୁଛି । ସବୁତ ସତ କହି ଦେଇଛି । ହାତ କାଟି ଲେଖି ଦେଇଛି । ଦେଖିବା କୋଉ ପୋଲିସ୍ କି କୋର୍ଟ ଆମର କଅଣ କରିବ ? ଯାଉ ସୁପ୍ରିମ୍‌କୋର୍ଟ ଯାଏ ।

ରସାନନ୍ଦବାବୁ କିନ୍ତୁ ଏଥିର ସନ୍ତୁଷ୍ଟ ହେଇ ନଥିଲେ । କେହି ବି ତାର ଧର୍ମପତ୍ନୀର ଏ ପ୍ରକାର ତଥା ସାଧାରଣ ସତ୍ୟବାଦୀତାକୁ ପ୍ରଶଂସା କରନ୍ତା ନାହିଁ । ରାଜନୀତିରେ ପ୍ରଶ୍ନ ଉଠୁନି । ସେଥିପାଇଁ ସବୁବେଳେ ରାଜନୀତିରେ ଜଣେ ଅସାଧାରଣ ଧୂର୍ତ୍ତ ନାରୀକୁ ସ୍ତ୍ରୀ ପଦରେ ଅଭିଶିକ୍ତ କରାଯାଇଥାଏ । ରାଜନୀତିରେ ଗୋଟିଏ ସୁସ୍ଥ ଓ ସୁନ୍ଦର ଜୀବନ ଯାପନ ପାଇଁ ଖାଲି ଅତ୍ୟନ୍ତ ସୁନ୍ଦରୀ ନୁହେଁ ଖୁବ୍ ସୁଚତୁର ନାରୀ ବା ସ୍ତ୍ରୀଟିଏ ମଧ ଏକାନ୍ତ ଆବଶ୍ୟକ । ରାଜନେତାଙ୍କ ପାଇଁ ସବୁ ପରାମର୍ଶ ଗୋଟିଏ କଥା, ବେଡ୍‌ରୁମ୍‌ର ପରାମର୍ଶ ଆଉ ଗୋଟିଏ କଥା । ଏ ସବୁକୁ ଏଡିଦେଲେ ସବୁ କରି ହେବ କିନ୍ତୁ ରାଜନୀତି ନୁହେଁ ।

ରସାନନ୍ଦ ବାବୁ ଏସବୁ କଥା ଯେତେବେଳେ ତାଙ୍କର ବିଶ୍ୱସ୍ତ ବନ୍ଧୁମାନଙ୍କ ସହ ଆଲୋଚନା କଲେ, ସେତେବେଳେ ସେମାନେ ଗୋଟିଏ ନିଷ୍କର୍ଷରେ ପହଞ୍ଚିଲେ ଯେ ଏଥିରେ ଅବଶ୍ୟ କିଛି ହେବନାହିଁ ସତ, କେବଳ ତାଙ୍କର ଏବେ ନିଜର ସଫେଦ୍ ଭାବମୂର୍ତ୍ତିରେ ଟିକିଏ ଆଞ୍ଚ ଆସିବ । ଆଉ ଜଣେ କହିଲେ ତାଙ୍କୁ ଏଇଟା ଫେରେଇ ଆଣିବାକୁ ବେଶ୍ କିଛି ଦିନ ଲାଗିବ ।

ବାଜେ କଥା । ଆଉ ଜଣେ କହିଲେ । ସେ କହିଲେ ମୋ କଥା ମାନନ୍ତୁ । ଭାବମୂର୍ତ୍ତି କଥାଟା ସ୍ଲେଟ୍‌ର ଦାଗ ପରି । ଆପଣ ଗାର ଟାଣନ୍ତୁ, ପୁଣି ଲିଭେଇ ଦିଅନ୍ତୁ । କେତେ ସମୟ ଲାଗିବ । ରାଜନୀତିରେ ବିଶେଷ କରି ପୁରୁଷମାନଙ୍କ କ୍ଷେତ୍ରରେ ଭାବମୂର୍ତ୍ତିଟା କିଛି ନୁହେଁ ।

ପୋଲିସ୍ ରେଡ ପରେ ରସାନନ୍ଦ ବାବୁ ତାଙ୍କର ବିଶ୍ୱସ୍ତ ଆଡ୍‌ଭୋକେଟ୍‌ଙ୍କୁ ଡକେଇଲେ । ରାଜନୀତିରେ ବିଶେଷ କରି ନେତାମାନଙ୍କର ଆଡ୍‌ଭୋକେଟ୍ ହେଉଛି ଗୋଟିଏ ଗୋଡ଼ । ବିନା ଓକିଲରେ ରାଜନୀତି କରି ହୁଏ ନାହିଁ । ଦକ୍ଷ ଓ ଚତୁର ରାଜନେତାମାନେ ବିଭିନ୍ନ ସ୍ତରରେ ଭିନ୍ନ ଭିନ୍ନ ପରାମର୍ଶଦାତା ରଖିବା ବିଧେୟ । ରାଜନୀତିରେ ସତ୍ୟ ଓ ମିଥ୍ୟା ଭିତରେ କିଛି ଫରକ ନଥାଏ । ତେବେ ସେ ଯା ହେଉ ରସାନନ୍ଦ ବାବୁ ଓକିଲ ସହିତ ପରାମର୍ଶ ପରେ ଗୋଟାଏ ସାମ୍ବାଦିକ ସମ୍ମିଳନୀ ଡାକିଲେ । ହୋଟେଲ୍ ତାଜ ଇଣ୍ଟରନେସ୍‌ନାଲର ରୟାଲ ହଲ୍‌ରେ ଏ ସମ୍ମିଳନୀ ଅନୁଷ୍ଠିତ ହେଇଥିଲା । ସେଥିରେ ରସାନନ୍ଦ ଓ ତାଙ୍କ ବିଶ୍ୱସ୍ତ ସହକର୍ମୀଙ୍କ ସମେତ ଅନ୍ୟାନ୍ୟ ବନ୍ଧୁ ଉପସ୍ଥିତ ଥିଲେ । ସମସ୍ତେ କହନ୍ତି ଏତେ ବଡ଼ ପ୍ରେସ୍ କନ୍‌ଫରରେନ୍ସ ରାଜନୀତିରେ ଆଗରୁ କେବେ ହେଇ ନଥିଲା । ଯଦି ହୋଟେଲ୍ ତାଜ ଇଣ୍ଟରନେସଲାଲ କଥା କେହି ଜାଣେ, ସେ ନିଶ୍ଚୟ ଜାଣିଥିବ ଯେ ସେଠି ଭାରତୀୟ ନୁହେଁ, ମୋଗଲୀୟ ମଧ ନୁହେଁ ବରଂ ପ୍ରାଚ୍ୟ

ଓ ପାଶ୍ଚାତ୍ୟ ସଂସ୍କୃତିର ଅପୂର୍ବ ସମ୍ମିଶ୍ରଣ କେମିତି ଘଟିଛି ସେ କଥା ଜାଣିଥିବ ହୋଟେଲ୍‌ରେ ସେଦିନ ଅନ୍ୟ ସମସ୍ତ କାର୍ଯ୍ୟକ୍ରମକୁ ବାତିଲ କରାଯାଇଥିଲା ।

ରସାନନ୍ଦ ବାବୁ ସେ ଦିନ ସେଇ ହୋଟେଲ୍‌ରେ ଘୋଷଣା କଲେ ଯେ ସୁଧନ୍ୟା ଗତ ବର୍ଷଠାରୁ ମାନସିକ ରୋଗରେ ଆକ୍ରାନ୍ତ ଅଛନ୍ତି । ଏବଂ ସେ ଏଥିପାଇଁ ବହୁ ବିଶିଷ୍ଟ ମାନସିକ ରୋଗ ବିଶେଷଜ୍ଞଙ୍କ ଠାରେ ଚିକିତ୍ସିତ ହେଉଛନ୍ତି । ଏ ସବୁ ଆଜି କିଛି ନୂଆ କଥା ନୁହେଁ । ଆପଣ ଏ ସମସ୍ତଙ୍କୁ ପଚାରିପାରନ୍ତି । ସେ ତାଙ୍କ ସହିତ ଉପସ୍ଥିତ ଥିବା ଗୋଟିଏ ଦଳ ଆଡ଼କୁ ହାତ ଦେଖାଇଲେ । ଏମାନେ ସମସ୍ତେ ମୋ ଗାଁର ତଥା ମୋ ପରିବାରର ଲୋକ । ଏମାନଙ୍କ ଭିତରୁ କିଛି ମଧ ସୁଧନ୍ୟାଙ୍କୁ ଡାକ୍ତରମାନଙ୍କ ପାଖକୁ ନେବା ଆଣିବା କରିବା ସହିତ ଘରେ ସେ କେମିତି ବ୍ୟବହାର କରନ୍ତି ସେ ବିଷୟରେ କହିବେ । ଏ କଥା କହିଲା ବେଳେ ରସାନନ୍ଦବାବୁ ସୁସଜ୍ଜିତ ଥିବା ଦଳେ ନାରୀଙ୍କ ଆଡ଼କୁ ହାତ ଦେଖେଇଥିଲେ ।

ଟିଭି କ୍ୟାମେରା ସବୁ ସେତେବେଳ ଖୁବ୍ ଚଞ୍ଚଳ ହୋଇଉଠିଲା ।

ବାସ, ତା ପରେ ଆଉ କିଛି ଦରକାର ନ ଥିଲା ।

ସେଇ ଦିନଠାରୁ ସୁମତି ସେ ଘରକୁ ପ୍ରବେଶ କଲେ । ସୁଧନ୍ୟା ସେଇ ଦିନଠୁ କୁଆଡ଼େ ଗଲେ ସେ କଥା କେହି ଜାଣିଲେନି । ଜାଣିଲେନି ମାନେ ଗଣମାଧମରେ ସେ କଥା ଆଉ କିଛି ପ୍ରକାଶ ପାଇଲାନି । ବାହାରେ ସମସ୍ତେ ଜାଣିଲେ ସୁମତି ରସାନନ୍ଦଙ୍କ ଚିଫ୍ ପଲିଟିକାଲ ଏଡ୍‌ଭାଇଜର । ଅନ୍ୟ ଦିଗେ ଗୌତମ ହେଲେ ସେଇ ଦିନଠୁ ରସାନନ୍ଦଙ୍କ ମୁଖ୍ୟ ଏରିଆ ଡେଭଲପ୍‌ମେଣ୍ଟ ଅର୍ଗାନାଇଜର । ସେ ମଧ ହେଲେ ରସାନନ୍ଦଙ୍କ ଡାହାଣ ହାତ ସବୁ କଥାରେ ।

ସେଇ ଦିନଠୁ ସୁଧନ୍ୟାଙ୍କ ବିଷୟରେ ଅନେକ କଥା ଶୁଣାଯାଏ । କେହି କେହି କହନ୍ତି ସୁଧନ୍ୟା ସେଇ ତ୍ରିତଳ ପ୍ରାସାଦର କୌଣସି ଗୋଟିଏ ନିଭୃତ କୋଠାରୀରେ ବନ୍ଦୀ ଅଛନ୍ତି । ତାଙ୍କ ପାଖରେ ପୋଇଲୀ ଜଣେ ଦି' ଜଣ ଅଛନ୍ତି । ତାଙ୍କୁ ଅତି ସ୍ପଷ୍ଟ ଭାବେ କହି ଦିଆଯାଇଛି ଯେ, ତୁମେ ତୁମର ସତ୍ୟ ପ୍ରକାଶର ଅପକର୍ମ ପାଇଁ ତୁମକୁ "ପାଗଳିନୀ" ବୋଲି ଘୋଷଣା କରାଯାଇଛି । ତେଣୁ ତମେ ବ୍ୟସ୍ତ ହୁଅନା । ତମେ କିଛି ଦିନ ଏକ ପ୍ରକାର ନିର୍ବାସନରେ ରୁହ । ସବୁଠାରୁ ଭଲ ହେବ ତମେ ଏବେ ସମସ୍ତଙ୍କୁ କୁହ "ରସାନନ୍ଦ କିଏ, ମୁଁ ଜାଣେନା' । ମୋର କିଛି ମନେ ନାହିଁ । କିନ୍ତୁ ଆଉ କେହି କେହି କହନ୍ତି ରସାନନ୍ଦ କଅଣ ଏଡ଼େ ବୋକା ଯେ ତାଙ୍କୁ ନିଜ ଘରେ ରଖିବେ ? ସେ ତାଙ୍କୁ ଅନ୍ୟତ୍ର କୋଉଠି ରଖିଛନ୍ତି । ଅନ୍ୟତ୍ର ମାନେ ରସାନନ୍ଦଙ୍କ ବମ୍ବେ, ଦିଲ୍ଲୀ, ସିମଲା ପରି

ଅନେକ ଜାଗାରେ ଘର ଅଛି । କୁହାଯାଏ ବାହାରେ ଅର୍ଥାତ ଆମେରିକା, ଇଂଲଣ୍ଡରେ ମଧ୍ୟ ଅଛି । ଯାହାର ସୁଇସ୍ ବ୍ୟାଙ୍କରେ ଆକାଉଣ୍ଟ ଅଛି ତାର ଫରେନ୍‌ରେ ଘର ନାହିଁ ବୋଲି କିଏ କହିବ ? ସୁଧନ୍ୟାଙ୍କୁ ସେଠାକୁ ଚାଲାଣ କରା ହେଇଥିବ । ଥରେ ଏମିତି କଥା ଉଠିଲା ଯେ, ସବୁ ସତ କଥା ପ୍ରକାଶ କରି ଦେଇଥିବାରୁ ସୁଧନ୍ୟାଙ୍କ ଉପରେ ପ୍ରତିଶୋଧ ନେବାପାଇଁ ତାଙ୍କୁ କାନାଡ଼ା କି ସେଇଭଳି କୌଣସି ଜାଗାରେ ଗୋଟିଏ ମୋଟା ଅଙ୍କରେ ବିକ୍ରି କରି ଦିଆଯାଇଛି । ବାସ୍ ଲୋକଟା ଖାଲି ଖାଇ ପିଇ କାମ କରିପାରେ । ରସାନନ୍ଦ ଯେ ଏ ପ୍ରକାର କାମ କରି ପାରନ୍ତି ଏ କଥା ସମସ୍ତେ ଜାଣନ୍ତି ।

ତାଙ୍କ ଏରିଆରେ ତାଙ୍କ ବିଷୟରେ ଲୋକେ କୁହାକୁହି ହୁଅନ୍ତି ଯେ, ରସାନନ୍ଦଯେ କୌଣସି ବିଧବା ମୁଣ୍ଡରେ ସିନ୍ଦୁର ଲଗେଇ ଦେଇ ପାରନ୍ତି ଏବଂ ଯେ କୌଣସି ସଧବା ମୁଣ୍ଡରୁ ନିମିଷକେ ସିନ୍ଦୁର ପୋଛି ଦେଇ ପାରନ୍ତି । ଏଇଥିପାଇଁ ନିର୍ବାଚନ ବେଳେ ତାଙ୍କର ସବୁଠାରୁ ବଡ଼ ଯୋଗ୍ୟତା ହେଲା, ସେ ବର୍ଷ ବର୍ଷ ଧରି ଜେଲ୍‌ରେ ରହିଲେ ମଧ୍ୟ ସେ ନିର୍ବାଚନରେ ବହୁ ଅଧିକ ଭୋଟରେ ଜିତନ୍ତି ଏବଂ ଅନ୍ୟ ସମସ୍ତଙ୍କ ଜମାନତ ଉଡ଼ିଯାଏ । ଏବଂ ତା ପରେ ସେ ହସି ହସି ଜେଲ୍‌ରୁ ମୁକୁଳି ଆସନ୍ତି । ସେତେବେଳେ ମହାମାନ୍ୟ ହାଇକୋର୍ଟ ମଧ୍ୟ ମନ୍ତବ୍ୟ ଦିଅନ୍ତି ଯେ ଜଣେ ନିର୍ବାଚିତ ଲୋକ ପ୍ରତିନିଧିଙ୍କୁ ବେଶୀ ଦିନ ଅଟକେଇ ରଖିଲେ ଭୋଟରମାନଙ୍କ କଥା କିଏ ଦେଖିବ ? ସପକ୍ଷବାଦୀ ଓକିଲ ମଧ୍ୟ କହନ୍ତି ଲୋକ ପ୍ରତିନିଧି ବେଶୀ ଦିନ ଜେଲ୍‌ରେ ରହିଲେ ଗଣତନ୍ତ୍ର ବିପନ୍ନ ହେବ । ଏହା ଏକ ଜନମଂଗଳ ରାଷ୍ଟ୍ରର ନୀତି ହେଇ ନ ପାରେ ।

ସେଇ ରସାନନ୍ଦ ସେ ଦିନ ଯେତେବେଳେ ଗାଁରେ ଥିବା ପୁତୁରା ଗୌତମ ଠାରୁ ଖବର ପାଇଲେ ଯେ ସରକାରରେ ଯୋଗଦେବା କଥା ଗାଁରେ ପ୍ରଚାର ହେଇ ସାରିଲାଣି ସେ ଆଶ୍ଚର୍ଯ୍ୟ ହେଲେ । କଥାଟା ରସାନନ୍ଦ ଓ ଚିଫ୍‌ଙ୍କ ବ୍ୟତୀତ ଆଉ କେହି ଜାଣି ନଥିଲା ବେଳେ ଗାଁକୁ କେମିତି ଗଲା ? ତେବେ କଅଣ ଚିଫ୍‌ଙ୍କ ଅଫିସ୍ ସିକ୍ରେସି ରଖୁନାହିଁ । ତା'ବି ତ ସମ୍ଭବ ନୁହେଁ । କାରଣ ସ୍ୱାଧୀନତାଠାରୁ ଆଜି ଯାଏ ଯେତେ ଚିଫ୍ ଆସିଛନ୍ତି ତା ଭିତରେ ଇଏ ହେଉଛନ୍ତି ସର୍ବଶ୍ରେଷ୍ଠ । ଏ କଥା ଗାଁଠାରୁ ରାଜଧାନୀ ଯାଏ ସମସ୍ତେ ଜାଣନ୍ତି । ଗଛପତ୍ରବି ଏ କଥା ସ୍ୱୀକାର କରିବେ ।

ବାକି ରହିଲା ଉନ୍ନୟନ ମୂଳକ କାମ ବା ଯାହାକୁ ବିକାଶ ବୋଲି କୁହାଯାଏ । ସାରା ଭାରତର ସମସ୍ତେ କହନ୍ତି, ସରକାରୀ ଓ ବେସରକାରୀ ପରିସଂଖ୍ୟାନ

ମଧ, ଯାହା ଗତ ୬୦ ବର୍ଷରେ ହେଇ ନଥିଲା, ତାହା ଏଇ ପାଞ୍ଚ ବର୍ଷରେ ହେଇ ସାରିଲାଣି ।

ଗୌତମ ସହିତ କଥାବାର୍ତ୍ତା ସାରି ରସାନନ୍ଦ ତାଙ୍କ ଦ୍ୱିତୀୟାଙ୍କୁ କହିଲେ ବୁଝିଲ ଦ୍ୱୀତି ! ମୁଁ ଏ କଥା କେବେ ବି ବିଶ୍ୱାସ କରିବି ନାହିଁ ଯେ ସିକ୍ରେସିଟା ଚିଫ୍‌ଙ୍କ ଅଫିସରୁ ବାହାରି ଯାଇଥିବ ।

ଆମେ ଏକଥା କହିବାକୁ ଭୁଲି ଯାଇଥିଲୁ ଯେ, ରସାନନ୍ଦ ସୁମତିଙ୍କୁ ବେଳେବେଳେ ମାନେ ଖୁସ ମିଜାସ୍‌ରେ ଥିଲେ 'ଦ୍ୱୀତି' ବୋଲି ଡାକନ୍ତି । ଦ୍ୱିତୀ ଅର୍ଥ ଦ୍ୱିତୀୟା, ଦ୍ୱିତୀୟା ସଂଖ୍ୟାରେ ନୁହେଁ । ତାଙ୍କ ମତରେ ସୁମତି କୁଆଡ଼େ ଦ୍ୱିତୀୟ ଚାନ୍ଦ ପରି ଦେଖା ଯାଆନ୍ତି । ପିଲାକାଳେ ରସାନନ୍ଦ କୁଆଡ଼େ କବିତା ଲେଖୁଥିଲେ । ସେତେବଳେ ତାଙ୍କୁ ଅଶିଶ ଆକାଶର ଦ୍ୱିତୀୟ ଚାନ୍ଦ କୁଆଡ଼େ ବେଶୀ ଭଲ ଲାଗୁଥିଲା । ତାଙ୍କ ଜୀବନରେ ସେଇ ଦ୍ୱିତୀୟା ଚାନ୍ଦ ତାଙ୍କ ପାଖକୁ ପୁଣି ଫେରି ଆସିଛି ବୋଲି ସୁମତିଙ୍କୁ କେତେଥର ସେ କହନ୍ତି ।

ଗୌତମ ଯୋଉ ଖବର ଦେଲା ତାହା କେତେଦୂର ସତ୍ୟ ସେ କଥା ଜାଣିବା ଦୂରେ ଥାଉ ସେ ଉଲ୍ଲସିତ ହୋଇ ଉଠିଲେ ଏବଂ କହିଲେ ଦ୍ୱିତୀ! ଏଇ ଦେଖ ମାତ୍ର ଦୁଇଦିନ ତଳେ 'ମଂଜରୀ ପାହାଡ଼ ଉପରେ ସେ ଗୁମ୍ଫାରେ ଯୋଉ ବାବା ରହନ୍ତି ସେ ହିଁ ମୋତେ କହିଥିଲେ 'ଖୁବ ଶୀଘ୍ର ତୁମେ ଅତ୍ୟନ୍ତ ଖୁସି ଖବରଟିଏ ପାଇବାକୁ ଯାଉଛ ।' ତାର କାରଣ ତୁମ କପାଳରେ ଏବେ ଅନେକ ଗୁଡ଼ିଏ ମଙ୍ଗଳକର ରେଖା ଫୁଟି ଉଠିଛି ।

ସେ ବାବା ମିଛ କହନ୍ତି ନାହିଁ । ଏଇଟା ମୁଁ ବହୁବାର ପରୀକ୍ଷା କରିଛି । ହେଇ ଦେଖ ତାଙ୍କ କଥା ଓ ଗୌତମ କଥା କେମିତି ମେଳ ଖାଇ ଯାଉଛି । ଏବେ ଦେଖ ଆଗକୁ କଅଣ ଅଛି ।

ଦ୍ୱିତୀ ତାଙ୍କ ପାଖକୁ ଆଗେଇ ଆସିଲେ । ରସାନନ୍ଦଙ୍କ ପଛ ପାଖରେ ଠିଆ ହୋଇ ତାଙ୍କର କାନ୍ଧରେ ହାତ ରଖି ଏବଂ ନିଜେ କେତେକାଂଶରେ ତାଙ୍କ ଉପରକୁ ଝୁଙ୍କି ପଡ଼ି ମୁହଁକୁ ମୁହଁ ପାଖକୁ ଆଣି କହିଲେ ଭଗବାନଙ୍କ ଉପରେ ବିଶ୍ୱାସ ରଖିଲେ ସେ ଆମ ରାସ୍ତାରୁ ସବୁ କଣ୍ଟାକୁ ଦୂର କରି ଆମକୁ ଆଗେଇ ନେଇ ଯିବେ, ଅନେକ ଆଗକୁ ।

ନିର୍ଦ୍ଧାରିତ ସମୟ ଅନୁସାରେ ରସାନନ୍ଦ ଯାଇ ମୁଖ୍ୟଙ୍କ ଘରେ ପହଞ୍ଚିଲେ ଠିକ୍ ରାତି ୧୦ଟାରେ ।

ମୁଖ୍ୟ ଜାଣନ୍ତି ରସାନନ୍ଦଙ୍କ ବିନା ମନ୍ତ୍ରୀମଣ୍ଡଳ ଗଢ଼ି ହେବ ନାହିଁ । ଗଢ଼ିଲେ, ମଧ ରଖି ହେବ ନାହିଁ, ତାର ସ୍ଥିତି ଶୂନ୍ୟରେ ରହିବ । ବିଶ୍ୱାମିତ୍ରଙ୍କ ଦ୍ୱିତୀୟ

ସର୍ଗ ପରି । ସେ ମଧ୍ୟ ଏ କଥା ଜାଣନ୍ତି ରସାନନ୍ଦ କୌଣସି ଦଳର ନୁହନ୍ତି । ସ୍ୱାଧୀନ, କିନ୍ତୁ ସବୁ ଦଳର । ସ୍ୱାଧୀନ ହେଇ ମଧ୍ୟ ଅନ୍ୟ ଦଳର ସଦସ୍ୟଙ୍କ ଉପରେ ତାଙ୍କର କ୍ଷମତା ଅଖଣ୍ଡ । ନିର୍ବାଚନ ବେଳେ ଅନ୍ୟ ଦଳର ସଦସ୍ୟମାନେ ମଧ୍ୟ ତାଙ୍କଠାରେ ଆସି ହାତ ପାତନ୍ତି । ସତେ ଅବା ସେ ଶ୍ରୀକୃଷ୍ଣ । ପାଣ୍ଡବ ଓ କୌରବ ସବୁ ଦଳ ତାଙ୍କ ସାହାଯ୍ୟ ପାଇଁ ଠିଆ ହୁଅନ୍ତି । କେତେକଙ୍କୁ କହନ୍ତି ତୋତେ ମୋର ଆଶୀର୍ବାଦ ରହିଲା । କଅଣ ଏଇ ଆଶୀର୍ବାଦ ? ଏଠି ଆଶୀର୍ବାଦ ଅର୍ଥ ଟଙ୍କା ନୁହେଁ, ଟଙ୍କା ପଇସାର ମୋଟେ ଦାରକାର ନାହିଁ । କେବଳ କେହି ଜଣେ ଦି ଜଣ ସେ ବିଧାନସଭା ନିର୍ବାଚନ ମଣ୍ଡଳୀରେ ପ୍ରଚାର କରି ଦେବ ଯେ ଇଏ ହଉଛନ୍ତି ରସାନନ୍ଦଙ୍କ ଲୋକ । ବାସ କଥା ସରିଲା । ସେ ଯୋଉ ଦଳର ହେଉ ଥାଉନା କାହିଁକି ଲୋକେ ଆଖି ବୁଜି ସେଇ ଚିହ୍ନରେ ମାରିଦେବେ । ତାର କାରଣ ସେମାନେ ଜାଣିଛନ୍ତି ସେମାନେ ଯଦି ସେଠି ଭୋଟ ନ ଦିଅନ୍ତି, ରାତି ପାହିଲା ବେଳକୁ ସେମାନଙ୍କ ଘର ସବୁ ପାଉଁଶରେ ପରିଣତ ହେଇଯିବ । ଝିଅ ବୋହୂମାନେ ଦିନ ଦି ପହରରେ ଉଭାନ ହେଇଯିବେ । ଏବଂ ସବୁ ନଈ ରକ୍ତନଦୀରେ ପରିଣତ ହେଇଯିବ । ଅଶୋକଙ୍କ କଳିଙ୍ଗ ଯୁଦ୍ଧର ସମୟ ପରି ସବୁ "ଦୟା" ନଦୀର ରକ୍ତନଦୀରେ ପରିଣତ ହେବ । କୋଉ ପୋଲିସ୍ କଅଣ କରିବ ? ପ୍ରଶାସନ ନିଜେବି ଡରରେ, ପାରିବ ନାହିଁ ଭାବି, କୁକୁରଟି ପ୍ରଚଣ୍ଡ ବେଗରେ ନିଜ ସ୍ଥାନକୁ ଦୌଡ଼ି ପଳାଇବା ଏବଂ ବେଳେବେଳେ କୌତୁହଳ ବଶତଃ ବୁଲିପଡ଼ି ପଛକୁ ଦେଖୁଥିବା ପରି ପଛଘୁଞ୍ଚା ହେଉଥାଏ ।

ଆମ ଗଣତନ୍ତ୍ରର ପ୍ରକୃତ ରୂପ ବେଳେ ବେଳେ ଏମିତି ପ୍ରକାଶ ପାଏ ବୋଲି ସମସ୍ତେ ଏଥିପାଇଁ କାନ୍ଦନ୍ତି କିନ୍ତୁ କାହାରି ଆଖିରୁ ଲୁହ ଟୋପେ ଗଡ଼େ ନାହିଁ ବୋଲି ସେ ବିଚାରୀ ବସ୍ତି ଲୋକେ ସେଇ ଭୋଟବାକ୍ସର ଗଣତନ୍ତ୍ରକୁ ସେଇଠୁ ସାଲ୍ୟୁଟ ମାରନ୍ତି ଏବଂ ତା ପରେ ନିଜ ବେକରେ ନିଜେ ଛୁରୀ ମାରିଛନ୍ତି ଜାଣି ଚୁପ୍‌ଚାପ୍ ଘରେ ବସନ୍ତି ।

ଏଇପରି ଆଉ ଜଣେ କରିତ୍‌କର୍ମା ଯେ କି ମହାଭାରତ ଯୁଦ୍ଧରେ ଶ୍ରୀକୃଷ୍ଣଙ୍କ ଭୂମିକା ନେଇ ପାରନ୍ତି ତାଙ୍କୁ ଆଡ଼େଇ ଯିବା ମୋଟେ ସମ୍ଭବ ନୁହେଁ । କୋଉ ବିଜ୍ଞତା ବଳରେ ଏକଥା କରିହେବ ?

ମୁଖ୍ୟମନ୍ତ୍ରୀ କହିଲେ ମୁଁ ଆପଣଙ୍କ ପାଇଁ ହିଁ ଅପେକ୍ଷା କରିଛି । ଚାଲନ୍ତୁ ଡିନର୍ ଟେବୁଲକୁ ।

ଆପଣ ଏ ଯାଏ ଖାଇ ନାହାନ୍ତି ?

ନା, ସେ ରସାନନ୍ଦଙ୍କ ହାତଧରି ଭିତରକୁ ଟାଣି ନେଇ ଗଲେ । କୋଉ ଅଯୁତ ଯୁଗରୁ ବନ୍ଧ ବାନ୍ଧି ଥିଲା ପରି ଦୁହେଁ ଡକାଡକି ହେଲେ । ଡାଇନିଂ ହଲଟା ଥିଲା ବେଶ୍ କିଛି ଦୂର । ସେଇଠୁ ଅର୍ଥାତ୍ ଡ୍ରଇଂ ରୁମ୍‌ରୁ ଡାଇନିଂ ରୁମ୍‌କୁ ଯିବାକୁ ହେଲେ ଯୋଉ ଅଙ୍କାବଙ୍କା ରାସ୍ତା, ସେ ରାସ୍ତାରେ ଥାଏ କେତେ ଗୁଡ଼ିଏ ପଥରର ନାରୀମୂର୍ତ୍ତୀ । ତାର ଉଚ୍ଚତା ପାଞ୍ଚରୁ ସାଢ଼େ ପାଞ୍ଚଫୁଟ୍ । ଏ ଗୁଡ଼ିକ କୋଣାର୍କ ମୂର୍ତ୍ତିରୁ ମଧ୍ୟ ଅଧିକ ସୁନ୍ଦର । କୋଉ ଗୋଟେ ପାର୍ସିଆନ କାରିଗର କରିଛି ବୋଲି କୁହାଯାଏ । ହେଦଟା ତାର ବେଶ୍ ମସୃଣ ଓ ଚକ୍ ଚକ୍ । ମୂର୍ତ୍ତିର ମୁଣ୍ଡ ପାଖରେ ଥିବା ଲାଇଟ୍ ମୂର୍ତ୍ତିର ଦେହଟାକୁ ଆଲୋକିତ କରୁଥାଏ । ବକ୍ଷସ୍ଥଳ ଚମକୁ ଥାଏ ।

ଆପଣ କି ପ୍ରକାର ଡ୍ରିଙ୍କସ୍ ପସନ୍ଦ କରିବେ ? ମୁଖ୍ୟମନ୍ତ୍ରୀ ଚେୟାରରେ ବସୁ ବସୁ ପଚାରିଲେ ।

କ୍ଷମା କରିବେ, ମୁଁ ଚିରକାଳ ଗାନ୍ଧିବାଦୀ । ଡ୍ରିଙ୍କସ୍ ମୁଁ ମୋଟେ ପସନ୍ଦ କରେନା । ତେବେ ଆପଣଙ୍କ ସହିତ କମ୍ପାନୀ ଦେବାକୁ ମୁଁ କୋଲଡ୍ ପସନ୍ଦ କରିବି । କହିଲେ ରସାନନ୍ଦ ଲାଜେଇ ଯାଇ ।

ବେଶ୍ ବେଶ୍ ଖୁବ ଭଲ । ମୁଁ ବି ସେଇଆ ଚାହୁଁଥିଲି । ମୁଁ ଯଦିଓ ଗାନ୍ଧିବାଦୀ ନୁହେଁ ତଥାପି ଜାତୀୟତାରେ ମୋର ବିଶ୍ୱାସ ଅଛି । ଆମେ ଆମ ନିଜ ସଂସ୍କୃତିକୁ ଛାଡ଼ି କୁଆଡ଼େ ଯାଇ ପାରିବ ? ଗଲେ ଆମ ଲୋକେ ଆମକୁ ବିଶ୍ୱାସକୁ ନେବେ ? ସେ ପଞ୍ଜାବୀ ଭିତରୁ ବେକରେ ପଡ଼ିଥିବା ଛୋଟ ସରୁ ତୁଳସୀ ମାଳଟିଏ ଦେଖାଇଲେ । କହିଲେ ଏଇଟା ତିନିବର୍ଷ ବେଳୁ ମୋ ମାଆ ମୋ ବେକରେ ଦେଇଥିଲା । ମୁଁ ତାକୁ ସାଇତି ରଖିଛି, ରଖିଥିବି ମଧ୍ୟ ।

ଖିଆ ପିଆ ମଝିରେ ବାକି ଯାହା ସେମାନଙ୍କର କଥାବାର୍ତ୍ତା ହେଲା ସେ ସବୁ ସହିତ ଗଳ୍ପର ସମ୍ପର୍କ ନଥିବାରୁ ଏଠାରେ ଉଲ୍ଲେଖ କରାଯାଉ ନାହିଁ । କାରଣ କଥାଗୁଡ଼ାକ ଥିଲା ଅତ୍ୟନ୍ତ ପାରିବାରିକ । ନିଜ ପରିବାର ରାଜନୈତିକ ଜୀବନର ବିଶେଷ ଘଟଣା । କିନ୍ତୁ ଆଲୌକିକ ବିଷୟ ଯାହା ଉଭୟଙ୍କ ଜୀବନରେ ଆସିଛି ବହୁବାର, ସେ ସବୁ ସ୍ଥାନ ପାଇଥିଲା ।

ଅସଲ କଥା ଆରମ୍ଭ ହେଲା ହେଲା ଖାଇବା ପରେ ଦୁହେଁ ଏକାଠି ବସିଥିଲାବେଳେ ।

ମୁଁ ମନ୍ତ୍ରୀମଣ୍ଡଳ ଗଠନ ପାଇଁ ଆପଣଙ୍କ ସକ୍ରୀୟ ସହଯୋଗ ଚାହୁଁଛି । ଦେଶର ଅବସ୍ଥା ବହୁତ ଖରାପ । ଗୋଟିଏ ଶକ୍ତ ଓ ସ୍ଥାୟୀ ମନ୍ତ୍ରୀମଣ୍ଡଳର ଆବଶ୍ୟକତା

ରହିଛି । ମୁଖ୍ୟମନ୍ତ୍ରୀ ଗୋଟିଏ ବନାରସୀ ପାନ ପାଟିରେ ପୂରେଇଲେ ଏବଂ ଆଉ ଗୋଟିଏ  ରସାନନ୍ଦ ବାବୁଙ୍କ ଆଡ଼କୁ ବଢ଼େଇଦେଲେ ।

ଦେଶର ଅବସ୍ଥା ବିଷୟରେ ମୁଁ ଆପଣଙ୍କ ସହିତ ସମ୍ପୂର୍ଣ୍ଣ ଏକମତ । ତଥାପି ଆପଣଙ୍କ ସମୟରେ ବହୁତ କିଛି ହେଇଚି । ତାକୁ ଅସ୍ୱୀକାର କରି ହେବ ନାହିଁ । ସେ ବିକାଶର ପ୍ରକ୍ରିୟାକୁ ଆଗେଇ ନେବା ପାଇଁ, ତା ପାଇଁ ଯୋଉ ନୂତନ ଯୋଜନା ଆପଣ ପ୍ରବର୍ତ୍ତନ କରିବେ, ମୁଁ ସେଥିରେ ସାହାଯ୍ୟ କରିବାକୁ ପ୍ରସ୍ତୁତ ।

ଆପଣ ସ୍ୱାଧୀନ ହେଇ ରହନ୍ତୁ ସେଥିରେ ଆମର ଆପତ୍ତି ନାହିଁ । କିନ୍ତୁ ଆପଣ ଆମ ମନ୍ତ୍ରୀମଣ୍ଡଳରେ ଯୋଗ ଦିଅନ୍ତୁ । ମୁଁ ସାମାନ୍ୟ ରିସଫଲ୍ ମଧ କରିବି । କିଛି ନୂଆ ନୂଆ ଟାଲେଣ୍ଟଙ୍କୁ ସ୍ଥାନ ଦେବି ।

ସେ ଟିକିଏ ରହି ପୁଣି କହିଲେ ମୁଁ ଡେପୁଟି ଚିଫ ପଦ କ୍ରିଏଟ୍ କରୁଛି । ସେ ପଦ ଆପଣଙ୍କ ପାଇଁ । ତା ପରେ ମୋ ହାତରେ ଯୋଉ ୨୭ଟା ବିଭାଗ ଅଛି ସେଥିରୁ ଅର୍ଦ୍ଧାଧିକ ଆପଣଙ୍କୁ ଦେଇଦେବି । ହୋମ, ଜି.ଏ., ଇଣ୍ଡଷ୍ଟ୍ରି, ମାଇନ୍ସ, ଏସବୁ ଆପଣ ରଖନ୍ତୁ । ଆପଣଙ୍କ ପରି ପୋଖତ ତଥା ସଚ୍ଚୋଟ ନେତୃତ୍ୱଠାରେ ଏ ସବୁ ଥିଲେ ଭଲ ହେବ । ମୁଁ ଭାବୁଛି ।

ହୋମ୍ ବି ମୋତେ ଦେବେ ? ପଚାରିଲେ ରସାନନ୍ଦ ।

ଆଉ କିଏ ସେ ଦାୟିତ୍ୱ ନେଇ ପାରିବ କହିଲେ ? ମୋ ନଜରରେ ନାହିଁ । ଆପଣ ହିଁ ଯୋଗ୍ୟ । ବିଶୃଙ୍ଖଳା ଓ ଅସ୍ଥିରତା ଏବେ ଚରମ ସୀମାରେ । ମୁଁ ସ୍ୱୀକାର କରୁଛି ଲୋକଙ୍କ ଆଶା ଆକାଂକ୍ଷା ସୀମାହୀନ । ଦିନକୁ ଦିନ ବୃଦ୍ଧି ପାଉଛି । କିନ୍ତୁ ଅଶାନ୍ତି ଓ ବିଶୃଙ୍ଖଳାରେ ତାର ସମାଧାନ ନାହିଁ । ଆମ ଦେଶ ଶାନ୍ତି ଓ ମୈତ୍ରୀର ଦେଶ । ହିଂସା ନୁହେଁ ଅହିଂସା ଆମର ମୂଳମନ୍ତ୍ର । ତାକୁ ଭୁଲିଗଲେ ହେବ ନାହିଁ ।

ସେ ପୁଣି କହିଲେ, ଆପଣ ଚିନ୍ତା କରନ୍ତୁ ନାହିଁ । ମୋର ପୂର୍ଣ୍ଣ ସମର୍ଥନ ଆପଣଙ୍କ ପଛରେ ଅଛି । ଆପଣ ପ୍ରଥମେ ବିଶୃଙ୍ଖଳତାକୁ ଦମନ କରନ୍ତୁ ।

ସେ ଠିଆ ହେଲେ ଓ ରସାନନ୍ଦଙ୍କ ସହିତ ଗୋଟିଏ ଆତ୍ମିକ ଆବେଗରେ ତାଙ୍କ ଦୁଇ ହାତକୁ ମୁଠେଇ ଧରିଲେ ।

ବାହାରେ ରାତ୍ରୀ ବଢ଼ି ଚାଲିଥିଲା ମେଞ୍ଚା ମେଞ୍ଚା ଅନ୍ଧାରକୁ ଆଧାର କରି ।

(ଅକ୍ଷାଂଶ - ପୂଜା-୨୦୧୨)

***

# ଏବେ ଗାଁକୁ ଯିବା

ସେ ଅତି ସ୍ପଷ୍ଟ ଭାବରେ ଘୋଷଣା କଲେ ଯେ ସେ ଗାଁକୁ ଯିବେ ଏବଂ ଲୋକଙ୍କୁ ଏକଥା କହିବେ । ଯେତେବେଳେ ସାମ୍ବାଦିକମାନେ ପ୍ରଶ୍ନ କଲେ ହଠାତ୍ ଆପଣଙ୍କର ଏତେ ଦିନ ପରେ ଗାଁକୁ ଯିବାର କଅଣ ଦରକାର ହେଲା ? ସେ କହିଲେ ମୁଁ ଏକଥା ମୋଟେ ସହ୍ୟ କରିପାରୁ ନାହିଁ । ଅନ୍ୟାୟର ପ୍ରତିବାଦ ଅବଶ୍ୟ ଆବଶ୍ୟକ ।

ସାମ୍ବାଦିକ ଜଣକ ପୁଣି ପଚାରିଲେ, ସାର୍ କୋଉ ବିଷୟରେ ଅନ୍ୟାୟ ହେଲା, କିଏ କଲା ଏବଂ କାହା ପ୍ରତି ଅନ୍ୟାୟ ହେଲା ଦୟାକରି ଟିକିଏ ବୁଝାଇ କହନ୍ତୁ ।

ସେ କହିଲେ, ଅନ୍ୟାୟ ହେଉଚି ଲୋକମାନଙ୍କ ପ୍ରତି । ହଜାର ହଜାର ନରନାରୀ ଅବାଳ-ବୃଦ୍ଧ-ବନିତା ସମସ୍ତେ ମୋତେ ଅନାଇ ବସିଛନ୍ତି । ମୁଁ ସେମାନଙ୍କର ସମସ୍ତ ଆଶା ଓ ଆକାଂକ୍ଷାର ଏକମାତ୍ର ପ୍ରତୀକ । ଅଥଚ ମୋତେ କିଛି ନ କହି, ଆଗରୁ ସୂଚନା ନଦେଇ, କିମ୍ବା ପରାମର୍ଶ ନ କରି ଅତି ଅଚାନକ ଭାବେ ଏବଂ ଆକସ୍ମିକ ଭାବେ ମନ୍ତ୍ରୀମଣ୍ଡଳରୁ ତଡ଼ିଦେବା ଅନ୍ୟାୟ ନୁହେଁ ? ଏହା ଯେ କୌଣସି ଗଣତାନ୍ତ୍ରିକ ବିଚାରଧାରାକୁ ସମ୍ପୂର୍ଣ୍ଣ ବିରୋଧ କରୁଚି ।

କିନ୍ତୁ ଆପଣ ଲୋକମାନଙ୍କ ପ୍ରତି ଅନ୍ୟାୟ ହେଇଚି କହିଲେ ଯେ ?

ଯୋଉଟା ମୋ ପ୍ରତି ଅନ୍ୟାୟ, ସେଇଟା ମୋର ଭୋଟରମାନଙ୍କ ପ୍ରତି ଅନ୍ୟାୟ । ମୋର ସମଗ୍ର ଜିଲ୍ଲା ପାଇଁ ମଧ୍ୟ ଅନ୍ୟାୟ । ମୁଁ ମୋ ଜିଲ୍ଲାର ଏକମାତ୍ର ମନ୍ତ୍ରୀ ଥିଲି । ଏବେ କିଏ ଅଛି ମୋର ପ୍ରିୟ ଜିଲ୍ଲାବାସୀଙ୍କ ପ୍ରତିନିଧିତ୍ୱ କରିବା ପାଇଁ ?

ଗତ ଦେଢ଼ ବର୍ଷ ଭିତରେ ଆପଣ ଆପଣଙ୍କ ଜିଲ୍ଲା ପାଇଁ କଅଣ କଅଣ କରିଛନ୍ତି ?

ଜଣେ ମନ୍ତ୍ରୀ ପାଇଁ ଦେଢ଼ବର୍ଷଟା ଦେଢ଼ ଦିନ ଭଳିଆ ଲାଗେ । ତେଣୁ ସମୟଟା ଅତି ଅଳ୍ପ । ଏତେ କାମ ଯେ ତା' ଭିତରେ ଗୋଟିଏ ଯୋଜନା ପ୍ରସ୍ତୁତ କରିବା ମୋଟେ ସମ୍ଭବ ନୁହେଁ । ତେବେ ଏହି ସମୟ ଭିତରେ ମୁଁ ଅନେକ କଥା ଚିନ୍ତା କରିଥିଲି ।

ମୁଁ ଯେତେଥର ଆପଣଙ୍କ ବାସଭବନ କିମ୍ବା ଅଫିସ୍‌କୁ ଯାଇଚି, ଦେଖିଚି ଆପଣଙ୍କୁ ଦଳେ ଲୋକ ଘେରି ଥାଆନ୍ତି । ସେମାନେ ଖାଲି ଆପଣଙ୍କ ପ୍ରଶଂସା କରୁଥାନ୍ତି । କେହି କେତେବେଳେ ସେମାନଙ୍କ ଆପତ୍ତି ଅଭିଯୋଗ ନେଇ ଆସିଥିବାର ଦେଖି ନାହିଁ । ଦିନରାତି ଆପଣଙ୍କ ଘରେ ଓ ଅଫିସ୍‌ରେ ପ୍ରବଳ ଭିଡ଼ ଥିଲାବେଳେ ଆପଣ ଗାଁ ଲୋକଙ୍କ କଥା କେତେବେଳେ ଭାବନ୍ତି ?

ଟୁର୍‌ରେ ଗଲାବେଳେ ସେଇଟା ଭାବିବା ପାଇଁ ଉପଯୁକ୍ତ ସମୟ । ତେଣୁ ମୁଁ ଅଧିକାଂଶ ସମୟରେ ଟୁର୍‌ରେ ଗଲାବେଳେ ରାତ୍ରିଯାପନ ପାଇଁ ଖୁବ୍ ବଡ଼ ବଡ଼ "ଷ୍ଟାର ହୋଟେଲ୍" କିମ୍ବା "ଫରେଷ୍ଟ ଗେଷ୍ଟ ହାଉସ୍' ବନ୍ଦୋବସ୍ତ କରିବାକୁ କହିଥାଏଁ । ଏସବୁ ଜାଗା ଅତ୍ୟନ୍ତ ନିର୍ଜନ ଓ ନିଛାଟିଆ ।

ଆପଣ ଗତ ଦେଢ଼ବର୍ଷ ଭିତରେ ଥରେ ବୋଲି ନିଜ ନିର୍ବାଚନ ମଣ୍ଡଳୀକୁ ଯାଇ ନାହାନ୍ତି ବୋଧହୁଏ ?

କହିଲି ପରା ଯିବାକୁ ବେଳ ପାଇନାହିଁ । ଏତେ କାମ ଯେ ଆପଣ ତ ମୋତେ ଦେଖୁଛନ୍ତି । ଏଇଥିରୁ ବୁଝନ୍ତୁ । କିନ୍ତୁ ମୁଁ ତ ସେ ଲୋକମାନଙ୍କୁ ସବୁବେଳେ ଭେଟୁଚି । ସେ ଟିକିଏ ରହିଗଲେ - ତା'ପରେ କହିଲେ, ସତ କଥା କହୁଚି ପ୍ରଥମ ତିନିମାସ ମୁଁ କାର ଖଣ୍ଡେ ପାଇଁ ବଡ଼ ହଇରାଣ ହେଲି । ଯୋଉ ଏଆର କଣ୍ଡିସନଡ୍ କାର ମୋତେ ସରକାର ଦେଲେ, ସେଥିରେ ପ୍ରଥମେ ପ୍ରଥମେ ଏକାଥରେ ବେଶି ସମୟ ବସି ପାରୁନଥିଲି । ଏବେ ଅଭ୍ୟସ୍ତ ହେଇ ଯାଇଥିଲି । କିନ୍ତୁ ଏବେ ସେଇଟା ଆଉ ନାହିଁ । ସେଥିପାଇଁ ମୋର ଦୁଃଖ ନାହିଁ । ହଁ, ମୁଁ ଯାହା କହୁଥିଲି - ସେ ପ୍ରକାର କାର୍ ନେଇ ଗାଁକୁ ଯିବା ସମ୍ଭବ ହେଲାନାହିଁ । ତେଣୁ ସରକାରଙ୍କୁ କହିଛି ମୋତେ ତିନିଖଣ୍ଡ କାର ଦିଅ । ଗୋଟିଏ ଭୁବନେଶ୍ୱର ପାଇଁ, ଆଉ ଗୋଟିଏ ଅନ୍ୟାନ୍ୟ ଟାଉନ୍‌ମାନଙ୍କ ପାଇଁ, ଆଉ ଖଣ୍ଡେ ଟାଟା ସୁମୋ ହେଲେ ଭଲ - ଗାଁ ପାଇଁ । ତିନିମାସ କାଳ ଲଢ଼ିଲି କେବଳ ଏତକ ପାଇଁ । କହିଲେ,ଏ ସରକାର କାମ କରୁଚି ବୋଲି ଆପଣ କେମିତି କହିବେ ? ତୁରନ୍ତ ମିଳିବା କଥା ।

ମୋର ମନେ ହେଉଛି ମନ୍ତ୍ରୀମଣ୍ଡଳରେ ଆପଣ ସବୁଠୁ ବେଶୀ ଟୁର୍‌ରେ ଯାଇଚନ୍ତି । ହିସାବ କଲେ ମାସକୁ ୨୦ ଦିନ ଆପଣ ବାହାରେ ଏବଂ ସବୁଠାରୁ ବେଶୀ ଦିନର ଟି.ଏ ମଧ୍ୟ ନେଇଛନ୍ତି ।

ମୁଁ ମନା କରୁଚି ? ଏକାନ୍ତ ଆବଶ୍ୟକ ନଥିଲେ ମୁଁ ଯାଏ ନାହିଁ । କେତେ ବା ଟି.ଏ. ନେଇଚି ? ହେଇ ହେଇ ମାସକୁ ଲକ୍ଷେ । ଏଇଟା କୋଉ ବଡ଼ କଥା ? କିନ୍ତୁ କାମ ଓ ଖର୍ଚ୍ଚ ଅନୁସାରେ ସେତକ କିଛି ନୁହେଁ । ଏକଥା ସମସ୍ତେ ଜାଣନ୍ତି । ତେଣୁ ଆସେମ୍ଲିରେ ଏକଥା ଆସିଲେ, ବିନା ଆଲୋଚନାରେ ଗୃହୀତ ହୁଏ । ଏଇଟା ତ ଗୋଟାଏ ରେକର୍ଡ ।

ତାଙ୍କର ଶେଷ ପ୍ରଶ୍ନ ଥିଲା - ତେବେ ଆପଣ କେବେ ଗାଁକୁ ଯିବେ ? କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲାଣି ?

ଏଇ ବର୍ଷାଦିନଟା ଯାଉ ।

(ପ୍ରଜାତନ୍ତ୍ର - ୨୫.୦୯.୨୦୦୧)

***

# ବିତିଯାଏ ବିନିଦ୍ର ରଜନୀ

ନରସୁନ୍ଦର ବାବୁ ଘଣ୍ଟାଏ କାଳ ଅପେକ୍ଷା କଲାପରେ ଯେତେବେଳେ ଦେଖିଲେ ଚା'କପେ ଆସୁ ନାହିଁ ସେତେବେଳେ ସେ ଡାକିଲେ, କସ୍ତୁରୀ ! ମାଆ ଉଠି ନାହାନ୍ତି କି ? କସ୍ତୁରୀ କହିଲା, ମାଆ ରାତିଯାକ ଶୋଇ ନାହାନ୍ତି । ଏବେ ଟିକିଏ ନିଦ ଆସି ଯାଇଛି । ଡାକି ଦେବି ?

"ନା ଥାଉ ।" ନରସୁନ୍ଦର ବାବୁ ଆଶ୍ଚର୍ଯ୍ୟ ହେଲେ । ରାତିଯାକ ଶୋଇ ନାହାନ୍ତି ? ଦେହ ଠିକ୍ ନାହିଁ ? କାହିଁ ମୋତେ ତ କିଛି କହି ନାହାନ୍ତି ?

ତାଙ୍କର ମନ ଖରାପ ? କୋଉଥି ପାଇଁ ? ଅବଶ୍ୟ ଗତକାଲି ତାଙ୍କର ଉର୍ବଶୀଙ୍କ ସହିତ ସାମାନ୍ୟ କଥା କଟାକଟି ହେଇଥିଲା । ସେ କହିଥିଲେ "ଏଥର ମନ୍ତ୍ରିମଣ୍ଡଳ ସମ୍ପ୍ରସାରଣ ହେଲେ ତାଙ୍କୁ ଯଦି କେବିନେଟ୍ ପାହ୍ୟା ଦିଆ ନ ଯାଏ, ତେବେ ସେ ଇସ୍ତଫା ଦେଇ ଦେବେ । ସେ ଏକଥା ମଧ କହିଲେ, "ମିନିଷ୍ଟର ଅଫ୍ ଷ୍ଟେଟ୍" ମାନେ କଅଣ ହୋ ? ଏ ଶବ୍ଦର କିଛି ମାନେ ଅଛି ? ସେକ୍ରେଟାରିଏଟ୍‌ରେ ଯାହାକୁ ପଚାର କହିବ ସେ ପଦଟା ମାଈ ନୁହେଁ କି ଅଣ୍ଡିରା ନୁହେଁ । ତାଙ୍କ ଦେଇ ଖଡ଼ା ବି ସିଝେନି । ତୁମେ ଆସ ଦେଖିବ ଟେବୁଲ୍‌ଟା ସବୁବେଳେ ସଫା । ନା ସେଠିକୁ ଫାଇଲ ଆସେ ନା ସେଠିକା ଟେଲିଫୋନ୍ ବାଜେ । ଅବସ୍ଥା ଏମିତି ଯେ ପାଣି ଗ୍ଲାସଟିଏ ପାଇଁ ମଧ ନିଜକୁ ଉଠିବାକୁ ପଡ଼େ । ଖଣ୍ଡେ ଅଧିକା ଚେୟାର ମଧ ନାହିଁ । ଅବଶ୍ୟ ଏବେ ଏବେ ଚିଫ୍ ଆମମାନଙ୍କ ଅଫିସ୍ ପାଇଁ ଖଣ୍ଡେ ଲେଖାଏଁ "ସୋଫା କମ୍ ବେଡ୍" ମଞ୍ଜୁର କରିଛନ୍ତି । ଏସବୁ ଅପମାନଜନକ ନୁହେଁ ?"

ଉର୍ବଶୀ ରାଗିଗଲେ, କହିଲେ ମନ୍ତ୍ରୀଙ୍କ କାମ ତୁମକୁ କିଛି ଜଣା ନାହିଁ । ମନ୍ତ୍ରୀମାନଙ୍କର ଗୋଟିଏ ମାନ ଅପମାନ କଅଣ ? ମୁଁ ତମ ସ୍ତ୍ରୀ, ମୋତେ ବାଧୁନି । ତମକୁ ଏତେ ବାଧିଯାଉଚି । ଧୈର୍ଯ୍ୟ ଧର । ଏତେ ବ୍ୟସ୍ତ କାହିଁକି ? ଗଣତନ୍ତ୍ରରେ ମନ୍ତ୍ରୀମାନଙ୍କର ଧୈର୍ଯ୍ୟ ହିଁ ଏଫିସିଏନ୍‌ସି । ତୁମେ ଜାଣ ଏକଥା ? ଖବରଦାର କହି ଦଉଚି, ମୋତେ ନ ପଚାରି ମୋଟେ ଇସ୍ତଫା ଦେବ ନାହିଁ । ତୁମେ ଖାଲି ଯାଇ ସେଠି ବସ । ଯାହା କରିବାର କଥା ମୁଁ କରିବି ।

ନରସୁନ୍ଦରବାବୁ ପୁଣି ଭାବିଲେ, ଏକଥାଟା ତ ସେଦିନ ସେଇଠି ଛିଣ୍ଡିଥିଲା । ଆଉ କଅଣ ବାକି ରହିଲା ? ଅବଶ୍ୟ ତାଙ୍କର ଏବେ ଗୋଟିଏ ପନ୍ଦରଜଣିଆ ବିଶେଷଜ୍ଞ ଦଳର ନେତୃତ୍ୱ ନେଇ ସାତଟା ରାଜ୍ୟକୁ ଯାଇ ସେଠି ଅଣଯୋଜନା ଖର୍ଚ୍ଚ କିପରି କମେଇ ହେବ ତା'ର ଅନୁଧାନ କରି ସରକାରଙ୍କୁ ରିପୋର୍ଟ

ଦେବାର ଅଛି । ଏଇ ମୌକାରେ ଉର୍ବଶୀ ସାଥିରେ ଯାଇ ବମ୍ବେରେ ଗୋଟିଏ ମଲ୍‌ଟି ନେସନାଲ କମ୍ପାନୀରେ କାମ କରୁଥିବା ତାଙ୍କ ଭାବୀ ଜାମାତାଙ୍କୁ ଦେଖି ଥାଆନ୍ତେ ଏବଂ ଗୋଆରେ ତାଙ୍କ ବଡ଼ ଭିଣୋଇଙ୍କୁ ମଧ ଭେଟି ଥାଆନ୍ତେ । କିନ୍ତୁ ଏ ପ୍ରସ୍ତାବରେ ନରସୁନ୍ଦର ବାବୁ ରାଜି ହେଇ ନଥିଲେ । ଏଥିପାଇଁ ସେ ହୁଏତ ମନକଷ୍ଟ କରିଥିବେ । ଆଃ, ଯିବେ ଯଦି ଯାଆନ୍ତୁ । ଝିଅ ବି ଯାଉ । କିଏ ମନା କରୁଚି ?

ନରସୁନ୍ଦର ବାବୁ ବ୍ୟସ୍ତ ହୋଇପଡ଼ିଲେ । ସକାଳର ଚା' ଖାଇ ନଥିବାରୁ ଦୁଃଖ ତାଙ୍କୁ ସେତେ ବାଧୁ ନଥିଲା, ଉର୍ବଶୀ ରାତିଯାକ ଶୋଇ ନାହାନ୍ତି କଥାଟା ତାଙ୍କୁ ଆହୁରି ବେଶୀ ବାଧିଲା । ତା'ର କାରଣ ଉର୍ବଶୀ ଦ୍ୱିତୀୟ ପକ୍ଷର । ପ୍ରଥମ ପକ୍ଷର କାମିନୀ ଗାଁରେ ଥାଆନ୍ତି । ସେଠା ଘରର ଦାୟିତ୍ୱ ତାଙ୍କର । ନରସୁନ୍ଦରବାବୁ ସେଠାକୁ କେବଳ ଭୋଟ ସମୟରେ ଯାଆନ୍ତି ।

ତାଙ୍କ ମନଟା ଘାଣ୍ଟିଚକଟି ହେଇଗଲା । ସେ ଉଠିଗଲେ, ଏବଂ ଘର ଭିତରେ ପଶି ଦେଖିଲେ ଉର୍ବଶୀ ଶୋଇଚନ୍ତି । ତାଙ୍କ ଆଖିରୁ ଦୁଇ ଧାର ଲୁହ ଗାଲ ଉପର ଦେଇ ବହି ଯାଇ ଶୁଖି ଯାଇଛି । କେଶବାସ ବିପର୍ଯ୍ୟସ୍ତ । ଗୋରା ତକ୍ ତକ୍ ମୁହଁଟା କେମିତି ଦରପୋଡ଼ା ଇଟା ପରି ଦେଖା ଯାଉଛି । ସେ ଟିକେ ନିଠେଇ ଦେଖିଲେ । ଆରେ, ଇଏ କଅଣ ? କାନ ପାଖରେ କେରାଏ ପାଚିଲା ବାଳ ? କାହିଁ ଆଗରୁ ତ କେବେ ସେ ଦେଖି ନଥିଲେ ?

ହଠାତ୍ ଉର୍ବଶୀଙ୍କ ନିଦ ଭାଙ୍ଗିଗଲା । ସେ ଉଠିପଡ଼ିଲେ ଏବଂ ନରସୁନ୍ଦରଙ୍କୁ ଦେଖି ରାଗରେ ତମ୍‌ତମ୍ ହେଇ ଉଠି ଯାଉଥିଲେ । କିନ୍ତୁ ସେ ତାଙ୍କ ହାତଟାକୁ ଖପ୍‌କରି ଧରି ପକେଇ କହିଲେ ତୁମର କଅଣ ହେଇଚି କୁହ ତ ? ମୋ ରାଣ । ମୋତେ କହିବନି ?

ଉର୍ବଶୀ ମୁହଁ ବୁଲେଇ ନେଲେ । ନରସୁନ୍ଦର ତାଙ୍କ ଥମ୍ ଥମ୍ ମୁହଁଟା ଦେଖି ଆଉ ଧୈର୍ଯ୍ୟ ଧରି ରହିପାରିଲେନି । ସଦା ହସହସ ମୁହଁଟା ତାଙ୍କର ସଜଫୁଟା ପଦ୍ମଫୁଲ ପରି । ଅଥଚ ଆଜି ଏ କଅଣ ହେଇଚି ? ସେ ଡରି ଡରି ତାଙ୍କ ଚିବୁକଟାରେ ହାତମାରି ଦେଇ କହିଲେ, କୁହନା କଅଣ ହେଇଚି ? ମୁଁ କଅଣ ତୁମ କଥା କେବେ ପକେଇଚି ? ଇସ୍ତଫା ଦେବି ନାହିଁ କହିଚି ତ ?

ଉର୍ବଶୀ ଏଥର ସିଧା ହେଇ ବସିଲେ । କହିଲେ ତୁମେ ଯେ ଇସ୍ତଫା ଦେବ ନାହିଁ ଏକଥା ମୁଁ ଜାଣେ । କିନ୍ତୁ ତୁମେ ଏସବୁ କଅଣ କରୁଚ ?

କୋଉ କଥା ? କହୁନ ?

"ତୁମେ ତୁମ ମନ୍ତ୍ରୀତ୍ୱର ପ୍ରଥମ ଛଅମାସରେ ସାଢ଼େ ଛଅଲକ୍ଷ ଟଙ୍କା ଟି.ଏ ଆଣିଥିଲ । ଏଥର କାହିଁକି ପଚାଶ ହଜାର କମିଲା ? କୁହ ? ଜବାବ ଦିଅ ।"

(ପ୍ରଜାତନ୍ତ୍ର - ୫.୧.୨୦୦୨)

***

# ଅସଲ ଚାବି

ସେଥର ମଙ୍ଗଳ ଗ୍ରହରେ ଏକ ସାଂଘାତିକ ବିପ୍ଲବ ସଂଘଟିତ ହେଲା । ଲୋକମାନେ ରାଜତନ୍ତ୍ର ବିରୋଧରେ ବିଦ୍ରୋହ ଘୋଷଣା କଲେ । ଶେଷରେ ଅବସ୍ଥା ଏପରି ହେଲା ଯେ, ବିଦ୍ରୋହୀମାନେ ରାଜାଙ୍କୁ ହତ୍ୟା କରି ଶାସନକଳ ଦଖଲ କରିନେଲେ । ସେମାନେ ସ୍ଥିର କଲେ ଯେ, ଦେଶରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା ହେବ । କିନ୍ତୁ ଅସୁବିଧା ହେଲା ଯେ ସେମାନେ ଯୁଗ ଯୁଗ ଧରି ରାଜତନ୍ତ୍ର ଅଧୀନରେ ରହି ଆସିଥିବାରୁ ଗଣତନ୍ତ୍ର ବିଷୟରେ ସେମାନେ ସ୍ଥିର କଲେ ଯେ ଭାରତରୁ ଜଣେ ପ୍ରଧାନମନ୍ତ୍ରୀ ପାଞ୍ଚବର୍ଷ ପାଇଁ ଡେପୁଟେସନ୍‌ରେ ଆଣିବେ । ଭାରତର ପ୍ରଧାନମନ୍ତ୍ରୀ ଏଥିରେ ରାଜି ହେଲେ ଏବଂ ଜଣକୁ ପଠାଇଲେ ।

ଏବେ ମୁଁ ସେଇଠୁ କଥାଟା ଆରମ୍ଭ କରୁଚି ।

ସେଦିନ ପ୍ରଧାନମନ୍ତ୍ରୀ ବଡ଼ ଚିନ୍ତିତ ମନରେ ପାର୍ଲାମେଣ୍ଟରୁ ଘରକୁ ଫେରିଲେ ଏବଂ ସଂଗେ ସଂଗେ ତାଙ୍କର ଏକାନ୍ତ ବିଶ୍ୱସ୍ତ ବନ୍ଧୁ ଅର୍ଥମନ୍ତ୍ରୀଙ୍କୁ ଡକେଇଲେ । ଅର୍ଥମନ୍ତ୍ରୀ ଆସିଲାମାତ୍ରେ ତାଙ୍କୁ ପ୍ରଧାନମନ୍ତ୍ରୀ କହିଲେ ମୁଁ ଆଜିର ଘଟଣାରେ ଅତ୍ୟନ୍ତ ମର୍ମାହତ । ଏପରି ହୀନ ରାଜନୀତି ଆମ ଭାରତରେ ମୋଟେ ହୁଏନା । ମିଥ୍ୟା ଅଭିଯୋଗ ଆମ ଜାତକରେ ନାହିଁ । ରାଜନୀତିରେ ନୀତି ଓ ଆଦର୍ଶ ହେଲା ବଡ଼କଥା । କିନ୍ତୁ ବିରୋଧୀ ଦଳର ନେତା ଯାହା କହୁଚନ୍ତି ତାହା ଗଣତନ୍ତ୍ରର ସମ୍ପୂର୍ଣ୍ଣ ବିରୋଧୀ । ତା'ପରେ ସେ କହିଲେ, ଆଚ୍ଛା ତାଙ୍କ ବକ୍ତବ୍ୟର ସାରାଂଶ ମୋତେ ଟିକିଏ ବୁଝେଇ ଦେବେ ? ମୋ ପାଇଁ ତ ଟିକିଏ ଭାଷାର ପ୍ରୋବ୍ଲେମ୍ ଅଛି । ସେ କଅଣ ଏତେ 'ଫଳ' କଥା କହୁଥିଲେ ? କି ଫଳ ? ଏଠି ନ ମିଳିଲେ ଆମେ ଇଣ୍ଡିଆରୁ ମଗେଇନେବା । ତା'ଛଡ଼ା ଯଦି ଆବଶ୍ୟକ ହୁଏ ଏଠି ଆମେ ସେ ଚାଷ କରିପାରିବା ।

ଅର୍ଥମନ୍ତ୍ରୀ କହିଲେ ସେ କଥାସେ କହୁ ନଥିଲେ । ସେ 'ଯୋଜନାର ଫଳ' କଥା କହୁଥିଲେ । ତାଙ୍କର ଅଭିଯୋଗ ଯେ ଦେଶରେ ଯେଉଁ ଜନହିତକର ଯୋଜନା ସବୁ ହାତକୁ ନିଆଯାଉଚି ତାର 'ଫଳ' ସବୁ କୁଆଡ଼େ ଆମେ ରଖୁଚୁଁ । ଲୋକଙ୍କ ପାଖରେ ପହଞ୍ଚୁ ନାହିଁ ।

ଓହୋ ଏଇ କଥା ? ଏଇଟା ତ ବଡ଼ ସିରିଅସ୍ କଥା । ଆଚ୍ଛା ଆପଣ କହିଲେ ସତରେ କଅଣ ଆମ ଭିତରୁ ଏମିତି କେହି କରୁଚି କି ? ମୁଁ ଏବେ ପୁଲିସ୍ ମୁଖ୍ୟଙ୍କୁ କହି... । ଭାରତରେ ହୋଇଥିଲେ ଏତେବେଳକୁ ଅବସ୍ଥା ସାଂଘାତିକ ହେଇ

ସାରନ୍ତାଣି । ଆପଣ ଭାରତୀୟ ରାଜନୀତି କଥା ଜାଣି ନାହାନ୍ତି । ଆମେ ଜନତାର ସେବା ପାଇଁ ଆସିଚୁଁ । ନେବା ପାଇଁ ନୁହେଁ ।

ଅର୍ଥମନ୍ତ୍ରୀ ମନେ ମନେ ହସିଲେ । ସେ ପ୍ରଧାନମନ୍ତ୍ରୀଙ୍କୁ କିପରି କଥାଟାକୁ ବୁଝେଇବେ ବୁଝି ପାରୁ ନଥିଲେ । ସେ କିଛି କହିବାକୁ ଯାଉଥିଲେ ଏତିକିବେଳେ ପ୍ରଧାନମନ୍ତ୍ରୀ କହିଲେ, ଆଚ୍ଛା, ସେ କଥା ମଝିରେ 'ଡିଅ ଡିଅ' ବୋଲି କଅଣ କହୁଥିଲେ ?

'ଡିଅ' ନୁହେଁ ସେଇଟା 'ଦିଅ' । ମାନେ ଇସ୍ତଫା ଦିଅ । କଥା ଯୋଡ଼ି ସେ କହିଲେ ମୁଁ ଥରେ ଆପଣଙ୍କୁ ଗୋଟିଏ ତ୍ରିଭାଷୀ ଦେଇଥିଲି ।

ସେଇଟା ମୁଁ ମୋ ସ୍ତ୍ରୀଙ୍କୁ ଦେଇଚି । ମୋତେ ବେଳ କାହିଁ ? ଆପଣ ଯେଉଁ ଇସ୍ତଫା ଦେବାକଥା କହିଲେ ଭାରତରେ ଇସ୍ତଫା କେମିତି ଦିଆଯାଏ ଆପଣ ଜାଣନ୍ତି ? ମୁଁ ଇସ୍ତଫା ଦେବି ବୋଲି ଘୋଷଣା କରିବା ମାତ୍ରେ ମୋର ସ୍ତାବକ ଦଳଙ୍କୁ ଆଗରୁ କୁହାଯାଇଥିବ - ସେମାନେ ଯାଇ ଆମରଣ ଅନଶନ ନଚେତ୍ ଆତ୍ମାହୁତି ଦେବେ ବୋଲି ଘୋଷଣା କରିଦେବେ । କଥା ସେତିକିରେ ସରେ । ମୁଁ ସେ କଥା ଏଠି କହିବାକୁ ଚାହୁଁନାହିଁ । ଆମ ରାଜନୀତି ମୂଲ୍ୟବୋଧ ଭିତ୍ତିକ ହେବ । ଆପଣମାନେ ମୋତେ ଚାହିଁବାରୁ ମୁଁ ଆସିଲି । ନ ଚାହିଁଲେ ଚାଲିଯିବି । ଛାଡ଼ନ୍ତୁ, ଏ 'ଫଳ' କଥାଟା କଅଣ କରିବା କହିଲେ ?

ମୁଁ ଭାବୁଚି ଏ ବିଷୟରେ ଆମର ଟିକିଏ ଆତ୍ମ ସମୀକ୍ଷା ଦରକାର । କଥାଟା ଭଲ ଭାବରେ ଟିକିଏ ଚିନ୍ତା କରାଯାଇପାରେ । ଅର୍ଥମନ୍ତ୍ରୀ ଗମ୍ଭୀର ହେଇ କହିଲେ ।

ସେ ଚାଲିଗଲା ପରେ ପ୍ରଧାନମନ୍ତ୍ରୀ ଆହୁରି ଭାରାକ୍ରାନ୍ତ ହେଇ ପଡ଼ିଲେ । ଅନେକ ସମୟ ନିରୋଳାରେ ଭାବିଲା ପରେ ସେ ବଡ଼ ଚିନ୍ତିତ ମନରେ ଭିତରକୁ ଉଠିଗଲେ ଏବଂ ଦେଖିଲେ ଉର୍ବଶୀ ଶୋଇ ଶୋଇ ଇଣ୍ଡିଆରୁ ମଗେଇ ଥିବା ଖୁସବନ୍ତ ସିଂହଙ୍କ 'ଇନ୍ କମ୍ପେନୀ ଅଫ୍ ଓମେନ୍' ବହିଟିକୁ ଅତି ମନଯୋଗ ସହକାରେ ପଢୁଛନ୍ତି । ସେ ସେଥିରେ ଏତେ ମଜି ଯାଆନ୍ତି ଯେ ସ୍ୱାମୀଙ୍କ ଆସିବା କଥା ମଧ ଜାଣି ପାରିଲେ ନାହିଁ ।

ପ୍ରଧାନମନ୍ତ୍ରୀ ତାଙ୍କ ପାଖରେ ବସିପଡ଼ିଲେ ଏବଂ କହିଲେ - ତୁମେ କିଛି କହି ପାରିବ ଏ ଯୋଜନାର ଫଳଗୁଡ଼ିକ ସବୁ କିଏ ନେଇ ଯାଉଛି ? ମୁଁ ତ ଯାର କୂଳ କିନାରା କିଛି ପାଉନି ।

ଉର୍ବଶୀ ବିରକ୍ତ ହୋଇ ତାଙ୍କୁ ଟିକେ ଚାହିଁଲେ ଏବଂ ତକିଆ ତଳୁ ବେଙ୍କ ଲକରର ବଡ଼ ଚାବି ପେନ୍ଥାଟାଏ ବାହାର କରି ତାଙ୍କ ଆଡ଼କୁ ଫୋପାଡ଼ି ଦେଲେ । ତା'ପରେ ସେ ସ୍ୱାମୀଙ୍କ ଆଡ଼କୁ ପଛକରି ପୁଣି ପଢ଼ିବାକୁ ଆରମ୍ଭ କଲେ ।

(ପ୍ରଜାତନ୍ତ୍ର - ୧୯.୩.୨୦୦୨)

***

# ଠିକାରେ ଠିକାରେ

ମାନନୀୟ ଶିକ୍ଷାମନ୍ତ୍ରୀ ମହୋଦୟ, ମୁଁ ଏଇମାତ୍ର ସମ୍ବାଦପତ୍ର ମାଧ୍ୟମରୁ ଜାଣିଲି ଯେ ଆପଣଙ୍କ ଲୋକପ୍ରିୟ ସରକାର ଏବେ ହାଇସ୍କୁଲମାନଙ୍କରେ ଖାଲି ପଡ଼ିଥିବା ହେଡମାଷ୍ଟର୍ ପଦଗୁଡ଼ିକ ଠିକାରେ ପୂରଣ କରିବେ । ଏହା ଏକ ଯୁଗାନ୍ତକାରୀ ତଥା ଐତିହାସିକ ସିଦ୍ଧାନ୍ତ । ଆଗରୁ କେବଳ କାରଖାନାମାନଙ୍କରେ ଠିକା ଶ୍ରମିକ କାମ କରୁଥିଲେ । ସେତେବେଳେ ସେମାନଙ୍କ ପାଇଁ 'ନୋ ୱାର୍କ-ନୋ ପେ' ବ୍ୟବସ୍ଥା ଆଇନ୍‌ରେ ଲାଗୁ ହେବାରୁ ଠିକା ଶ୍ରମିକମାନେ ବିନା ଛୁଟିରେ କାମ କରିବାକୁ ଆସିଲେ । ଏହାଦ୍ୱାରା ଆମ ସ୍ୱାଧୀନ ଦେଶର ସରକାର ଗୋଟିଏ ନୂଆ 'ୱାର୍କ କଲଚର୍' ସୃଷ୍ଟି କଲେ । ଆପଣଙ୍କର ଏ 'ନୋ ୱାର୍କ ନୋ ପେ' ସିଷ୍ଟମ୍ ଓଡ଼ିଆଙ୍କୁ ଜାଗ୍ରତ କରାଇ ଦେଇଚି । ବହୁତ ଭଲ ହେଲା । ଏ ସିଷ୍ଟମ୍ ଭଲ କାମ ଦେବାରୁ ଆମ ଦେଶରେ ଏବେ ସ୍ଥାୟୀ କାମରେ ମଧ୍ୟ ଠିକାରେ ନିଯୁକ୍ତି ଦିଆଯାଉଛି । ତେଣୁ ଦେଶରେ ଏବେ ଠିକାଦାରୀ ପ୍ରଥା ବଢ଼ିଛି । ଠିକା କାମରେ ଠକାଠକି ମୋଟେ ନାହିଁ । ଠିକା ଶ୍ରମିକମାନେ କାମରେ ଏତେ ମଜ୍ଜି ଯାଉଚନ୍ତି ଯେ, ସେମାନେ ଆଠ ଘଣ୍ଟାର କାମକୁ ଚାରି ଘଣ୍ଟାରେ ସାରି ଦେଉଛନ୍ତି । କାମ ଚାପରେ ସେମାନେ ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ ଜାଣି ପାରୁ ନଥିବେ ।

ମୁଁ ଆପଣଙ୍କ ଏ ବ୍ୟବସ୍ଥାକୁ ପୂର୍ଣ୍ଣ ସମର୍ଥନ ଜଣାଉଛି । ମୁଁ ତ ଭାବୁଚି ଆମର ଏ ମହାନ୍ ଦେଶରେ ସବୁ ପ୍ରକାର କାମକୁ ଠିକାରେ କରେଇଲେ ଆହୁରି ଭଲ ହେବ । ଆପଣଙ୍କ ମନ୍ତ୍ରୀମଣ୍ଡଳ ମଧ୍ୟ ଠିକାରେ ଚାଲୁ । ପାଞ୍ଚବର୍ଷିଆ ଠିକା ବଦଳରେ ଦିନିକିଆ ହେଉ । ମନ୍ତ୍ରୀମାନଙ୍କ ପାଇଁ ଗୋଟିଏ ଟାଇମ୍ ଅଫିସ୍ ହେଉ । ସେମାନେ 'ପଞ୍ଚ୍ କାର୍ଡ' ଧରି ଲାଇନ୍‌ରେ ଆସନ୍ତୁ ଏବଂ କାମକୁ ଯାଆନ୍ତୁ । ହାତରେ ଟିଫିନ୍ କେରିଅର ଥିବ । ଆପଣ ଦେଖିବେ ଏ ବଦ୍‌ମାସ୍ ଭୋଟରମାନେ ଯେ ସବୁବେଳେ ଆପଣଙ୍କ ବଦନାମ କରୁଛନ୍ତି ଯେ, ଆପଣ କିଛି କାମ କରୁ ନାହାନ୍ତି, ସେ କଥା କହିବାକୁ ତାଙ୍କର ଆଉ ହିମ୍ମତ ନଥିବ ।

ଏବେ ହେଇ ଦେଖନ୍ତୁ ମୁଁ ହେଉଛି ପ୍ରଥମ ବ୍ୟକ୍ତି ଯେ କି ଠିକାରେ ପ୍ରଧାନ ଶିକ୍ଷକ ନିଯୁକ୍ତିକୁ ପୂର୍ଣ୍ଣ ସମର୍ଥନ ଦେଉଚି । ସେମାନଙ୍କୁ 'ପ୍ରଧାନଶିକ୍ଷକ (ଠିକା)' ବୋଲି କୁହାଯାଉ । ଠିକା ଶବ୍ଦ ଲାଗିଥିବାଯାଏ ସେମାନେ ମୋଟେ ଠକି ପାରିବେ ନାହିଁ । ସେମାନେ ସ୍କୁଲ ଛାଡ଼ି ଯିବାକୁ ଚାହିଁବେନି । କ୍ଲାସ୍‌ରେ ରାତିରେ ମଧ୍ୟ ପଢ଼ା

ହେବ । ସକାଳେ ବି ହେବ । ଯେମିତି ଏବେ କେତେକ ସ୍କୁଲରେ ଦୁଇଓଳି ଟିଉସନ୍‌କୁ ବାଧ୍ୟତାମୂଳକ କରି ଦିଆଯାଇଚି । ସେଠି ଶିକ୍ଷକମାନେ ଠିକାରେ ଅଧିକ କାମ କରି ଅଧିକ ପଇସା ନେଉଚନ୍ତି । ଆପଣ ଏହାକୁ ଆଇନ୍ କରି ଦିଅନ୍ତୁ । କଲେଜ୍ ଶିକ୍ଷକମାନେ ବାହାରେ ନ ରହି କଲେଜରେ ଟିଉସନ୍ କରନ୍ତୁ । ପିଲାମାନଙ୍କର ଲାଭ । ସମାଜ ଉପକୃତ ହେବ ଏବଂ ସରକାର ବି । ଦୁର୍ନୀତି ନିବାରଣ ବିଭାଗ ଉପରେ ଚାପ କମ ରହିବ ।

ମହାଭାଗ ! ମୁଁ ଏତେ କଥା ଲେଖିବାର ଉଦ୍ଦେଶ୍ୟ ହେଉଚି ମୁଁ ଆପଣଙ୍କର ପ୍ରଧାନଶିକ୍ଷକ (ଠିକା) ପଦ ପାଇଁ ପ୍ରାର୍ଥୀ ହେବାକୁ ଚାହେଁ । ମୋର ଶିକ୍ଷାଗତ ଯୋଗ୍ୟତା ଯଥେଷ୍ଟ ଅଛି । ବି.ଏ. ପାଶ୍ କରିଚି ପ୍ରଥମ ଶ୍ରେଣୀରେ । ଟପର ହୋଇଥିଲି ୟୁନିଭରସିଟିରେ । ବି.ଇଡି ମଧ ପାଶ କରିଛି ସରକାରୀ କଲେଜରୁ । କିନ୍ତୁ ଚାକିରି ମିଳିଲାନି । ସବୁ ପ୍ରାଇମେରୀ ଠାରୁ ହାଇସ୍କୁଲ ଯାଏ ବୁଲି ଦେଖିଲି, ସବୁଠି ଶହ ଶହ ପୋଷ୍ଟ ଖାଲି କିନ୍ତୁ ଚାକିରି ନାହିଁ । ଦେଖିଲି ବେକାର ବୁଲି ସମୟ ନଷ୍ଟ କରିବା ଅପେକ୍ଷା ଏମ୍.ଏ. ପ୍ରାଇଭେଟ୍‌ରେ ଦିଆଯାଉ । ତାକୁ ଦେଲି ଏବଂ ଫାଷ୍ଟ କ୍ଲାସ୍ ପାଇଲି । ଗଲି ନୂଆ ଖୋଲୁଥିବା ଗୋଟେ କଲେଜକୁ । ମାଇନର୍ ପାଶ କରି ନଥିବା ସେକ୍ରେଟାରୀ କହିଲେ "ଏବେ ଆମର ଛଟେଇ ଋତୁ ଆରମ୍ଭ ହେଇଚି । ପ୍ଲସ ଟୁ ପାଇଁ ଏମ୍.ଏ ଆବଶ୍ୟକତା ନାହିଁ ।"

ଧର୍ମାବତାର ! ମୋର ବାପା ମା' ଅଛନ୍ତି । ସାନ ଭାଇ ଭଉଣୀ ଅଛନ୍ତି । ବାପା ଅଭିଶାପ ଦେଉଚନ୍ତି । ମାଆ ସବୁବେଳେ କାନ୍ଦୁଚି । କହୁଚି ପୁଅ ତିରିଶି ଟପିଲାଣି । ଏବେ ବି ହାତକୁ ଦି' ହାତ ହେଲାନି । ବଂଶ ବୁଡ଼ିବ । ଥରେ ଜଣକୁ ଭଲ ପାଇଥିଲି । ସେ ଏବେ ଆତ୍ମହତ୍ୟାର ନୋଟିସ୍ ଦେଲାଣି । ଏବେ ଆପଣ କହନ୍ତୁ, ମୁଁ କଅଣ କରିବି ?

ମହାଶୟ ! ଠିକା ପ୍ରଧାନ ଶିକ୍ଷକ ହିସାବରେ ମୋର ଅଭିଜ୍ଞତା ଅଛି । ତିନୋଟି ହାଇସ୍କୁଲରେ ମୁଁ ମୋଟ ୧୦ ମାସ ଦକ୍ଷତାର ସହିତ କାମ କରିଚି । ଜାଗା ଖାଲି ଥିଲା । ପଶିଗଲି କିନ୍ତୁ ମଂଜୁରୀ ନଥିଲା ତେଣୁ ଦରମା ମିଳିଲାନି । ଏବେ ଜେଲ୍‌ରେ ଅଛି ମୋର ତଥାପି ଦୁଃଖ ନାହିଁ । ମୋର ଏକମାତ୍ର ପ୍ରାର୍ଥନା, ସରକାରଙ୍କ ନୂଆ ନିୟମ ଅନୁସାରେ ମୋତେ ପ୍ରଧାନ ଶିକ୍ଷକ (ଠିକା) ପଦରେ ନିଯୁକ୍ତି ଦିଆଯାଉ ।

ଇତି ଆପଣଙ୍କର

ସତ୍ୟନାରାୟଣ ଦାସ, ଏମ୍.ଏ.,ବି.ଇଡି, ସେଣ୍ଟ୍ରାଲ ଜେଲ୍,
କୋଠରୀ ନଂ -୫, ଭୁବନେଶ୍ୱର

(ପ୍ରଜାତନ୍ତ୍ର - ୧୨.୧୧.୨୦୦୪)

***

# ଦ୍ୱାର ଖୋଲା ହେଲାଣି

'ହେଇ ଦେଖିଲଣି ? ମୁଁ ସେଦିନ କହୁ ନଥିଲି ? ହେଇ ଦେଖ ।' ସୁମତୀ ଦେବୀ ଘର ଭିତରୁ ଏକ ପ୍ରକାର ଦୌଡ଼ି ଆସିଲେ । ସେ ଗୋଟାଏ ହାତରେ ସେ ଦିନର ଖବରକାଗଜ ଓ ଅନ୍ୟ ହାତରେ ଅଟା ଦଳୁଥିଲେ ବୋଲି ହାତଟାକୁ ସେମିତି ମୁଠା କରି ଟେକିଥାଆନ୍ତି ।

ସୁଦାମବାବୁ ଚମକି ପଡ଼ିଲେ ତାଙ୍କୁ ଏ ଅବସ୍ଥାରେ ଦେଖି । ସେ କଅଣ ଗୋଟିଏ ଅଘଟଣା ଘଟିଛି ଭାବି ଚା'କପ ଛାଡ଼ି ସୋଫାରୁ ଠିଆ ହୋଇପଡ଼ିଲେ ।

"ହେଇ ନିଜେ ପଢ଼ । ମୋ କଥା ମିଛ ହବ ? ମାସକ ତଳେ ଯାହା କହିଥିଲି । ଏବେ ଦେଖ ସତ ହେଲା ନା ନାହିଁ ? ନିଅ ନିଜେ ପଢ଼ ।

ସୁଦାମବାବୁ କୋଉଟା ପଢ଼ିବେ ବୁଝି ପାରିଲେନି । ମାସକ ତଳେ ତାଙ୍କ ସ୍ତ୍ରୀ କଅଣ କହିଥିଲେ ସେ କଥା ମଧ୍ୟ ତାଙ୍କର ମନେ ନାହିଁ । ସେ କାଗଜଟାକୁ ଧରି ତାଙ୍କ ସ୍ତ୍ରୀଙ୍କୁ ହାଁ କରି ଅନେଇ ରହିଲେ ।

"କଅଣ ବୁଝି ପାରୁନ ମ ? ହେଇ ଦେଖ ଏଇଠି ।"

ସୁଦାମ ବାବୁ ପଢ଼ିଲେ । 'ମୁଖ୍ୟମନ୍ତ୍ରୀ ଦିଲ୍ଲୀରୁ ଫେରିଲା ମାତ୍ରେ ତିନିଟା ଯାକ ରୁମ୍‌କୁ ସଫା କରି ଦେବାକୁ ନିର୍ଦ୍ଦେଶ ଦେଇଛନ୍ତି ।'

"ପଢ଼ ତା ତଳକୁ । ନୂଆ ରଙ୍ଗ ବି କିଣା ଯାଇ ଏକଦମ୍ ଚକ୍‌ଚକ୍ କରାଯିବ । ପରଦା, ଆସବାସପତ୍ର ସବୁ ବଦଳ ହେଉଚି । ହେବନି ? ଏତେ ଦିନକାଳ ଯେତେବେଳେ ଝରକା କବାଟ ବନ୍ଦ ଥାଇ ତାଲା ପଡ଼ିଥିଲା ସେତେବେଳେ ସେଗୁଡ଼ାକ ଆଉ ଥିବ ? ଫିମ୍ପି ମାରି ଯାଇଥିବ । କାଠରେ ଛତୁ ଫୁଟି ଯିବଣି । ଏବେ ସବୁ ନୂଆ । ହେବା କଥା ।"

ସୁଦାମବାବୁ ଦୀର୍ଘ ନିଶ୍ୱାସ ପକେଇ କହିଲେ, "ହେଲା ଯେ । କିନ୍ତୁ.... ।"

"କିନ୍ତୁ ଆଉ କଅଣ ମ ? ଏଥର ନିଶ୍ଚୟ । ମୁଁ ସେଦିନ ସଂକଟମୋଚନ ମନ୍ଦିରକୁ ଯାଇଥିଲି । ଗୋଟାଏ ଭରି ଓଜନର ପଦକ ଦେବି କହିଆସିଚି । ତୁମେ ଦେଖ, ଖରାବେଳ ସୁଦ୍ଧା ଖବର ଆସୁଚି କି ନାହିଁ ।"

"ମୋତେ କାହିଁକି ବିଶ୍ୱାସ ହେଉନି । ସେତ ଏମିତି କେତେଥର କହିଲେଣି । ଦିନକ ପରେ ପୁଣି କହନ୍ତି 'ଅପେକ୍ଷା କର । ' ଏଥରତ ପୁଣି ଅନ୍ୟ କେତେ ଜଣଙ୍କ ନାଁ ଶୁଣା ଯାଉଚି ।"

ମୁଁ ଜାଣେ ତମେ ଇମିତି କହିବ । ତମେ ରାଜନୀତି କଥା କଅଣ ବୁଝି କହିଲ ? ସେ ଯେତେବେଳେ ମୁଖ୍ୟମନ୍ତ୍ରୀ, ସବୁଆଡୁ ଦେଖି ଚାହିଁ କରିବେ । କିନ୍ତୁ ତୁମେ ଏତେ ସରଳ ହେଲେ ଚଳିବ ? ତୁମେ ମୋ କଥା ମାନ । ଏଥର ଆଉ ଟପିବାର ନୁହେଁ । ତୁମ ନାଁ ତ ପୁଣି ଖବରକାଗଜରେ ପ୍ରକାଶ ପାଇ ସାରିଚି ।

ଆଃ ସେଇଟା ଆମ ବିଷ୍ଣୁଭାଇ ଲେଖି ଦେଇଥିବେ ମ । ସେଦିନ ସେ ଆମ ଘରୁ ଖିଆପିଆ କରି ଗଲେ । ତା'ପରଦିନ ମୁଁ କାଗଜରେ ଦେଖିଲି ମୋ ନାଁଟା....

ବେଶ୍ ବେଶ୍, ତାକୁ ଟିକିଏ ଫୋନ୍ କଲ । ତୁମେ ମୋତେ ଫୋନ ଦିଅ । ମୁଁ କଥା ହେବି । ନା, ସେଥିରେ ନୁହେଁ, ମୋବାଇଲ ଲଗାଅ ।

ସୁମତି ଦେବୀ ଫୋନ ଧରିଲେ ।

"ହଁ ମୁଁ ନାନୀ କହୁଚି । ତୁ ଆଜି କାଗଜ ଦେଖିଚୁ ? ସେଇ ତିନିଟା ଯାକ ରୁମ୍ ଖୋଲି କେମିତି ସଜାସଜି ହେବା କଥା ? ତୋ'ରି କାଗଜରେ ବାହାରିଚି ମ ?

× × × × ×

ତୁ ଆଜି ତାଙ୍କ ପାଖକୁ ଯାଉଚୁ ? ତିନିଟା ବେଳେ ? ତେବେ ଆଉ କଅଣ ? ଇଏ ବଡ଼ ବ୍ୟସ୍ତ ହେଉଛନ୍ତି । ତୁ ଆସି ସଂଗେ ସଂଗେ ଫୋନ୍ କରିବୁ । ନା ନା ତୁ ନିଜେ ଆସିବୁ । ମୁଁ ମିଠା ରଖିଥିବି । ସେ ସୁଇଚ୍ ଅଫ୍ କଲେ ଏବଂ ମୋବାଇଲଟା ସ୍ୱାମୀଙ୍କୁ ଧରାଇ ଦେଇ କହିଲେ, "ଏଥର ମନ ବୁଝିଲା ତ ? ମୁଁ ଆଉ ମିଛଟାରେ ନୂଆ କନାରେ ଏତେଦିନ ହେଲା ରୂପାଟଙ୍କା ବାନ୍ଧି ରଖିଚି ?' ସେ ହସିଲେ ।

ଭାତ ଖାଇସାରି ସେଦିନ ଆଉ ସ୍ୱାମୀ-ସ୍ତ୍ରୀ ବିଛଣାକୁ ନଯାଇ ଡ୍ରଇଂ ରୁମ୍‌ରେ ବସି ରହିଲେ । ପୁଅ-ଝିଅ, ନାତିନାତୁଣୀମାନେ ମଧ୍ୟ ଅନ୍ୟ ଘରେ ଅପେକ୍ଷା କରି ବସିଛନ୍ତି । କେତେବେଳେ ଖବର ଆସିବ ।

"ତୁମେ ସେଇ ଶେଷ ରୁମ୍‌ଟା ନେବ ।" ସୁମତି ଦେବୀ ଆରମ୍ଭ କଲେ । "ତାର କବାଟଟା ପୂର୍ବକୁ ଅଛି, ଝରକା ଉତ୍ତରକୁ । ତମ ପାଇଁ ଶୁଭ ।"

ମୋବାଇଲରେ ପିପ୍, ପିପ୍ ।

ସୁମତୀ ଦେବୀ ଉଠେଇଲେ । ହଁ କୁହ ମୁଁ କହୁଚି । ସବୁ ହେଇ ଯାଇଚି ତ.. ? କାହିଁକି ? ପୁଣି କଅଣ ହେଲା ? କହିଲେ ୨୫ରୁ ୪୦ କରି ଦିଆହେଇଚି । କହିଲେ ଏକଥା ?... ସେଥିରେ କଅଣ ଅଛି ? ତୁ କହିଲୁନି... ? କଅଣ, ସେ ରୁମ୍ ଗୁଡ଼ାକ ତାଙ୍କ ଅଫିସ୍ ପିଅନ ମାନଙ୍କୁ ଦେଇ ଦେଲେଣି ? ସୁମତି ଦେବୀ କି ଆଉ ସମ୍ଭଳା ପଡ଼ନ୍ତି, ମୋବାଇଲଟାକୁ ଫୋପାଡ଼ି ଦେଇ ଉଠିଗଲେ ।

(ପ୍ରଜାତନ୍ତ୍ର- ୨୬.୧୧.୨୦୦୧)

***

# ଅର୍ଥମନ୍ତ୍ରୀଙ୍କ ଅବ୍ୟର୍ଥ ବଜେଟ୍

ଅର୍ଥମନ୍ତ୍ରୀଙ୍କୁ ସେମାନେ ଗୁଡ଼େଇ ଗୁଡ଼େଇ ପ୍ରଶ୍ନ ପଚାରିବାକୁ ଆରମ୍ଭ କଲେ । ବିଲ୍‌ରେ ଯେଉଁ ପ୍ରକାର ବ୍ୟବସ୍ଥା ଅଛି ସେଥିରେ ସମସ୍ତଙ୍କର ସନ୍ଦେହ ହେବା ସ୍ୱାଭାବିକ । ସାଧାରଣ ଲୋକେ ସେଥିରୁ କଅଣ ବୁଝିବେ ? ଭାବିବେ ଲୋକଙ୍କୁ ସରକାର ବୋକା ବନଉଛନ୍ତି ।

ଜଣେ ସାମ୍ବାଦିକ ପ୍ରଶ୍ନ କଲେ ଗୋବର ଶିଳ୍ପ ମାନେ କଅଣ ? ଏହା ଦ୍ୱାରା ବେକାରୀ ସମସ୍ୟା କିପରି ଦୂର ହୋଇ ପାରିବ ?

ମନ୍ତ୍ରୀ କହିଲେ, କଥାଟା ଅତି ସହଜ । ଏହାହିଁ ଏକମାତ୍ର ଶିଳ୍ପ ଯୋଉଥିରେ ଆମେ ବିନା ପୁଞ୍ଜି କିମ୍ବା ସ୍ୱଳ୍ପ ପୁଞ୍ଜିରେ ସୁନ୍ଦର କାରବାର କରିପାରିବା । ଏହା ଏକ ଆତ୍ମନିୟୋଜନ ବ୍ୟବସ୍ଥା । ଖୁବ୍ ଶୀଘ୍ର ଆମେ ରାଜ୍ୟରେ ଗୋଟିଏ "ଗୋବର କରପୋରେସନ୍" ସହିତ ଗୋଟିଏ "ଗୋବର ଡିରେକ୍‌ଟରେଟ୍" ମଧ ଖୋଲିବାକୁ ସ୍ଥିର କରିଛୁ । ମୁଖ୍ୟ ମନ୍ତ୍ରୀ ଏଥିରେ ଏତେ ଉତ୍ସାହିତ ଯେ, ସେ ବର୍ତ୍ତମାନ ମନ୍ତ୍ରିମଣ୍ଡଳରେ ଗୋଟିଏ ସ୍ୱତନ୍ତ୍ର ଗୋବର ବିଭାଗ ଖୋଲିବା କଥା ଚିନ୍ତା କରୁଛନ୍ତି ଏବଂ ସେ ଦାୟିତ୍ୱ ଜଣେ ସିନିୟର ମନ୍ତ୍ରୀଙ୍କୁ ଦେବା କଥା ଭାବୁଛନ୍ତି ।

ମନ୍ତ୍ରୀ ଟିକିଏ ରହିଲେ ଏବଂ କହିଲେ ଆପଣ ଜାଣନ୍ତି ଆମ ଦେଶରେ ଏବେ ଗୋବରର ଚାହିଦା ବୃଦ୍ଧି ପାଉଛି ? ଏହା ସ୍ୱାଭାବିକ । ତାହା ଆହୁରି ବଢ଼ିବ ଏବଂ ବଢ଼ିବାରେ ଯଥେଷ୍ଟ ସୁଯୋଗ ରହିଛି । ଆମେ ତାର ଖାଲି ସଦୁପଯୋଗର ରାସ୍ତା ତିଆରି କରିବା । ଆମ ସରକାର ଏ ବର୍ଷ ଏଥିରେ ଦଶ ଲକ୍ଷ ବେକାରଙ୍କୁ କାମ ଯୋଗଇ ଦେବାକୁ ଲକ୍ଷ୍ୟ ଧାର୍ଯ୍ୟ କରିଚି । ୧୦ ଲକ୍ଷ ଲୋକ ଏଥିରେ ସିଧାସଳଖ କାମ ପାଇଲେ ଅନ୍ତତଃ ୫୦ ଲକ୍ଷ ଲୋକ ଏହାଦ୍ୱାରା ପରୋକ୍ଷରେ ଉପକୃତ ହେବେ । ଆପଣ ଦେଖିବେ ଆମର "ପାର କେପିଟା ଇନ୍‌କମ୍" କେମିତି ହୁ ହୁ ବଢ଼ିଯିବ । ଲୋକ ଏଥିରୁ ବାରମାସ କାମ ପାଇବେ ।

କିନ୍ତୁ ଗୋବରର ଚାହିଦା କେମିତି ବଢ଼ିବ ?

ତା'ର ବ୍ୟବସ୍ଥା ମଧ ହୋଇସାରିଚି । ଲୋକଙ୍କୁ ଆମେ ଯେତିକି ଧର୍ମଭାବପନ୍ନ କରିବା ସେତେ ଭଲ । ଧର୍ମ ଭାବ ନଥିବା ମଣିଷ ପଶୁ ତୁଲ୍ୟ । ଏବେ ସେ ପ୍ରକ୍ରିୟା ଆରମ୍ଭ ହୋଇଯାଇଚି । ଆପଣ ଦେଖୁଥିବେ ଏବେ ଦେଶରେ କେମିତି ହୁ ହୁ ମନ୍ଦିର ସବୁ ନିର୍ମାଣ ଚାଲିଚି । ଧର୍ମସଭା, ପ୍ରବଚନ, ଗୀତା ଆଲୋଚନା, ହନୁମାନ ପୂଜା, ଜ୍ୟୋତିଷ ଶାସ୍ତ୍ର ଓ ବାସ୍ତୁଶାସ୍ତ୍ର ପ୍ରତି ଲୋକଙ୍କ ଆଦର ବଢୁଚି । ମୋଟ୍ କଥା ବିଶ୍ୱାସ ମାଧମରେ ହେଉ ବା ଅଂଧବିଶ୍ୱାସ ମାଧମରେ ହେଉ ଲୋକଙ୍କର ଯେ ଧର୍ମଭାବନା ବଢୁଛି ଏଥିରେ ସନ୍ଦେହ ନାହିଁ । ଏହା ଦେଶ ପକ୍ଷେ ବେଶ୍ ଶୁଭଙ୍କର । ଧର୍ମ ହିଁ କେବଳ ମନୁଷ୍ୟକୁ ପ୍ରକୃତ ଶାନ୍ତି ଦେଇପାରିବ । ଅଶାନ୍ତ ମଣିଷ ବିପରୀତ କଥା ସବୁ ଚିନ୍ତାକରେ । ଏହା ସୁସ୍ଥ ସମାଜ ଗଠନର ପରିପନ୍ଥୀ । ତେଣୁ ଆମ ସରକାର ଲୋକଙ୍କର ଏହି ମନୋଭାବକୁ ତ୍ୱରାନ୍ୱିତ କରିବାକୁ କେତେକ କାର୍ଯ୍ୟକ୍ରମ ହାତକୁ ନେବାକୁ ଠିକ୍ କରିଚି ।

ସେଗୁଡ଼ିକ କଅଣ ?

ଦୈନନ୍ଦିନ ଜୀବନରେ ପୂଜା ପଦ୍ଧତି ମଣିଷର ଏକ ଜରୁରୀ ଆବଶ୍ୟକତା । ଏହା ଯେ ଶାସ୍ତ୍ରସମ୍ମତ ଏକଥା ଆମ ଲୋକ ଜାଣିନାହାନ୍ତି । ଯାହା ଶାସ୍ତ୍ର ସମ୍ମତ ତାହା ବାଧ୍ୟତାମୂଳକ ହେବା ଉଚିତ୍ । ଦିନକୁ ଅନ୍ତତଃ ଦୁଇଥର ଏକାନ୍ତ ଜରୁରୀ । ପ୍ରତ୍ୟେକ ପୂଜା ପଦ୍ଧତିରେ ଏବଂ ଅନ୍ୟାନ୍ୟ ପ୍ରତ୍ୟେକ ଘରୋଇ କାମରେ ଗୋବର ବ୍ୟବହାରକୁ ଏବେ ସରକାର ବାଧ୍ୟତାମୂଳକ କରିଦେବେ । ଆମର ବ୍ରାହ୍ମଣ ଓ ପୁରୋହିତ ମାନଙ୍କ ମାଧମରେ ସେଥିପାଇଁ ମାନସିକ ଚାପ ସୃଷ୍ଟି କରାଯିବ । ଶାସ୍ତ୍ର କଥାଟା ସେମାନଙ୍କୁ କହି ଦିଆଯିବ । ଫଳରେ ଗୋବର ବ୍ୟବହାର ବୃଦ୍ଧି ପାଇବ । ଦରକାର ହେଲେ ସରକାର ଏଥିପାଇଁ ଆଇନ୍ ମଧ କରିବେ ।

ଆମର ଇସ୍ପାତ ଶିଳ୍ପ କାହିଁକି ବୁଡିଯାଉଚି ଜାଣନ୍ତି ? ମନ୍ତ୍ରୀ ପଚାରିଲେ ।

କାହିଁକି ?

ଗତ ୩୦ ବର୍ଷ ଭିତରେ ଆମେ ଇସ୍ପାତର ଆଭ୍ୟନ୍ତରୀଣ ଚାହିଦା ବଢ଼େଇ ପାରିଲୁନି । ମୁଣ୍ଡପିଛା ଖର୍ଚ୍ଚ ନବଢ଼ିଲେ କୌଣସି ଶିଳ୍ପ ତିଷ୍ଠିବା ସମ୍ଭବ ନୁହେଁ । ଆମେ ଆମର ମୁଣ୍ଡପିଛା ଗୋବର ଖର୍ଚ୍ଚ ଯେମିତି ବର୍ଷକୁ ଦଶଭାଗ ବଢ଼େ ତା'ର ଯୋଜନା ତିଆରି କରିଚୁଁ । ଏଥିପାଇଁ ଆମର ପ୍ଲାନିଂ ବୋର୍ଡକୁ ନିର୍ଦ୍ଦେଶ ଦିଆ ସରିଲାଣି ।

କିନ୍ତୁ ଏତେ ଗୋବର ଆସିବ କୋଉଠୁ ?

କଥା ତ ସେଇଠି । ଦେଖନ୍ତୁ, ଏଇଟା ଗୋଟିଏ ଇଂଟଗ୍ରେଟେଡ ଶିଳ୍ପ । ଡିମାଣ୍ଡ ବଢ଼ିଲେ ତା'ର ପୂରଣ ପାଇଁ ଲୋକେ ଗାଈ ରଖିବେ । ଦେଶୀ ଗାଈ । ଏଇଠି ସ୍ୱଦେଶୀ କଥାଟା ଉପରେ ଆମେ ଜୋର୍ ଦେଉଚୁଁ । ଗୋବର ମାଧ୍ୟମରେ ଆମେ ଲୋକଙ୍କୁ ସ୍ୱଦେଶୀ ଭାବାପନ୍ନ କରିବାକୁ ଚାହୁଁଚୁ । ଦୁଇଟା କାମ ହେବ । ଯିଏ ଯେତେ ଗାଈ ରଖିବ ସିଏ ସେତେ ଅଧିକ ଗୋବର ପାଇବ । ଅଧିକନ୍ତୁ ଗୋ'ମାତା ପ୍ରତି ତା'ର ଭକ୍ତି ମଧ୍ୟ ବଢ଼ିବ । କାରଣ ଲୋକେ ଆସ୍ତେ ଆସ୍ତେ ବୁଝିଲେଣି ଯେ ଗାଈ ହିଁ ଆମର ତ୍ରାଣକର୍ତ୍ତା ।

କିନ୍ତୁ ଅଣହିନ୍ଦୁମାନେ କଥାଟାକୁ ଗ୍ରହଣ କରିବେ ତ ?

ଦେଖନ୍ତୁ, ଗୋବର ସହିତ ସିଧାସଳଖ ଧର୍ମର ସମ୍ପର୍କ ଅଛି ବୋଲି ଭାବନ୍ତୁ ନାହିଁ । ଆମ ସରକାର ସେମିତି କିଛି କରିବାକୁ ଚାହାନ୍ତି ନାହିଁ । ଆମର ଦୃଷ୍ଟିଭଙ୍ଗୀ ସମସ୍ତଙ୍କ ପ୍ରତି ସମାନ । ଗୋବରର ବୈଜ୍ଞାନିକ ଗୁଣ ତ ଆପଣ ଜାଣନ୍ତି । ଫିନାଏଲ ପରି କାମ କରେ । ଡିସ୍‌ଇନଫେକ୍ଟିଂ । ଏହା ପରୀକ୍ଷା ହେଇ ସାରିଚି । ଆମେରିକାର ବୈଜ୍ଞାନିକମାନେ ତା'ର ରେଜଲ୍ଟ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଛନ୍ତି । ଆମେ ଗୋବର ସହିତ ଆମ ସମାଜ ଏବଂ ଅର୍ଥନୀତିର ଗୋଟିଏ ନିବିଡ଼ ସମ୍ପର୍କ ଅଛି ବୋଲି କହିବାକୁ ଚାହୁଁ ।

ବୁଝିଲି । ଆମ ହିନ୍ଦୁ ମାନେ ରାତି ପାହିଲେ ଗୋବରରେ ଘର ଲିପନ୍ତି । କିନ୍ତୁ ସହରରେ ସେ କଥା ହେବ ନାହିଁ । ତା'ଛଡ଼ା ଅଣହିନ୍ଦୁ ମାନେ ସେ କଥା କେମିତି କରିବେ ?

ତା'ପାଇଁ ମଧ୍ୟ ଆମେ ପଦକ୍ଷେପ ନେଇଚୁଁ । ଆମେ ଗ୍ୟାସ୍, କିରୋସିନି ଏବଂ ବିଜୁଳିର ଦାମ ଆଉ କାହିଁକି ବଢ଼ାଉଚୁ ? ଲୋକେ ଯେତେବେଳେ କୌଣସି ପ୍ରକାର ଜାଳେଣୀ ନପାଇବେ ସେତେବେଳେ ଘସି ଓ ଗୋବର ଗ୍ୟାସ ଆଡ଼କୁ ମୁହାଁଇବେ । ଆପଣ ଜାଣନ୍ତି ଘସିରେ ରାନ୍ଧିଲେ ଖାଦ୍ୟର ଭିଟାମିନ୍ ଗୁଣ ସୁରକ୍ଷିତ ହୁଏ । ମନରେ ପବିତ୍ରତା ଆସେ ଏବଂ ଏସବୁ ଦ୍ୱାରା ପଲ୍ୟୁସନ୍ ମଧ୍ୟ କମ୍ ହୁଏ ।

ସହରରେ ସମସ୍ତେ କଅଣ ଗାଈ ରଖି ପାରିବେ ? କେଉଁଠି ରଖିବେ ? ସରକାରୀ କ୍ୱାଟର୍ସରେ ଗାଈ କେମିତି ରହିବ ?

ଆମେ ଏବେ ସରକାରୀ ଘରେ ଗାଈ ରଖିବାର ଯେଉଁ ପ୍ରତିବନ୍ଧକ ଥିଲା ତାକୁ ଉଠେଇ ଦେବୁଁ । ବରଂ ଯେଉଁମାନେ ଗାଈ ରଖିବେ ସେମାନଙ୍କୁ ଅଧିକ ସୁବିଧା ଦେବୁଁ । ଆପଣ ତ ଜାଣିଥିବେ ଲାଲୁ ଯାଦବ ଯେତେବେଳେ ମୁଖ୍ୟମନ୍ତ୍ରୀ

ଥିଲେ ସେ ସେତେବେଳେ ତାଙ୍କ ବାସ ଭବନକୁ ଲାଗି ଗୋଟିଏ ଶୀତତାପ ନିୟନ୍ତ୍ରିତ ଗୁହାଳ ତିଆରି କରେଇଥିଲେ । କାରଣ ତାଙ୍କର କେତୋଟି ଅତି ମୂଲ୍ୟବାନ ହଲାଣ୍ଡ ଓ ଅଷ୍ଟ୍ରେଲିଆନ୍ ଗାଇ ଥିଲେ । ଗାଇ ମାନଙ୍କର ସେବା ନିଜେ କରୁଥିଲେ । ଏବେ ମଧ କରୁଛନ୍ତି । ପରେ ସେ ସୁବିଧା ସବୁ ବିଧାୟକଙ୍କୁ ମଧ ଦିଆ ଯାଇଥିଲା । ୟୁପିରେ କଲ୍ୟାଣ ସିଂହଙ୍କ ସମୟରେ ସବୁ ବିଧାୟକ ଓ ମନ୍ତ୍ରୀଙ୍କ ଗୁହାଳ ସରକାରୀ ଖର୍ଚ୍ଚରେ ତିଆରି ହୋଇଥିଲା । ସେ କହିଲେ ସରକାର ଯଦି ଗାଡ଼ିଟିଏ ରହିବାପାଇଁ ଗେରେଜ୍ ତିଆରି କରୁଚନ୍ତି ତେବେ ଗାଈ ଯାହା ଜାତି ଓ ଧର୍ମର ପ୍ରତୀକ ତା'ପାଇଁ କାହିଁକି ତିଆରି ନ କରିବେ ? ତା'ଛଡ଼ା ଗାଈ ଓ ଗାଡ଼ିର ଦାମ କଅଣ ସମାନ ନୁହେଁ କି ?

ଆମ ଲୋକମାନେ ଗାଈ ରଖିଲେ ସେମାନଙ୍କୁ ଆପଣ କି କି ସୁବିଧା ଦେବେ ?

ସେମାନଙ୍କର ରେସନ୍ କାର୍ଡରେ ଚିନି ଦେବୁଁ । ନଚେତ କୋଟା ବଢ଼େଇ ଦେବୁଁ ।

ଯେଉଁମାନଙ୍କ ରେସନ୍ କାର୍ଡ ନାହିଁ, ଅର୍ଥାତ ବଡ଼ ବଡ଼ ଅଫିସରମାନଙ୍କର ?

ଭୁଲ୍ କଥା । ଆମେ ସର୍ଭେ କରି ଜାଣିପାରିଛୁ ଆମ ଅଫିସରମାନଙ୍କ ପାଖରେ ବରଂ ବେଶୀ (ବେଳେବେଳେ ଏକାଧିକ ମଧ) ରାସନ୍ କାର୍ଡ ଅଛି । ଗରିବମାନଙ୍କ ପାଖରେ ନାହିଁ । ଆମ ପୂର୍ବ ସରକାରଙ୍କ ଭୁଲ୍ ବିଚାର ଯୋଗୁଁ ଏପରି ହୋଇଚି । ଆମେ ତା'ର ଏବେ ସଂଶୋଧନ କରୁଚୁଁ ।

କିନ୍ତୁ ସହରରେ ସବୁଠି ଗାଈ ରହିଲେ ସମଗ୍ର ବାତାବରଣ ଦୂଷିତ ହେବ ଏବଂ ମେଲେରିଆ ମଧ ବଢ଼ିବ ।

ତା'ର ନିରାକରଣ କଥା ମଧ ଆମେ ଚିନ୍ତା କରିଚୁଁ । ଆପଣ ମଥୁରା, ବୃନ୍ଦାବନ କି ଋଷିକେଶ ଦେଖିଛନ୍ତି ? ସେଠି ବଡ଼ ବଡ଼ ତୁଳସୀ ବଗିଚା ସବୁ ଅଛି । ଏକର ଏକର ଜମି ଚାଷ ହେଉଚି । ଗବେଷଣା ମଧ ହେଉଚି । ତୁଳସୀ ଗୋଟିଏ ଅତି ସାଂଘାତିକ ମେଲେରିଆ ପ୍ରତିଷେଧକ । ମୁଁ କହୁନି । ବୈଜ୍ଞାନିକମାନେ କହୁଚନ୍ତି । ଆମ ଶାସ୍ତ୍ରରେ ମଧ ଅଛି । ତେଣୁ ଆମେ ଲୋକମାନଙ୍କୁ କହିବୁଁ ଗୁହାଳ ଚାରିପଟେ ତୁଳସୀ ଲଗେଇବେ । ଜାଗା ନଥିଲେ କୁଣ୍ଡରେ ମଧ ସେ ଗଛ ଲାଗିପାରିବ । ଏଠି ମଧ ଆମେ ଧର୍ମ କଥାଟାକୁ ବାଦ୍ ଦେଉଚୁଁ ।

ମନ୍ତ୍ରୀ ଟିକିଏ ରହିଗଲେ ଏବଂ କହିଲେ ଆମେ ଏବେ ଗୋବର ରପ୍ତାନୀ କଥା ଚିନ୍ତା କଲୁଣି ।

କେମିତି ?

ବିଦେଶରେ ଏବେ ଆମ ଶାସ୍ତ୍ର ପୁରାଣର ଚାହିଦା ବଢ଼ିଚି । ଆମ ଧର୍ମର ଆଦର ମଧ ବଢ଼ିଚି ।

କେମିତି ଜାଣିଲେ ?

ରାମାୟଣ ଓ ମହାଭାରତ ସିରିଏଲ୍‌ରୁ । ଏ ଦୁଇଟି ସିରିଏଲ୍ ଏବେ ଅନ୍ୟାନ୍ୟ ରାଷ୍ଟ୍ର କଥା ଛାଡ଼, ଚୀନ ଓ ଋଷିଆରେ ମଧ ଆଦର ଲାଭ କରିଚି । ଆମ ଧର୍ମ କଥା ତ ଜାଣନ୍ତି । ଆମେରିକାରେ ଏତେ ମନ୍ଦିର ତୋଳା ଗଲାଣି ଯେ ତାର ସୀମା ନାହିଁ । ସେମାନେ ଏବେ ଗୋବର କଥା ଜାଣିଲା ପରେ ତାକୁ ଗୋଟିଏ ଅଲଟାରନେଟିଭ ଫୁଏଲ୍ ହିସାବରେ ଗ୍ରହଣ କରିବାକୁ ଚିନ୍ତା କଲେଣି । ବିଶେଷ କରି ଯେଉଁ ଦେଶରେ ତେଲର ଘୋର ଅଭାବ, କାଠ ଓ ବିଜୁଳିଶକ୍ତିର ମଧ ଅଭାବ ରହିଚି ସେମାନଙ୍କ ପକ୍ଷେ ଆଉ ଉପାୟ କ'ଣ ଅଛି ? ଆମେରିକା ଯେମିତି ଭୂତଳବାଷ୍ପକୁ ମାଟି ତଳେ ଷ୍ଟୋର କରି ରଖିବା କଥା ଚିନ୍ତା କରୁଛନ୍ତି । ଏଥିପାଇଁ ସେମାନଙ୍କ ଗବେଷଣା ଆରମ୍ଭ ହୋଇ ଗଲାଣି । ଏବେ ଆମେ କେମିତି ତାଙ୍କ ଦେଶକୁ କଞ୍ଚା ଗୋବର ପ୍ରଚୁର ପରିମାଣରେ ପଠେଇ ପାରିବୁଁ ସେକଥା ଚିନ୍ତା କରାଯାଉଛି । ଏକ ବିଶେଷ ଧରଣର ଜାହାଜ ଓ ଉଡ଼ାଜାହାଜ ତିଆରି କଥା ଆମ ଇଂଜିନିୟରମାନେ ପରୀକ୍ଷା କରି ଦେଖୁଛନ୍ତି । ଅସଲକଥା ହେଉଚି ସେମାନେ ପ୍ରଚୁର ପରିମାଣରେ ଗାଈ ରଖି ତା'ପାଇଁ ହଜାର ହଜାର ଏକର ଚାରଣଭୂଇଁ ସୃଷ୍ଟି ନ କରି ବରଂ ନିୟମିତ ଏଠୁ ଗୋବର ନେଇଯିବାକୁ ପସନ୍ଦ କରିବେ ।

ସାମାଦିକ ଚୁପ୍ ।

ଆଉ କିଛି ପଚାରିବେ ? ଦେଖନ୍ତୁ, ଆମ ଦେଶରେ ସବୁ ଅଛି । ମାଟିତଳେ ଯେତିକି ଅମୂଲ୍ୟ ପଥର ଗଚ୍ଛିତ ଅଛି ମାଟି ଉପରେ ତା'ଠାରୁ ଅନେକ ବେଶୀ ଅଛି । ଏବେ ଦେଖନ୍ତୁ ସାମାନ୍ୟ ଗୋବର କେମିତି ଆମ ଅର୍ଥନୀତି ଓ ସମାଜନୀତିରେ ଗୋଟାଏ ବୈପ୍ଳବିକ ପରିବର୍ତ୍ତନ ଆଣି ପାରୁଚି । ଆମ ଆଗରୁ ଏଇ କଥାଟାକୁ କେହି ଥରେ ଚିନ୍ତା ମଧ କରି ନଥିଲେ । ଆପଣ ଦେଖିବେ ଆଉ ପାଞ୍ଚ ବର୍ଷ ଭିତରେ ଆମେ ଆମର ସମସ୍ତ ବୈଦେଶିକ ଋଣ ପରିଶୋଧ କରି ସମ୍ପୂର୍ଣ୍ଣ ନିଜ ଗୋଡ଼ରେ ନିଜେ ଠିଆ ହୋଇପାରିଥିବା ।

ସେ ଟିକିଏ ରହି ଦମ୍ ନେଲେ ଏବଂ ପୁଣି କହିଲେ, ଆମ ମୁନି ଋଷିମାନେ ଯେଉଁ ପଥ ଦେଖେଇ ଯାଇଚନ୍ତି ତାକୁ ଯୁଗେ ଯୁଗେ ଅବହେଳା କରିହେବ କି ?

ମୁନିଋଷି ? ସେମାନଙ୍କର ବି ଏଥିରେ କିଛି ଭୂମିକା ଅଛି ? ସାମ୍ବାଦିକ ଜଣକ ପୁଣି ଥରେ ପଚାରିଲେ ।

ଆପଣ ଆଉ ବୁଝୁଚନ୍ତି କଅଣ ? ଆମ ତ ତାଙ୍କରି ପଥ ଅନୁସରଣ କରୁଚୁଁ । ସେ ଟିକିଏ ସଜାଡ଼ି ହୋଇ ବସିଲେ ଏବଂ ତାଙ୍କ ମୁହଁରେ ଗୋଟିଏ ଆଭା ଉକୁଟି ଉଠିଲା ।

ସେ ପୁଣି ଆରମ୍ଭ କଲେ । ଗତ କୁମ୍ଭମେଳାରେ ଖଇନି ଭଳିଆ ଛୋଟ ପଲିଥିନ ପ୍ୟାକେଟ୍‌ରେ ଥିବା ଟିକିଏ ଗୋବର ଏବଂ ଆଉ ଗୋଟିଏ ପ୍ୟାକେଟ୍‌ରେ ଟିକିଏ ଗଂଗାମାଟି - କେତେ ଟଙ୍କାରେ ବିକ୍ରି ହୋଇଥିଲା ଜାଣନ୍ତି ? ପଚାଶ ଟଙ୍କା । ମାସକ ଭିତରେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କଲେ ସେମାନେ ।

କିଛି ଭେଜାଲ୍ ବି ତ ବିକ୍ରି ହେଉଥିବ ?

ହେଉ ସେଥିରେ କଅଣ ଅଛି ? ଈଶ୍ୱରୋପାସନା ଓ ଭକ୍ତି ପାଖରେ ସବୁ ଭେଜାଲ ଖାଣ୍ଟି ହୋଇଯାଏ । ଖମ୍ବଟା ସେଦିନ କେମିତି ଭଗବାନ ପାଲଟି ଗଲା ? ଆପଣ ତ ଜାଣନ୍ତି ଏ କଥା । "ମନର ମୂଳେ ଭଗବାନ"

***

# ସମ୍ପାଦକଙ୍କୁ ପତ୍ର

ମାନନୀୟ ସମ୍ପାଦକ ମହୋଦୟ,

ଗତ ନଭେମ୍ବର ୯ ତାରିଖ ଦୈନିକ ସମ୍ବାଦରେ ପ୍ରକାଶିତ ଚନ୍ଦନେଶ୍ୱର "ଶିବ ଲିଙ୍ଗ ଉପରେ ଦୁଇଟି ହୁଇସ୍କି ମଦ" ଶୀର୍ଷକ ସମ୍ବାଦ ମୋ ନଜରକୁ ଆସିଛି ।

ଏହା ସମ୍ପୂର୍ଣ୍ଣ କପୋଳ କଳ୍ପିତ ତଥା ଅସତ୍ୟ ଉପରେ ଆଧାରିତ । ଏପରି ଏକ ଗୁରୁତ୍ୱପୂର୍ଣ୍ଣ ସମ୍ପାଦ ପରିବେଷଣ ପୂର୍ବରୁ ଆପଣଙ୍କ ସମ୍ବାଦଦାତା ମୋ ସେକ୍ରେଟାରୀଏଟ୍‌ରୁ ପ୍ରକୃତ କଥା ବୁଝିବା ଉଚିତ୍ ଥିଲା । ମୁଁ ଏହାର ଦୃଢ଼ ପ୍ରତିବାଦ କରୁଛି । ଆପଣଙ୍କୁ ଜ୍ଞାତ ଥିବ ଯେ ଆମେ ଦେବଗଣ । ଆମେ ସବୁବେଳେ ଅସତ୍ୟକୁ ଘୃଣା କରୁ ।

ତେବେ ପ୍ରକୃତ କଥାଟା ଆପଣଙ୍କ ଜନଗଣଙ୍କୁ ଜଣେଇ ଦେବା ଉଦ୍ଦେଶ୍ୟରେ ଆମ୍ଭେ ଏହି ବକ୍ତବ୍ୟ ପେଶ କରୁଛୁ ।

ଏହା ସମସ୍ତଙ୍କୁ ଜଣା ଯେ ସୃଷ୍ଟିର ଆବହମାନ କାଳରୁ ଶିବଲୋକରେ ଗଞ୍ଜେଇ ଓ ଭାଙ୍ଗର ପ୍ରଚଳନ ଶାସ୍ତ୍ର ସମ୍ମତ । ତେଣୁ ଆମ ରାଜ୍ୟରେ କେହି ହୁଇସ୍କିକୁ ଚିହ୍ନି ନଥିଲେ । କିନ୍ତୁ ଅତ୍ୟନ୍ତ ଦୁଃଖର କଥା ଆପଣମାନଙ୍କ ଏହି ନରଲୋକରେ ଏପରି ଶାସନ ଆରମ୍ଭ ହୋଇଛି ଯେ, ଆଉ ଟିକେ ବୋଲି ଗଞ୍ଜା ବା ଭାଙ୍ଗ ମିଳୁନି । ସେ ସବୁ କୁଆଡ଼େ ବାହାରକୁ ଚାଲାଣ ହୋଇଯାଉଛି । ତାକୁ କେହି ରୋକି ପାରୁ ନାହାନ୍ତି ବା ଠିକ୍ କଥା କହିଲେ ଜାଣି ଶୁଣି ରୋକୁ ନାହାନ୍ତି । ବରଂ ତାକୁ ଏକ ବହିର୍ବାଣିଜ୍ୟ ମନେ କରି ସାହାଯ୍ୟ କରୁଛନ୍ତି । ଫଳରେ ଆମ ଦେବଲୋକରେ ଏସବୁ ଭାଙ୍ଗ ଓ ଗଞ୍ଜେଇର ଘୋର ଅଭାବ ଦେଖା ଦେଇଛି ।

କିନ୍ତୁ ଏହା ଦ୍ୱାରା ଆମର ଯୁଗଯୁଗର ଅଭ୍ୟାସ ବଦଳି ଯିବ କି ? ଏଥିରେ ଆମର ଷୋଡ଼ଶୋପଚାର ବିଧିରେ ପରିବର୍ତ୍ତନ ହେବ କି ? ଆପଣ ଜାଣନ୍ତି ଦେବଲୋକରେ ସୋମରସ ପ୍ରଚଳନ ବିଧି ରହିଛି । ତେଣୁ କେତେକ ସମୟରେ ଆମେ ଗଞ୍ଜା ଓ ଭାଙ୍ଗର ସବ୍‌ଷ୍ଟିଚ୍ୟୁଟ ହିସାବରେ ସୋମରସ ମଧ ବ୍ୟବହାର କରୁ । ଆମେ ଯୋଉଟାକୁ ସୋମରସ କହୁ ଆପଣମାନେ ବୋଧେ

ସେଇଟାକୁ ହୁଇସ୍କି ବୋଲି କହନ୍ତି । କିନ୍ତୁ କି ଦୁର୍ଭାଗ୍ୟ ଆପଣଙ୍କ ରାଜ୍ୟରେ ଏବେ ହୁଇସ୍କି ଟିକିଏ ମଧ ସପ୍ନ ହୋଇ ପଡ଼ିଲାଣି । ମୁଁ ଶୁଣିଥିଲି ଏହି ଅଶୁଦ୍ଧ ସୋମରସ ପିଇ କୁଆଡ଼େ ନିକଟରେ ଶହ ଶହ ଲୋକ ମରିଗଲେ । ଏଇ ସାମାନ୍ୟ ଶୁଦ୍ଧ ପାନୀୟ ଟିକିଏ ପାଇଁ ଯୋଉ ଲୋକମାନେ ପୋକ ମାଛି ପରି ମଲେ ସେମାନଙ୍କ ପରିବାରବର୍ଗଙ୍କ ତତଲା ନିଃଶ୍ୱାସରେ ଆପଣଙ୍କ ମନ୍ତ୍ରୀମାନେ ଧ୍ୱଂସ ହେବେ ନାହିଁ କି ? ଏବେ ଶୁଣୁଚି ଏ ବିଷୟରେ କୁଆଡ଼େ ଗୋଟିଏ ବିଚାର ବିଭାଗୀୟ ତଦନ୍ତ ହେବ । କିନ୍ତୁ କଅଣ ପାଇଁ ? ସତ୍ୟର ଉଦ୍‌ଘାଟନ ପାଇଁତ ? କିନ୍ତୁ କି ଆଶ୍ଚର୍ଯ୍ୟ । ଆରେ ସତ୍ୟ ଥିଲେ ସିନା ଉଦ୍‌ଘାଟିତ ହେବ । ସବୁ ସତ୍ୟ ତ ଫାଇଲ ଓ ଡାଏରୀ ଭିତରେ ଚାପି ହୋଇ ଅଣନିଃଶ୍ୱାସୀ ହୋଇ କେବେଠୁ ମରି ଗଲେଣି । ଏବେ ଆଉ ମିଳିବ କେଉଠୁ ? ଚକ୍ଷୁ କୁଟିବା ସାର ହେବ ।

ତେବେ ମୋତେ ସେଥିରୁ କଅଣ ମିଳିବ ? ଆପଣ ଜାଣନ୍ତି ଆମ ଦେବଲୋକରେ ଅନେକ ପାର୍ଟି ବା ଦଳ ଅଛି । ଅର୍ଥାତ୍ କୃଷ୍ଣଙ୍କ ଦଳ, ଶିବଙ୍କ ଅର୍ଥାତ ମୋ ଦଳ, ବ୍ରହ୍ମାଙ୍କ ଦଳ ଏମିତି ଅନେକ ଦଳ ବା ପାର୍ଟି ଅଛି । କିନ୍ତୁ ମୋ ପାଖରେ ନରଲୋକର ସବୁ ଦଳ ସମାନ । ସେମାନେ ସମସ୍ତେ ମୋର ଭକ୍ତ । ମୁଁ ସବୁ ଭକ୍ତଙ୍କୁ ସମାନ ଆଖିରେ ଦେଖେଁ ।

ନରଲୋକରେ ହେଉ ବା ଦେବଲୋକରେ ହେଉ ସୁରାପାନ ଏକ ଆବଶ୍ୟକୀୟ ବିଧି ବ୍ୟବସ୍ଥା । ଯୁଗେ ଯୁଗେ ଏହାର ଅଣ ସାମ୍ବିଧାନିକ ସ୍ୱୀକୃତି ରହିଚି । ଯେପରି ଏଇ ଧରନ୍ତୁ ନରଲୋକରେ ସୁରା, ସାକୀ ଏବଂ ରାଜନୀତି ଏପରି ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇ ପଡ଼ିଛନ୍ତି ଯେ ଗୋଟିକର ବ୍ୟତିରେକ ଅନ୍ୟଟି ଅକାମୀ ହୋଇ ପଡୁଛି । ସ୍ୱାସ୍ଥ୍ୟ ଓ ମାନସିକ କ୍ରିୟା ପ୍ରକ୍ରିୟାକୁ ଠିକ୍ ଭାବେ ପରିଚାଳିତ କରେଇବାକୁ ହେଲେ ସୋମରସର ଆବଶ୍ୟକତାକୁ ଦୂରେଇ ହେବନି । ତାହା ଶରୀରରେ ମୃତ ସଞ୍ଜିବନୀ ପରି କାମ କରେ ବୋଲି ତମ ସମାଜରେ ଏବେ ଏହା ସର୍ବବାଦୀ ମତ । ତା ପରେ ସୁରା ସେବନ ନ କରି କିଏ କଅଣ ମୋରାରଜୀଙ୍କ ଅଲଟାର୍‌ନେଟିଭ୍ 'ଇଉରିନଥେରାପି' ସଜେସନ୍‌କୁ ଗ୍ରହଣ କରନ୍ତା ? ବିଜ୍ଞାନ ଯୁଗରେ ସୋଫିଷ୍ଟିକେଟେଡ୍ ହେବା ବଦଳରେ କ୍ରୁଡ୍ ମେଥଡ୍ ବ୍ୟବହାର କରିବା ଉଚିତ୍ ହେବ କି ?

ଆମ ଦେବଲୋକରେ ସୁରାର ଏକ ଶୃଙ୍ଖଳିତ ସେବନ ବିଧି ରହିଛି । କିନ୍ତୁ ନରଲୋକରେ ? ଛି ଛି ବାପ ମାଆ ପୁଣି ଝିଅ ସମସ୍ତେ ଏକସଂଗେ ପିଇ ମାତାଲ ହେଉଛନ୍ତି । ଏବଂ ତା ପରେ କିଏ ମାଆ କିଏ ଭଉଣୀ ଚିହ୍ନି ପାରୁ ନାହାନ୍ତି ।

(ଲଘୁକଥା - ସମ୍ବାଦ)

***

# ସେ ଜଳେ ନାହିଁ - ଜଳାଏ

ବିଶିଷ୍ଟ ମହାକାଶ ବିଜ୍ଞାନୀ ଡକ୍ଟର ରାମନାଥନ ଯେତେବେଳେ ଦେଖିଲେ ତାଙ୍କର କ୍ଷେପଣାସ୍ତ୍ରବାହୀ ରକେଟ୍‌ଟି ଦ୍ୱିତୀୟଥର ମଧ୍ୟ ଭୂମି ଉପରକୁ ଉଠିଲା ନାହିଁ, ସେତେବେଳେ ସେ ଅଫିସ୍‌ରୁ ସିଧା ଘରକୁ ଚାଲିଆସିଲେ ଏବଂ ନିଜ ଗବେଷଣାଗାରରେ ଚୁପ୍‌ଚାପ୍ ବସିଗଲେ । ପ୍ରଥମ ବିଫଳତା ତାଙ୍କୁ ଯେତିକି ବାଧିଥିଲା ଦ୍ୱିତୀୟ ବିଫଳତା ତାଙ୍କୁ ଆହୁରି ଅଧିକ ବାଧିଲା । ସେ ଯେଉଁ ଇନ୍ଧନର ନୂତନ ଫର୍ମୁଲା ବାହାର କରିଛନ୍ତି, ସେଥିରେ କୋଉଠି ଭୁଲ ରହିଲା ତାହା ବୁଝିପାରୁ ନଥିଲେ । ଇନ୍ଧନଟି ଶସ୍ତା ଓ ଯଥେଷ୍ଟ ପ୍ରଭାବଶାଳୀ । ଏଥିରେ ରକେଟ୍‌ଟି ସଫଳତାର ସହିତ ଚାଲି ଯାଇଥିଲେ ତାଙ୍କୁ ହୁଏତ ଭାରତରତ୍ନ ଭଳି କିଛି ଗୋଟିଏ ଉପାଧି ମିଳିଯାଇ ଥାଆନ୍ତା ।

ସ୍ତ୍ରୀ ରତ୍ନା ଭିତରକୁ ପଶିଆସି ଯେତେବେଳେ ଦେଖିଲେ ଅନେକ ଆଗରୁ ଦିଆଯାଇଥିବା ଚା'କପଟି ସେମିତି ବସି ରହିଚି, ସେ କହିଲେ ଭାବି ଭାବି ଦେହ ଖରାପ କରିବାରେ କିଛି ମାନେ ହୁଏ ? ଯାଅ ଉଠ, ଆଗେ ଖାଇବ ଆସ, ତା'ପରେ ଦେଖାଯିବ ।

ବୈଜ୍ଞାନିକ ମହୋଦୟ ଆତ୍ମସ୍ଥ ହେଲେ ବରଂ କହିଲେ ଆମ ଗବେଷଣାରେ ଯେ କୋଉଠି ଭୁଲ ରହିଲା ଆମେ ବୁଝିପାରୁନୁ ।

ରହସ୍ୟ କରିବାକୁ ଯାଇ ରତ୍ନା କହିଲେ ମୁଁ ତ କେତେଥର କହିଲିଣି ତୁମ ପ୍ରାଇଭେଟ୍ ସେକ୍ରେଟାରୀ ରତ୍ନପ୍ରଭାଙ୍କୁ ବିଦାୟ ଦେଇ ସେ ଜାଗାରେ ମୋତେ ରଖ - ଦେଖ, ଗବେଷଣା କେତେ ସୁରୁଖୁରରେ ଚାଲିବ । ତୁମେ କଅଣ ମୋ କଥା ମାନିଲ ? ନୂଆ ଫର୍ମୁଲା ମୁଁ ତୁମକୁ ଦେଇ ପାରନ୍ତି ।

ସ୍ୱାମୀ ହସିଲେ । କହିଲେ କଥାଟି ଯଦି ଏଇଠି, ତେବେ ଏଇ ମୁହୂର୍ତ୍ତରେ ମୁଁ ରତ୍ନପ୍ରଭାଙ୍କୁ ଚାକିରିରୁ ଅନ୍ତର କରି ତାଙ୍କ ଜାଗାରେ ରତ୍ନାଙ୍କୁ ନିଯୁକ୍ତି ଦେଲି । ଏଥର ତୁମେ ମୋତେ ତୁମ ନୂଆ ଫର୍ମୁଲାଟି ଦିଅ ।

ରତ୍ନା କହିଲେ ମୁଁ ତୁମ ଚାଲେଞ୍ଜ ଗ୍ରହଣ କରୁଚି । କିନ୍ତୁ ଗୋଟିଏ ସର୍ତ୍ତରେ । ମୁଁ ରକେଟ୍‌ଟି ଉଡ଼େଇ ଦେଲା ପରେ ତୁମେ କିନ୍ତୁ ପ୍ରଧାନମନ୍ତ୍ରୀଙ୍କ ଠାରୁ ପ୍ରଶଂସା ପାଇବ ନାହିଁ । ସେତେବେଳେ ତୁମେ ମନ କଷ୍ଟ କରିବ ନାହିଁ ତ ?

ମୋଟେ ନୁହେଁ । ସେ ପ୍ରାପ୍ୟ ତୁମର ।

ଠିକ୍ ଅଛି । ତୁମେ ଖାଇସାରି ଅଫିସ୍ ଗଲାବେଳକୁ ମୁଁ ନୂଆ ଫର୍ମୁଲାର ଇନ୍ଧନଟି ତିଆରି କରି ଦେଇଥିବି । ତୁମେ ଖାଲି ନେବ ଏବଂ ରକେଟ୍ ତଳେ ଥୋଇଦେବ । ଦେଖିବ କାଉଣ୍ଟଡାଉନ୍ ମଧ ଦରକାର ନାହିଁ । ବରଂ ଏକ, ଦୁଇ, ତିନି କହିଲା ବେଳକୁ ଉଡ଼ିଯାଇଥିବ ।

ରାମନାଥନ୍ ପୁଣି ଥରେ ହସି ହସି କହିଲେ ତୁମ ଇନ୍ଧନଟି କଅଣ ରୋଷେଇ ଘରେ ତିଆରି ହେବ କି ?

ରୋଷେଇ ଘରଟା ଯେ ପୃଥିବୀର ସବୁଠାରୁ ବଡ଼ ଗବେଷଣାଗାର, ସେ କଥା ତମ ଭଳିଆ ପୁରୁଷ ବୈଜ୍ଞାନିକମାନେ କୁଆଡୁ ବୁଝିବେ ? ଆସ ମୁଁ ଖାଇବାକୁ ବାଢୁଛି ।

ରାମନାଥନ ଖାଇସାରି ଅଫିସ୍ ବାହାରିଲା ବେଳକୁ ରତ୍ନା ପାଖକୁ ଆସିଲେ ଏବଂ ଗୋଟିଏ ଛୋଟ କାଗଜ ପୁଡ଼ିଆ ସ୍ୱାମୀଙ୍କ ହାତକୁ ବଢ଼ାଇ ଦେଇ କହିଲେ ନିଅ ଏଇଟା । ସିଧା ରକେଟ୍ ପାଖକୁ ଯାଇ ତା'ତଳେ ଥୋଇଦେବ । ଏବଂ ତା'ପରେ ଦେଖ ରକେଟ୍ ଆକାଶକୁ ଯାଉଚି କି ନାହିଁ ।

ଏଯାଏ ରାମନାଥନ୍ ସବୁ କଥାକୁ ଥଟ୍ଟା ବୋଲି ଭାବି ଆସିଥିଲେ । ପୁଡ଼ିଆଟି ହାତରେ ଧରି ସେ ପଚାରିଲେ - ତୁମ ଫର୍ମୁଲାଟି ମୁଁ ଜାଣିପାରେ କି ?

ଫର୍ମୁଲା ନୁହେଁ ଗୋଟିଏ ମନ୍ତ୍ର ବୋଲି ମନେ କରିପାର । ତେବେ ଏବେ ନୁହେଁ ରକେଟ୍ ଚାଲିଗଲା ପରେ ତୁମେ ତାକୁ ଖୋଲି ଦେଖିପାର । ମନେରଖ- ଏହା ଏପରି ଏକ ଇନ୍ଧନ୍ ଯାହା ନିଜେ ଜଳେ ନାହିଁ - ବରଂ ତା'ର ଉତ୍ତାପରେ ଅନ୍ୟ ବସ୍ତୁଟି ଜଳିଯାଏ । ସେ ଟିକିଏ ରହିଗଲେ ଏବଂ କହିଲେ ତୁମେ ମୋର କୌଣସି କଥା ରଖନାହିଁ । ଏଇ ଗୋଟିଏ କଥା ରଖ । ଏବଂ ଦେଖ ବୈଜ୍ଞାନିକର ସ୍ତ୍ରୀଟି ମଧ ଜଣେ ବୈଜ୍ଞାନିକ କି ନୁହେଁ । ମୁଁ ବି ତ ଫିଜିକ୍ସରେ ଦିନେ ଟପ୍‌ପର ଥିଲି ।

ରାମନାଥନ୍ ଅନ୍ୟ ଉପାୟ ନ ଦେଖି ପୁଡ଼ିଆଟି ହାତରେ ଧରି ସିଧା ରକେଟ୍ ପାଖକୁ ଗଲେ ଏବଂ ତା' ତଳେ ଥୋଇ ଦେଲେ । କି ଆଶ୍ଚର୍ଯ୍ୟ! ଗୋଟିଏ ସେକେଣ୍ଡ ମଧ୍ୟରେ ବିଶାଳକାୟ ରକେଟ୍ ସୁ କରି ଆକାଶକୁ ଉଠିଗଲା । ସେ ସ୍ତମ୍ଭୀଭୂତ ହୋଇଗଲେ । ଭାବିଲେ, ସତରେ କଅଣ ମନ୍ତ୍ର ବୋଲି କିଛି ଗୋଟାଏ ଅଛି ?

ସେ ଦେଖିଲେ ପୁଡ଼ିଆଟି ସତକୁ ସତ ସେମିତି ଅଛି । ତାଙ୍କର କୌତୁହଳ ବଢ଼ିଲା । ସେ ତାକୁ ଉଠାଇ ଦେଖିଲେ ଖୁବ୍ ଗରମ୍ ଅଛି । ତା' ସତ୍ତ୍ୱେ ଧୀରେ ଧୀରେ ସେ ଯେତେବେଳେ ତାକୁ ଖୋଲିଲେ, ଦେଖିଲେ ସେଥିରେ କେବଳ 'ବଜାର ଦର' ଲେଖା ଅଛି । ଡାଲି, ଚାଉଳ, ତେଲ, ଲୁଣଠାରୁ ଆରମ୍ଭ କରି ବେବିଫୁଡ୍ ଓ ଔଷଧ ପର୍ଯ୍ୟନ୍ତ ।

(ପ୍ରଜାତନ୍ତ୍ର - ୨୩.୧୨.୨୦୦୧)

***

# କେତେ ଯେ ଯନ୍ତ୍ରଣା

ପରଲୋକଗତ ନେତାମାନଙ୍କୁ ତୁମେ କାହାକୁ ବେଶି ଭଲପାଅ । ପଚାରିଲେ ମୁଁ ଟିକେ ଥା ଥା ମା ମା ହୁଏ । ହଠାତ୍ କହିପାରେନା କିନ୍ତୁ ଇହ ଲୋକରେ ଥିବା କେଉଁ ନେତାଙ୍କୁ ତୁମେ ବେଶି ସମ୍ମାନ ଦିଅ ବୋଲି ପଚାରିଲେ ମୋ ପାଟିରୁ ସଂଗେ ସଂଗେ ବାହାରି ପଡ଼େ 'ଲାଲୁ' । ସତରେ ମୁଁ ତାଙ୍କୁ ବହୁତ ଭଲପାଏ । କାହିଁକି ଭଲପାଏ ବୋଲି ପଚାରିଲେ ମଧ୍ୟ ମୁଁ କିଛି କହି ପାରେନା । ଭଲ ପାଇବାଟା ମଣିଷର ଏମିତି ଗୋଟାଏ ଗୁଣ ଯାହାର କାରଣ କିଛି ନଥାଏ । ଥିଲେ ମଧ୍ୟ କିଛି କହି ହୁଏନା । ଝିଅମାନେ ସେହି ସୁଯୋଗ ନିଅନ୍ତି । କାହିଁକି ତୁମେ ମୋତେ ଭଲପାଅ ବୋଲି ପଚାରିଦେଲେ ବିଚରା ପୁଅ ପିଲାଟିର ପାଟି ଖନି ମାରିଯାଏ । ତାର ସେହି ନ କହି ପାରିଲା ଗୁଣକୁ ଝିଅମାନେ ବେଶି ଭଲ ପାଆନ୍ତି । ତେବେ ସିଏ କହି ଦିଏ ସେ କ୍ଷେତ୍ରରେ ସେମାନଙ୍କ ସମ୍ପର୍କ ହୁଗୁଳା ହୋଇଥିବାର ପ୍ରମାଣ ମୋ ପାଖରେ ଢ଼େର ଅଛି ।

ତେବେ ସେ ଯାହା ହେଉ, ମୋର ଅନେକ କିଛି କହି ପାରୁନଥିବା କାରଣରୁ ମୁଁ ଲାଲୁକୁ ପ୍ରଚୁର ଭଲପାଏ । କିନ୍ତୁ ଯୋଉଦିନ ଶୁଣିଲି ତାକୁ ଆରେଷ୍ଟ କରାଯାଇଛି, ସେ ଦିନଯାକ ମୁଁ କିଛି ଖାଇନି । ମୁଁ ଅଫିସ୍ ମଧ୍ୟ ଗଲିନି । ମୁଁ ଘରୁ ବାହାରି ନାହିଁ । ଚୁପ୍ ଚାକ୍ ଗୁମ୍ମାରି ଘର ଭିତରେ ବସି ରହିଲି । ଟିଭି, ରେଡିଓ, ଖବର କାଗଜ ସବୁକୁ ପଛ କରି ଦେଲି ।

ଦିନ ଗଲା । ରାତି ଆସିଲା । ମୁଁ ଥରେ ଟିଭି ଆଡ଼କୁ ଅନେଇଲି ଏବଂ ଆଖି ଫେରାଇ ଆଣିଲି । । ଭାବିଲି ଆହୁରି କିଛି ଦୁଃସମ୍ବାଦ ଯଦି ଦିଏ । ଅନେକ ସମୟ ମୁଁ ଆଖି ବନ୍ଦ କରି ବସି ରହିଲି । କେତେବେଳେ ମୋ ଆଖିକୁ ନିଦ ଆସି ଯାଇଛି ଜାଣେନା ।

ହଠାତ୍ ଦେଖିଲି ମୋ ସାମନାରେ ଲାଲୁ ଖଟ ଉପରେ ବସିଛି । ଚୁପ୍‌ଚାପ୍ ବସିଛି । ପୁଣି ବିଛଣା ଉପରେ ଗଡ଼ପଡ଼ ହେଉଛି ।

ମୁଁ ପଚାରିଲି, କଅଣ ହେଲା ? ଆଖି ବୁଜି ଶୋଇ ଯାଉନ ?

ସେ କହିଲା ନିଦ ହଉନି ।

ତେବେ ସ୍ଲିପିଂ ଟାବ୍‌ଲେଟ୍ ଖାଅ ।

ତାକୁ ବି ଖାଇବିନି ।

କାହିଁକି ?

କାଳେ, ବେଲି ନିଦ ହେଇଯିବ । ବାହାରେ କଅଣ ହେଉଛି ମୁଁ ଜାଣି ପାରିବିନି । ମୋତେ କିଛି ଭଲ ଲାଗୁନି ।

ତେବେ ଯାଆ ଟିକିଏ ଗୋଲାପ ବଗିଚାରେ ବୁଲି ଆସ । ମୁଲାୟମ ଘାସରେ ଟିକିଏ ପଦ ଚାରଣ କର ।

ତୁମେ ମୋ ସାମ୍ନାରେ ଆଉ ମୁଲାୟମ ଶବ୍ଦ ଉଚ୍ଚାରଣ କରିବ ନାହିଁ । ସେ ମୋତେ ସତର୍କ କରେଇ ଦେଲେ ।

ତେବେ ତୁମେ ଯାଇ ସୁଇମିଂ ପୁଲରେ ଟିକିଏ....

ଦୈନିକ ଗଂଗାରେ ଗାଧୋଇବା ଲୋକ ସୁଇମିଂ ପୁଲକୁ ଯିବ ? ତୁମେ ତ ଜାଣ । ସକାଳେ ଗଂଗାରେ ଗାଧୋଇ ମୁଁ ହନୁମାନଙ୍କୁ ପୂଜା କରେ । ୩୬ କୋଟି ଦେବତାଙ୍କ ପାଦ ପାଣି ନେଲାପରେ ବାକି କଥା ।

ତେବେ ତୁମେ କିଛି ଖିଆପିଆ କରି ଶୋଇପଡ ।

ମୋତେ ମୋଟେ ଭୋକ ହଉନି ।

ଭୋକ ହଉନି ? କାହିଁକି ? ଡାକ୍ତର ତୁମଠି କିଛି ବେମାର ନାହିଁ ବୋଲି କହିଲେ ?

କିଛି ବେମାର ନାହିଁ ସତ । ତଥାପି ଭୋକ ହଉନି ।

"କାହିଁକି ? ତମେତ ସେମିତି କିଛି ଖାଇନ ? ମାତ୍ର ୯୫୦ କୋଟିର ଫୋଡର ଖାଇଚ । ସେଇଟା ସେମିତି କିଛି ନୁହେଁ । ତୁମ୍ ବୟସରେ ତାଠୁ ଅନେକ ବେଶି ଖାଇବା କଥା । ଉପଯୁକ୍ତ ପରିମାଣରେ ନ ଖାଇଲେ ଦେହ ଠିକ୍ ରହିବ କେବିତି ? ତା ଛଡ଼ା ତମେ ଯାହା ଖାଇଥିଲ ସେ ସବୁ କେବେଠୁ ହଜମ୍ ହେଇ ଯିବଣି । ତମେ ତେବେ ଗୋଟେ କାମ କର । ୨/୩ ଥର ଦଣ୍ଡ ବୈଠକ ମାରି ଦିଅ ।"

"ନା, ସେ ସବୁର ଏବେ ଆବଶ୍ୟକତା ନାହିଁ । ଆସେମ୍ଲି ବନ୍ଦ ଅଛି । ଟିକିଏ ରହି ସେ କହିଲେ କାହିଁକି କେଜାଣି ମୋତେ ମୋଟେ ଭଲ ଲାଗୁନି ।"

ତମ ପାଇଁ ଏଠି ସେମାନେ ସବୁ ରଖିଛନ୍ତି । ଆଉ କଅଣ ଅଭାବ ?

ସେଇ କଥାତ, ସେ ଅଭାବଟା କଅଣ ମୁଁ ବି ବୁଝି ପାରୁନି ।

ମୁଁ ଟିକିଏ ଚିନ୍ତା କଲି ଏବଂ କହିଲି, ବୁଝିଗଲି, ୨/୪ଟା ଗାଈ ମଇଁଷି ଆଣି ଏଠି ବାନ୍ଧି ଦେବାକୁ କହିବି କି ? ଡି.ଜି.ପି.ଙ୍କୁ କହିବି ? ମୁଁ ଫୋନ୍ ଉଠେଇଲି ।

ସେ କହିଲା, ନା ଆଉ ତାକୁ କଷ୍ଟ ଦିଅନା ।

ତେବେ ବଜାରରୁ କିଛି ଫାଇଲ୍ କଭର ଆଣି ଏଠି ଟେବୁଲ ଉପରେ ଥୋଇ ଦେବି ? ଟିକିଏ ଭଲ ଲାଗିବ ।

ତୁମେ ମୋ ସହିତ ଥଟ୍ଟା କରୁଛ ?

ଏତିକି ବେଳେ ଲାଲବତୀ ଲାଗିଥିବା ଗୋଟିଏ କାର୍‌ରେ ଜଣେ ଭଦ୍ର ମହିଳା ଆସିଲେ ଏବଂ ଲାଲୁ ସାମନାରେ ଗୋଟିଏ ବିରାଟ୍ ହଟ୍‌କେଶ୍ ଥୋଇ ଦେଲେ । କହିଲେ - ସାର୍ ଏତକ ଖାଇ ଦିଅନ୍ତୁ ।

ସେ କଭର ଖୋଲି ସେ ଗୁଡ଼ିକ ଥରେ ଦେଖିଲେ ଏବଂ କହିଲେ, ମୋଟେ ଖାଇବିନି । ଏ ଗୁଡ଼ିକ ବେଶି ଦେହ ଖରାପ କରିବ ।

ମୁଁ କହିଲି, ତେବେ କିଲେ ରାବେଡ଼ି ଆଣିବି ? ରାବେଡି ?

ନାଁ ଥାଉ । ସେ ବିଚାରୀ ବଡ଼ ହଇରାଣ ହେଉଥିବ । ସମସ୍ତେ ତାକୁ କଲବଲ କରି ପକାଉଥିବେ । ମୁଁ କହିଲି, ନଅଟା ପିଲା କଥା କହୁଚ ?

ନା, ନା, ମୁଁ ୯୫୦ କଥା କହୁଚି । ସେତ ମାତ୍ର ୫ ପର୍ଯ୍ୟନ୍ତ ଜାଣେ । ୯୫୦ ଯେ କେତେ ଦୂରରେ ଅଛି ସେ କେମିତି ବୁଝିବ ?

(ଈଶ୍ୱର, ଭୁବନେଶ୍ୱର ସଂଖ୍ୟା : ୨୬.୦୧.୧୯୯୯)

***

# ଶବ୍ଦ ପାଇଁ ଗପଟିଏ

ସେ ଦିନ ଅଫିସର ମୁଖ୍ୟ କିରାଣୀ ଫାଇଲ୍‌ଟାକୁ ଦେଖୁ ଦେଖୁ ଗୁମ୍‌ମାରି ବସିଗଲେ । ସେ ପିଅନ୍‌କୁ ପାଣି ଗିଲାସେ ଆଣିବାକୁ କହିଲେ ଏବଂ ତାଙ୍କ ପାଖରେ ବସିଥିବା ଜୁନିୟର କ୍ଲର୍କକୁ 'ଗାଇଡ ଲାଇନ୍ସ' ଥିବା ଅନ୍ୟ ଫାଇଲଟିଏ ଆଣିବାକୁ କହିଲେ । ପାଣି ପିଇସାରି ସେ କେନ୍ଦ୍ରରୁ ଆସିଥିବା ଯୋଜନାର ଖର୍ଚ୍ଚ ସମ୍ବନ୍ଧୀୟ ଗାଇଡ୍ ଲାଇନ୍‌ସଗୁଡ଼ିକ ଆଉଥରେ ଦେଖିଦେଲେ । ତା'ପରେ ଚଷମାକୁ ଟେବୁଲ ଉପରେ ଥୋଇ ଛାତକୁ ଚାହିଁ ଚୁପ୍‌ଚାପ୍ ବସିଗଲେ ।

ସଦାନନ୍ଦ ବାବୁ ଏମିତି ଛାତକୁ ଚାହିଁ ବସିଗଲେ ପିଅନ ରାମହରି ବୁଝିଯାଏ ବଡ଼ବାବୁ ରୁଲ୍‌ର ପ୍ରୟୋଗ ପ୍ରଣାଳୀ କଥା ମନେ ପକେଇବାକୁ ଚେଷ୍ଟା କରୁଛନ୍ତି । ଠିକ୍ ଏଇ ଅବସ୍ଥାରେ ସେ ଚା'କପେ ଖାଇ ପାନ ଖଣ୍ଡେ ଖାଇବାକୁ ମଧ୍ୟ ଇଚ୍ଛା କରନ୍ତି । ରାମହରି ଯେମିତି ଦେଖିଲା ବଡ଼ବାବୁଙ୍କ ଉର୍ଦ୍ଧ୍ୱମୁଖ ଅବସ୍ଥା, ଆଉ ନାସ ବାହାର କରିବ କଅଣ ଦଉଡ଼ି ଆସିଲା ତାଙ୍କ ପାଖକୁ ଏବଂ ଆସ୍ତେକିନି ପଚାରିଲା, ସାର୍, ଚା' କପେ..... ? ବଡ଼ ବାବୁ ଆଖି ଖୋଲିଲେ ଏବଂ କହିଲେ, "ଖୁବ୍ ଗରମ ଥିବ ଯେମିତି" । ରାମହରି ଚାଲିଗଲା । ବଡ଼ବାବୁ ପଛରୁ ଡାକିଲେ, "ହେୟ ଶୁଣ, ଟିକିଏ ନଟବର ବାବୁଙ୍କୁ ଡାକ ।"

ବଡ଼ବାବୁ ଚା' ପିଇ ସାରିଲା ବେଳକୁ ନଟବର ବାବୁ ଆସି ହାଜର । ସେ ବି ଜାଣନ୍ତି ବଡ଼ବାବୁ ଚା ପିଇ ସାରିଥିଲେ ରୁଲ୍‌ର ତର୍ଜମା ଭଲ ଭାବରେ କରି ପାରନ୍ତି ।

ବସ ।

ନଟବର ବାବୁ ବସିଲେ ।

ନିଅ, ଫାଇଲ ପଢ଼ । ଏମିତି କାହିଁକି କର ? ଏକାଥରେ ଗୋଟିଏ କାମ ସାରି ହୁଏନି ? କାମ କଲାବେଳେ କୋଉଠି ମନ ଥାଏ ? କବିତାରେ ? ଧନ୍ୟ ତମ କବିତା । ହଇଓ କିରାଣୀ କାମ ପାଇଁ ତ ଜନ୍ମ ନେଇଛ । ସେ କାମ ଠିକ୍ ନକଲେ କେମିତି ହେବ ? ଦେଖ କେମିତି ଫାଇଲ ଫେରି ଆସିଲା । ସାମାନ୍ୟ କଥାଟା ପାଇଁ ଏବେ ସମସ୍ତେ ହଇରାଣ । ଆରେ ବାବୁ ସେମାନେ ଦିଲ୍ଲୀରେ

ବସିଛନ୍ତି । ତାଙ୍କ ଆଖି ଚାରିଟା । ଦେଖ ଆମ ଭୁଲଟା କେମିତି ଚଟ୍‌କିନି ଧରି ପକେଇଲେ । ଯାଅ, ନେଇ ଯାଅ । ଆଉ ଥରେ ଲେଖି ଆଣ ।

ମୁଁ ପାରିବିନି ।

ମାନେ ? ତମେ ପାରିବନି, ଆଉ କିଏ ପାରିବ ? ବଡ଼ବାବୁ ସିଧା ହେଇ ବସିଲେ । ଆରେ ବାବୁ, ଯାହା କେନ୍ଦ୍ରରୁ ପ୍ରୋଫର୍ମା ଆସିଛି, ତମେ ତାକୁ ଇ ଲେଖିବ । ଅଧିକା ଲେଖିବାକୁ ତମକୁ କିଏ କହୁଛି ? ତମର ସେଥିରେ ଆପତ୍ତି କାହିଁକି ? ତୁମେ ସେତକ ନ କଲେ ତାକୁ ସେମାନେ ଗ୍ରହଣ କରିବେ କାହିଁକି ?

ଆଜ୍ଞା ସେଇ ଶବ୍ଦଟାକୁ ଆପଣ ବି ଲେଖିଦେଲେ ହେଇ ଥାଆନ୍ତା ।

ମାନେ ? ନୋଟ୍ ପୁଟ୍‌ଅପ୍ କରିବ ତୁମେ । ଆଉ ସେଥିରେ ଶବ୍ଦ ଯୋଡ଼ିବି ମୁଁ । ମୋତେ ପାଠ ଶିଖାଉଚ ? ବୁଢ଼ା ହେଲିଣି ପରା ?

ଆଜ୍ଞା ମୁଁ କଣ ସବୁ କଥା ବୁଝୁନାହିଁ ? କେତେ ଛୋଟିଆ ଶବ୍ଦଟିଏ ଅଥଚ କେତେ ମାରାତ୍ମକ କହିଲେ ? ପୃଥିବୀର ସବୁ ସତ୍ୟ ତା ଭିତରେ ଲୁଚି ରହିଛି । ଆମେ କିରାଣୀ ଲୋକ । ସେଇ ସତ୍ୟର ଏଠି ପ୍ରୟୋଗ ବିଧି ଦେଖିଲେ ଆମ ମୁଣ୍ଡ ବିଗିଡ଼ି ଯାଏ । କିଏ କହିବ ଏଇଟା ସତ୍ୟ ନୁହେଁ । - ସେଇଟା ? କାରଣ ଆପଣ ଦେଖନ୍ତୁ ଇଂରେଜ ଅମଳରୁ ଏଇ ଫାଇଲଗୁଡ଼ିକର ଯେମିତି ଜନ୍ମ ହେଇଚି ସତ୍ୟଠାରୁ ଦୂରରେ ରହିବାକୁ । ଆଉ ଆମର ଜନ୍ମ ସେଇ ଫାଇଲଗୁଡ଼ିକୁ ପାଳି ପୋଷି ବଞ୍ଚେଇ ରଖିବାକୁ ।

ବେଶ୍ ବେଶ୍ ଯଦି ସବୁ କଥା ବୁଝୁଛ ତେବେ ଲେଖି ଦଉନ କାହିଁକି ? ଏବେ ଦେଖ ତୁମେ ଏଇ ଗୋଟିଏ ଶବ୍ଦ ଲେଖିନ ବୋଲି ସେଠୁ ଫାଇଲ ଫେରି ଆସିଲା । ଫଳ ଏଇଆ ହେଲା ଯେ ଆମ ସରକାର ବାକି ଚାଳିଶ ପରସେଣ୍ଟ ପାଇପାରିଲେନି । ଇଉଟିଲାଇଜେସନ୍ ସାର୍ଟିଫିକେଟ୍ ନ ଦେଲେ ସେମାନେ ବାକି ଟଙ୍କା ରିଲିଜ୍ କରିବେ କାହିଁକି ? ଏବେ କଅଣ ହେଲା ? ଏବର୍ଷ ଗଲା । ଏ ଟଙ୍କା ମିଳିବାକୁ ଆମକୁ ଆଉ ବର୍ଷେ ଲାଗିବ । ଏବେ ବର୍ଷାଦିନ ସରିବ । ବନ୍ଧବାଡ଼ କେବେ ହେବ ? ଏ ଚାଳିଶି ପରସେଣ୍ଟର ଦାମ କେତେ ଜାଣିଛ ? ହଜାରେ କୋଟି ଟଙ୍କା । କହିଲ, ଆମ ଚାକିରି ରହିବ ? କେତେ ଲୋକ ଯାକୁ ଅପେକ୍ଷା କରିଛନ୍ତି ଜାଣିଛ ? ସେମାନେ ଆମକୁ ରଖିବେ ? ଏଇଥିପାଇଁ ତ କିରାଣୀଙ୍କୁ ଦେଖିଲେ ଉପରବାଲାଙ୍କ ନାହି ଡିଏଁ । ଯାଅ 'ଏପ୍ରୋପ୍ରିଏଟ୍‌ଲି' ଶବ୍ଦଟା ସେଠି ଲେଖିଆଣ । ଖାଲି 'ଇଉଟିଲାଇଜଡ୍' ଲେଖିଲେ ହେବ ? ଏଁ ? ସେ ହେଁ ହେଁ ହେଇ ହସି ଉଠିଲେ ।

(ପ୍ରଜାତନ୍ତ୍ର - ୧୨.୮.୨୦୦୨)

***

# କଳାଶ୍ରୀ

ସଦାନନ୍ଦବାବୁ ମନ୍ତ୍ରିମଣ୍ଡଳରେ ଯୋଗଦେବା ପର ଦିନ ରାଜଧାନୀର ସର୍ବ ପୁରାତନ ସାଂସ୍କୃତିକ ଅନୁଷ୍ଠାନ 'କଳା ନିକେତନ'ର ସଭାପତି ଓ ସାମ୍ପାଦିକ ଆସି ପହଞ୍ଚିଲେ । ସେମାନେ ତାଙ୍କୁ କଲିକତାରୁ ମଗାଇଥିବା ଗୋଟିଏ ବିରାଟ ଫୁଲମାଳ ପ୍ରଦାନ କରି କହିଲେ ଏ ବର୍ଷ ଆମର ବାର୍ଷିକ ଉତ୍ସବରେ ଆପଣଙ୍କୁ ଏକ ବିଶେଷ ସମ୍ମାନରେ ସମ୍ମାନିତ କରାଯିବାର ସ୍ଥିର ହୋଇଛି । ସଭାପତି ଏକଥା ମଧ କହିଲେ ଆପଣଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ଆଶୀର୍ବାଦ ଆମେ ବରାବର ପାଇ ଆସୁଛୁ । ତା'ଛଡ଼ା ଓଡ଼ିଆ ଜାତିର କଳା ଓ ସଂସ୍କୃତିକୁ ଆପଣଙ୍କ ଦାନ ଭୁଲିବାର ନୁହେଁ । ଏହା ଆପଣଙ୍କୁ ଅନେକ ଆଗରୁ ଦେବାର ଥିଲା ।

ସଦାନନ୍ଦବାବୁ ଆଶ୍ଚର୍ଯ୍ୟ ହେଲେ । ସେ ଏମିତି ଅନୁଷ୍ଠାନ ନା ଆଗରୁ କେବେ ଶୁଣିଚନ୍ତି ବୋଲି ତାଙ୍କର ମନେ ହେଲା ନାହିଁ । ସୌଜନ୍ୟ ରକ୍ଷା ଦୃଷ୍ଟିରୁ ସଦାନନ୍ଦବାବୁ କହିଲେ ଆପଣ ମୋତେ କାହିଁକି ସମ୍ମାନିତ କରିବେ, ବରଂ ସେ ସମ୍ମାନଟା ଆପଣ ମୁଖ୍ୟମନ୍ତ୍ରୀଙ୍କୁ ଦିଅନ୍ତୁ । ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ଏ ଜାତିକୁ ଦାନ ଅତୁଳନୀୟ । ତାଙ୍କୁ ପ୍ରଥମେ ସମ୍ମାନିତ କରିବା କଥା ।

ରଘୁବୀର କହିଲେ ଆମେ ଏ କଥା ଜାଣୁ । କିନ୍ତୁ ଏଥର ମୁଖ୍ୟମନ୍ତ୍ରୀଙ୍କ ହାତରେ ଆପଣଙ୍କୁ ସମ୍ମାନଟା ଦେବାକୁ ଆମ ଅନୁଷ୍ଠାନ ସର୍ବସମ୍ମତ ପ୍ରସ୍ତାବ ଗ୍ରହଣ କରିଚି । ମୁଖ୍ୟମନ୍ତ୍ରୀଙ୍କୁ ସମ୍ମାନିତ କରିବାକୁ ହେଲେ ଆମକୁ ଜାତୀୟ ସ୍ତରର ଜଣେ ନେତାଙ୍କୁ ନିମନ୍ତ୍ରଣ କରିବାକୁ ହେବ । ଅବଶ୍ୟ ଖାଲି ମୁଖ୍ୟମନ୍ତ୍ରୀ ନୁହେଁ, ଆଉରି କେତେଜଣଙ୍କୁ ପର୍ଯ୍ୟାୟକ୍ରମେ ସମ୍ମାନିତ କରିବାକୁ ଆମେ ନିଷ୍ପତ୍ତି ନେଇଚୁ । ଆମକୁ ଖାଲି ସୁଯୋଗ ଦେଲେ ହେଲା ।

ସମ୍ପାଦକ ରାସବିହାରୀ କହିଲେ, ଯୋଉ ଜାତିର ଯେତେ ବେଶୀ ଉପାଧିଧାରୀ ବ୍ୟକ୍ତି ଥିବେ ସେ ଜାତି ସେତିକି ଉନ୍ନତ ବୋଲି ଜଣାପଡ଼ିବ ।

ଆମ ଅନୁଷ୍ଠାନ ଏଣିକି ପି.ଏଚ.ଡି ଓ ଡି.ଲିଟ୍ ଇତ୍ୟାଦି ଉପାଧି ମଧ ଦେବାକୁ ଚିନ୍ତା କରୁଚି । ଏସବୁ ଉପାଧି ପାଇଁ ଓଡ଼ିଶାର ଯୋଗ୍ୟ ବ୍ୟକ୍ତିମାନଙ୍କୁ ଓଡ଼ିଶା ବାହାରକୁ ଯିବାକୁ ପଡୁଥିବା ଦୁଃଖର କଥା ।

ସଭାପତି କହିଲେ, ସାର୍ ଆପଣଙ୍କ ବହୁମୂଲ୍ୟ ସମୟ ଆମେ ନଷ୍ଟ କରିବୁ ନାହିଁ, ଆପଣ ଆପଣଙ୍କର ଗୋଟିଏ ପୋଷ୍ଟକାର୍ଡ ସାଇଜ୍ ଫଟୋଦେଇ ଆମକୁ ବିଦାୟ ଦିଅନ୍ତୁ । ସଦାନନ୍ଦବାବୁ ସେଦିନ ରାତିରେ ଶୋଇ ପାରିଲେ ନାହିଁ । ମନ୍ତ୍ରୀ ହେଲେ ସୌଭାଗ୍ୟ ସବୁ କେମିତି ବର୍ଷାହୁଏ, ଏଇ କଥା ତାଙ୍କ ମନରୁ ନିଦ କାଢ଼ି ନେଇଥିଲା । ସେ ମନେମନେ ଉର୍ବଶୀଙ୍କୁ ଗାଳିଦେବାକୁ ଆରମ୍ଭ କଲେ ।

ଉର୍ବଶୀ ଭଳି ଗୋଟିଏ ପ୍ରାଇମେରୀ ସ୍କୁଲ୍ ଟିଚର୍ ତାଙ୍କର ସ୍ତ୍ରୀ ହେବ କେମିତି ? ସେ ଠିକ୍ କଲେ, ଏଥର ଉର୍ବଶୀ ଆସିଲେ ତାକୁ କହିବେ କୌଣସି ଗୋଟିଏ ଅନୁଷ୍ଠାନରୁ ଏମ.ଏ ସାର୍ଟିଫିକେଟ୍ ଖଣ୍ଡେ ଧରି ଆସିଲେ ସେ ମୁଖ୍ୟମନ୍ତ୍ରୀଙ୍କୁ କହି ଯେ କୌଣସି ଗୋଟିଏ କଲେଜରେ ରଖାଇ ଦେଇ ପାରିବେ । ଏପରିକି ବର୍ଷକ ପରେ ତାଙ୍କୁ ପ୍ରିନ୍ସିପାଲ ମଧ କରିଦେଇ ହେବ । ଏଇଟା କୋଉ ବଡ଼ କଥା ? ଏବେ ଯେମିତି ହଜାର ହଜାର ପ୍ରିନ୍ସିପାଲ ପୋଷ୍ଟ ଖାଲି ପଡ଼ିଛି ସେଥିରେ ଏ କାମଟା ମୋଟେ ଅଟକି ଯାଆନ୍ତା ନାହିଁ । କିନ୍ତୁ ସେ ରାଜି ହେଲେ ତ ? ଦେଖାଯାଉ ସେ ଆସନ୍ତୁ । ବଡ଼ି ଭୋରରୁ ଉଠି ସେ ଉର୍ବଶୀଙ୍କ ଠାକୁ ଖଣ୍ଡିଏ ଗାଡ଼ି ପଠାଇ ଦେଲେ । ହେଲେ ସିଏ ଆସିଲେ ନାହିଁ । କହିଲେ କ'ଣ ନା, "ମନ୍ତ୍ରୀତ୍ୱ ତାଳଗଛର ଛାଇ । ଏଇଠି ଅଛି ଏଇଠି ନାଇଁ । ତା' ତୁଳନାରେ ପ୍ରାଇମେରୀ ସ୍କୁଲ ଚାକିରୀ ଢେର୍ ଭଲ ।"

ସଦାନନ୍ଦବାବୁ ସେଦିନ ନିଜକୁ ବହୁତ କରି ସଜେଇଲେ । ତାଙ୍କ ଚେହେରା ଯେମିତି କୋଡ଼ିଏ ବର୍ଷ ପଛକୁ ପଳେଇଛି । ସେ ଏଥର ସଦ୍ୟ ପ୍ରସ୍ଫୁଟିତ ଗୋଲାପଟିଏ ନେଇ ପକେଟ୍‌ରେ ରଖିଲେ ଏବଂ ଗୋଟିଏ କଳାତ୍ମକ କାଇଦାରେ ନିଜ ବାମ ହାତକୁ ଉଠେଇ ସମୟ ଦେଖିଲେ । ନା, ସେ ପାଞ୍ଚମିନିଟ୍ ଆଗରୁ ମଧ ଯିବେ ନାହିଁ । ସମସ୍ତେ ଆସି ସାରନ୍ତୁ, ପରେ ସେ ପୁଣି ଭାବିଲେ, ଆରେ ସେ ତ ପୁଣି ମୁଖ୍ୟମନ୍ତ୍ରୀ ଆସିବା ଆଗରୁ ସେଠାରେ ପହଞ୍ଚିବା ଉଚିତ୍ । ତାଙ୍କ ପି.ଏ କଅଣ ଗୋଟିଏ 'ପ୍ରୋଟୋକଲ୍' କଥା କହୁଥିଲା କେଜାଣି ।

ସଦାନନ୍ଦବାବୁ ପୁରସ୍କାର, ମାନପତ୍ର, ବିଶାଳ ତଥା ସୁଦୃଶ୍ୟ ପୁଷ୍ପଗୁଚ୍ଛକୁ ହାତରେ ଧରି ଘରକୁ ଫେରିଲାବେଳକୁ ଉର୍ବଶୀ ଆସି ଚା' ପିଉଥାନ୍ତି । ସେ ତାଙ୍କୁ ଦେଖି ବିହ୍ୱଳିତ ହୋଇ ପଡ଼ିଲେ । କିନ୍ତୁ ତାଙ୍କର କ୍ଷୋଭ ହେଲା ଯେ ସେ ସଭାରେ ଉର୍ବଶୀ ରହି ପାରିଲେନି । ସେ ଦୁଃଖ ସେ ମନ ଭିତରେ ରଖି କହିଲେ, ହେଇ ଦେଖ ଏସବୁକୁ । ଏ ପୁଷ୍ପଗୁଚ୍ଛ, ଏ ମଠା, ଉତ୍ତରୀୟ ଆଉ ମୋର ପ୍ରଶସ୍ତି ଲେଖା ଏ ମାନପତ୍ର, ଉପହାର । ଦେଖ ଏ ସବୁ । ମୋତେ 'କଳାଶ୍ରୀ' ଉପାଧି ଦିଆଗଲା । ଏଇଟା ରାଜ୍ୟର ହାଇଏଷ୍ଟ ଆୱାର୍ଡ । ୟା'ର କିଛି ମାନେ ତମେ ବୁଝ ? କଳାଶ୍ରୀ ମାନେ କ'ଣ ଜାଣ ?

ଜାଣେ, ଜାଣେ ତା ମାନେ । ଖାଲି ଚା'କପ୍‌ଟାକୁ ଟେବୁଲ୍ ଉପରେ ରଖୁ ରଖୁ ଉର୍ବଶୀ କହିଲେ, "ସବୁ କଳାରେ ପରିପୂର୍ଣ୍ଣ, ଏଇଆ ତ ?" ସେ ଉଠି ବାଥ୍‌ରୁମ୍ ଆଡ଼କୁ ଚାଲିଗଲେ ।

***

# ଅଦୃଶ୍ୟ ଦୃଶ୍ୟ

ସେଦିନ ମୁଁ ଯେତେବେଳେ ମୋ ପେନ୍‌ସନ୍ ବହି ଧରି ବ୍ୟାଙ୍କର ସେ ବାବୁଙ୍କ ଠାରେ ଯାଇ ଠିଆ ହେଲି ସେ କହିଲେ ଆପଣଙ୍କୁ ଏଥର ଗୋଟାଏ ନୂଆ ଫର୍ମରେ ଆପଣଙ୍କର 'ଲାଇଫ୍ ସାର୍ଟିଫିକେଟ୍' ଦେବାକୁ ହେବ । ସେ ମୋ ହାତକୁ ଫର୍ମଟିଏ ବଢ଼େଇ ଦେଲେ । ସେ କହିଲେ ଏଣିକି ବର୍ଷକୁ ଥରେ କେବଳ ଏଇ ଫର୍ମରେ ସାର୍ଟିଫିକେଟ୍ ଦେବାକୁ ହେବ ।

ମୁଁ ପୂରଣ କରି ଦେଉଚି ? ପଚାରିଲି ତାଙ୍କୁ ।

ସେ ମନା କଲେ । କହିଲେ ନା, ରୁଲ୍ ବଦଳି ଯାଇଚି । ସହରର କୌଣସି ଜଣେ ଗେଜେଟେଡ୍ ଜ୍ୟୋତିଷ ଠାରୁ ଏ ଫର୍ମ ପୂରଣ କରି ଆଣିବାକୁ ହେବ । ଏ ବର୍ଷ ଭିତରେ ଆପଣଙ୍କର ସ୍ୱାସ୍ଥ୍ୟ କିପରି ରହିବ ସେ କଥା ସେ କେବଳ ଜାଣି ପାରିବେ ଏବଂ ଲେଖି ପାରିବେ ।

ଗେଜେଟେଡ୍ ଜ୍ୟୋତିଷ ? ମୁଁ ଆଶ୍ଚର୍ଯ୍ୟ ହେଲି ।

ହଁ, ଏବେ ସରକାର ଯେଉଁମାନେ ଜ୍ୟୋତିଷ ଶାସ୍ତ୍ରରେ ଏମ.ଏ.ସି ପାଶ୍ କରିଛନ୍ତି ସେମାନଙ୍କୁ ବିନା ଚାକିରିରେ ଗେଜେଟେଡ୍ ଅଫିସର ହିସାବରେ ଘୋଷଣା କରିଛନ୍ତି । ଏ ସହରରେ ସେ ପ୍ରକାର ଚାରି ଜଣ ଅଫିସର ଅଛନ୍ତି । ସେଇମାନେ ହିଁ କେବଳ ଏ ସାର୍ଟିଫିକେଟ୍ ଦେଇ ପାରିବେ ।

ମୁଁ କହିଲି ଆଗରୁ ଡାକ୍ତରମାନେ ହେଲଥ୍ ସାର୍ଟିଫିକେଟ୍‌ମାନ ଦେଉଥିଲେ । ଆମକୁ କେତେ ସୁବିଧା ହେଉଥିଲା ।

ସେ କହିଲେ, ଡାକ୍ତର କେବଳ ଆପଣଙ୍କ ଦେହର ରୋଗ ଥିଲେ ପରୀକ୍ଷା କରି ସାର୍ଟିଫିକେଟ୍ ଦେଇପାରିବେ । କିନ୍ତୁ ଜ୍ୟୋତିଷମାନେ ରୋଗ କେବେ ହେବ ସେ କଥା ଜାଣି ସାର୍ଟିଫିକେଟ୍ ଦେବେ । ଏପରିକି ସେମାନେ ବର୍ଷକ ଭିତରେ ଜଣକର ପରମାୟୁ ସରୁଚି କିନା, ଦୁର୍ଘଟଣା ଇତ୍ୟାଦିର ସମ୍ମୁଖୀନ ଜଣେ ହେବ କି ନା, ସେ କଥା ମଧ୍ୟ ଜାଣି ପାରିବେ । ସରକାର ପାଇଁ କାମଟା କେତେ ସହଜ ହେଲା କହିଲେ ?

ସେ ମୋତେ ଫର୍ମର ପଛପଟଟା ଦେଖେଇଲେ । ସେଥିରେ ଚାରିଜଣ ଗେଜେଟେଡ୍ ଜ୍ୟୋତିଷ୍ୟଙ୍କ ନାଁ, ଠିକଣା, ଟେଲିଫୋନ୍ ନମ୍ବର, ଫେକ୍ସ ନମ୍ବର ଇତ୍ୟାଦି ସବୁ ଲେଖାଥିଲା ।

ମୁଁ ଗଲି । ଗୋଟିଏ ବିରାଟ ଅଫିସ୍ ଭଳିଆ ଦେଖାଯାଉଥିବା ବଙ୍ଗଳା ସାମନାରେ ପହଞ୍ଚିଲି । ବହୁତ ଲୋକ ଗୁଣ୍ଡ ହୋଇଛନ୍ତି । କେତେ କାର୍, ଟେକ୍ସି, ତା'ର ସୀମା ନାହିଁ । ଅନେକ କଷ୍ଟରେ ଭିଡ଼ କାଟି ଭିତରକୁ ପଶଲା ପରେ ଦେଖିଲି ଗୋଟିଏ ରୁମ୍ ସାମନାରେ ଲେଖାଅଛି ପ୍ରଫେସର (ଡକ୍ଟର) ବାନାମ୍ବର ଆଚାର୍ଯ୍ୟ ଏମ.ଏ.ସି., ପି.ଏଚ.ଡି. (ଜ୍ୟୋତିଷ) ।

ସେଇଟା ଗୋଟିଏ ବିରାଟ୍ ହଲ୍ । ସମଗ୍ର ହଲଟା ଶୀତତାପ ନିୟନ୍ତ୍ରିତ । ମୁଁ ଦେଖିଲି ହଲର ଚାରିପଟେ ଅନେଗ ଗୁଡ଼ିଏ କୋଠରୀ । ସେଗୁଡ଼ିକରେ ମଧ ଅଫିସ୍ କାମ ଚାଲିଛି । କିନ୍ତୁ ପ୍ରଫେସର ଆଚାର୍ଯ୍ୟଙ୍କ କୋଠରୀ ଥିଲା ବେଶ୍ ପ୍ରଶସ୍ତ । ତା'ରି ଭିତରେ ଗୋଟିଏ ଘୂର୍ଣ୍ଣାୟମାନ ଚେଆରରେ ପ୍ରଫେସର ଆଚାର୍ଯ୍ୟ ବସି ଥାଆନ୍ତି । ପିନ୍ଧିଥାଆନ୍ତି ମଠା ଧୂତୀ, ଚଦର, ମଠା ପଞ୍ଜାବୀ । ମଥାରେ ଲମ୍ବା ତିଲକ ଓ ତା'ଭିତରେ ସରୁ ସରୁ ସିନ୍ଦୂର ଟିପା । ବେକରେ ଦୁଇ ତିନିଟା ରୁଦ୍ରାକ୍ଷ ମାଳା ସହିତ ଗୋଟିଏ ନୀଳ ପଥରର ମାଳୀ । ତାଙ୍କ ମୁଖ ଥିଲା ପ୍ରଶସ୍ତ ଓ ସେଥିରୁ ଜ୍ୟୋତି ଝଟକୁ ଥିଲା ପରି ଲାଗୁଥିଲା । ତାଙ୍କ ବାଁ ପାଖ ଟେବୁଲ ଉପରେ ଥିଲା କମ୍ପ୍ୟୁଟର ଏବଂ ଡାହାଣ ପାଖରେ ଥିଲା ହନୁମାନ ଚାଳିଶା, କେତେ ଖଣ୍ଡି ତାଳପତ୍ର, ହସ୍ତରେଖା ବିଚାର, ବାସ୍ତୁ ଶାସ୍ତ୍ର । ତା'ପାଖରେ ଗୋଟିଏ ମାଗ୍ନି ଫାଇଙ୍ଗ୍ ଗ୍ଲାସ୍ ଓ ଗୋଟିଏ ଛୋଟ ସ୍କେଲ । ଅଫିସର କାଚ କାନ୍ଥ ଭିତର ଦେଇ ଏସବୁ ପରିଷ୍କାର ଦେଖା ଯାଉଥିଲା ।

ମୋ ପାଳି ପଡ଼ିଲା ପ୍ରାୟ ୬୦ ଜଣଙ୍କ ପରେ । ମୁଁ ତାଙ୍କୁ ମୁଣ୍ଡ ନୁଆଁଇ ପ୍ରଣାମ କଲି ଏବଂ ଫର୍ମଟା ତାଙ୍କ ହାତକୁ ବଢ଼ାଇଦେଲି ।

ସେ ମୋତେ ମୁଣ୍ଡ ଉଠେଇ ଅନେଇଲେ ଏବଂ ପଚାରିଲେ ଆରେ ଏଇଟା କଅଣ ? ଆଉ କାହିଁ ?

ମୁଁ କିଛି ବୁଝି ନ ପାରିବା ଭଙ୍ଗୀରେ ତାଙ୍କୁ ଅନେଇଲି ।

ସେ ତାଙ୍କ ପି.ଏଙ୍କୁ ଡାକିଲେ ଏବଂ କହିଲେ ତମେ ୟାଙ୍କୁ ଟିକିଏ ସବୁ କଥା ବୁଝେଇ ଦିଅ ।

ପି.ଏ. ମୋତେ ତାଙ୍କ ରୁମ୍‌କୁ ନେଇଗଲେ ଏବଂ କହିଲେ ଆପଣ ପ୍ରଥମ ଥର ଆସୁଛନ୍ତି ବୋଧେ । ତଥାପି ନିୟମ କାନୁନ୍ କଥାଟା ଜାଣିବା ଉଚିତ୍ ଥିଲା ।

ହଉ ଛାଡ଼ନ୍ତୁ ସେ କଥା – ଆପଣ ପ୍ରଥମେ ଜଣେ ଜୁନିଅର ଜ୍ୟୋତିଷଙ୍କ ପାଖକୁ ଯିବେ । ସେ ପ୍ରଥମେ ଗଣନା କରି ଆପଣଙ୍କ ଫର୍ମରେ ଯୋଉଠି ଯାହା ଲେଖିବାର କଥା ଲେଖିବେ । ତା'ପରେ ଏଠାକୁ ଆସିବେ ।

ଜୁନିଅର ଜ୍ୟୋତିଷ ? ସେ କେଉଁଠି ଥାଆନ୍ତି ?

ସେମାନେ ସେଇ ମେନ୍ ରୋଡ଼ରେ ଗଛ ମୂଳରେ ବସିଥାନ୍ତି । ଆପଣ ଆସିଲାବେଳେ ସେମାନଙ୍କୁ ଦେଖି ନଥିବେ ? ହଁ, କିନ୍ତୁ ଗୋଟିଏ କଥା । ଆପଣଙ୍କର ଏ କାମଟା ସରକାରୀ । ତେଣୁ ଯେ କୌଣସି ରେଜିଷ୍ଟାର୍ଡ ଜୁନିଅର ପାଖକୁ ଯିବେ । ଯେଉଁମାନେ ପର୍ସନେଲ୍ କାମ ପାଇଁ ଆସିଛନ୍ତି ସେମାନେ ଅନରେଜିଷ୍ଟର୍ଡ ଜ୍ୟୋତିଷ ପାଖକୁ ଯାଇପାରନ୍ତି ।

ମୁଁ କେମିତି ଜାଣିବି କିଏ ରେଜିଷ୍ଟର୍ଡ ? "ଏ ନଟ !" ସେ ତାଙ୍କ ପିଅନକୁ ଡାକିଲେ । ନଟ ଆସିଲା । ୟାଙ୍କୁ ଟିକିଏ ସବୁ କଥା ବୁଝେଇ ଦେ'ରେ ବାପା ।

ମୁଁ ନଟ ସହିତ ବାହାରକୁ ଆସିଲି । ସେ ବାହାରକୁ ଆସିଲା ମାତ୍ରେ ତାକୁ ଲୋକମାନେ ମହୁମାଛି ପରି ଘେରି ଯାଉଥାଆନ୍ତି । ମୁଁ ବି ତା' ଭିତରେ ସାମିଲ ହୋଇଗଲି । ସେ ଶେଷରେ ଆମ ସମସ୍ତଙ୍କୁ ଗୋଟିଏ କୋଣକୁ ଡାକି ନେଇ କହିଲା, ଆପଣମାନେ ପ୍ରଥମେ ଜଣେ ଜୁନିୟର ଜ୍ୟୋତିଷ ପାଖକୁ ଯାଆନ୍ତୁ । ସେମାନେ 'ରେଜିଷ୍ଟର୍ଡ' ବୋଲି ତାଙ୍କ ନାଁମ ଫଳକରେ ଲେଖାଥିବ । ସେଠି ପଚାଶ ଟଙ୍କା ଦେଇ ଆଉ ଗୋଟିଏ ସାର୍ଟିଫିକେଟ୍ ଆଣିବେ । ତେବେ ସେଠି ମଧ ଭିଡ଼ କମ୍ ନଥିବ । ଆପଣ ସେ ଭିଡ଼ରୁ ରକ୍ଷା ପାଇବାକୁ ହେଲେ ଜଣେ ଦଲାଲ୍‌ର ସାହାଯ୍ୟ ନେଇ ପାରନ୍ତି । ସେ ଆପଣଙ୍କ କାମ ସୁରୁଖୁରରେ କରାଇ ଦେବ । ସେଠୁ ସାର୍ଟିଫିକେଟ୍ ଆଣି ଏଠି ତିନି ନମ୍ବର କାଉଣ୍ଟରରେ ପାଞ୍ଚ ଟଙ୍କା ଦେଇ ଚାଲାଣ ନେବେ । ସେଠୁ ଆଣିଥିବା ଫର୍ମ ସବୁକୁ ସେ ଚାଲାଣ ସହିତ ନେଇ ପାଞ୍ଚ ନମ୍ବର କାଉଣ୍ଟରରେ ୧୦୦ ଟଙ୍କା ଦାଖଲ କରି ରସିଦ୍ ନେଇ ଶେଷରେ ସାହେବଙ୍କ ପାଖକୁ ଯିବେ । ହଁ, ଶୁଣନ୍ତୁ, ସେ ପୁଣି କହିଲା, ବେଳେବେଳେ କାଉଣ୍ଟରରେ ଚାଲାଣ ମିଳେ ନାହିଁ । ତେବେ ଆପଣମାନେ ବ୍ୟସ୍ତ ହେବେ ନାହିଁ । ଯଦି ସେଠି ସରି ଯାଇଥାଏ, ଆପଣମାନେ ମୋତେ କହିବେ । ମୁଁ ଦେଖିଲି କାମଟା ଏତେ ସହଜ ନୁହେଁ । ଏଜେଣ୍ଟମାନଙ୍କର ସାହାଯ୍ୟ ନେବା ଉଚିତ୍ ହେବ । ଠକାମିରେ ପଡ଼ିବାର ସମ୍ଭାବନା କମ୍ । ମୁଁ ଜଣଙ୍କୁ ଡାକିଲି, କହିଲି ମୋର ଏତେକ କାମ କରିଦେବ, କେତେ ନବ ?

ପଚାଶ ଟଙ୍କା । ସବୁ କାମ କରିଦେବି । ମୁଁ ରାଜି ହେଲି । ଅନ୍ୟ ଉପାୟ ନଥିଲା । ମୁଁ ତା ପଛେ ପଛେ ଚାଲିଲି । ରାସ୍ତାର ଦୁଇ କଡ଼ରେ ଅନେକ ଗୁଡ଼ିଏ ଗୁମୁଟି ଦେଖିଲି । କୋର୍ଟରେ ପିଟିସନ୍ ରାଇଟରମାନଙ୍କ ପରି ବସି ଥାଆନ୍ତି । ଏଇ କେଇଟା ମାସ କି ବୋଧେ ବର୍ଷକ ଭିତରେ ନୂଆ କାଇଦାଟା ଏତେ ବଡ଼ ଗୋଟାଏ ପରିବର୍ତ୍ତନ ଆଣି ପାରିବି ଦେଖି ମୁଁ ଆଶ୍ଚର୍ଯ୍ୟ ହେଇଗଲି । ଏତେ ଲୋକ ଥାଉଁ ଥାଉଁ ସେ ଏଜେଣ୍ଟ ଜଣକ ଆଉ କେତେ ଦୂରକୁ ଯାଉଚି ଦେଖି ପଚାରିଲି ଏଇମାନଙ୍କ ପାଖରେ କାମ ହେଇ ପାରିବନି ?

ସେ ମୋତେ ଅନେଇଲା । ପାଖକୁ ଲାଗି ଆସି କହିଲା, ଆପଣ 'ମିଶ୍ର' ବାହ୍ମଣ ନା ?

ମୁଁ କାଉଳି ଖାଇ ହେଲି । କହିଲି, ତୁମେ ଜାଣ ତା ହେଲେ ?

ଆସନ୍ତୁ, ମୁଁ ଆପଣଙ୍କୁ ଠିକ୍ ଜାଗାକୁ ନେଇ ଯିବି । ନିର୍ଭୁଲ କାମ ହେବ ।

ଆମେ ଗୋଟିଏ ଆଜବେଷ୍ଟସ୍ ପକା ଛୋଟ ଅଫିସ୍ ଆଗରେ ପହଞ୍ଚିଲୁ । ସାମନାରେ ଲମ୍ବା ଲାଇନ୍ ଲାଗିଛି । ଗୋଟିକିଆ ଘର । ଘର ଭିତରେ ଜ୍ୟୋତିଷ ମହାରାଜା ବସିଛନ୍ତି । ଘର ସାମନାରେ ଯେଉଁ ନାମ ଫଳକ ଲାଗିଚି ସେଥିରେ ଲେଖା ଅଛି ପଣ୍ଡିତ ରଘୁନାଥ କର ଶର୍ମା, ବି.ଏ.ସି. (ଜ୍ୟୋତିଷ) ରେଜିଷ୍ଟାର୍ଡ । ମୋର ଆଉ ଚିନ୍ତା କରିବାର କିଛି ନଥିଲା । ଏଜେଣ୍ଟ ଜଣକ ମୋତେ ଲାଇନ୍‌ରେ ଛିଡ଼ା କରେଇ ଅନ୍ୟ ଆଡ଼େ ଗଲେ । କହିଲେ, ଆସୁଚି ।

ଅଫିସ୍ ଭିତରକୁ ଜଣ ଜଣ କରି ଯାଉ ଥାଆନ୍ତି । ହଠାତ୍ ଦେଖିଲି ଜଣେ ବୁଢ଼ା ସେ ଅଫିସ୍‌ରୁ ବାହାରି ଆସିଲା ଏବଂ ଥରି ଥରି ତଳେ ପଡ଼ିଗଲା । ଆମେ ସବୁ ତା ପାଖକୁ ଦଉଡ଼ି ଗଲୁଁ । ତା'ମୁହଁରୁ ସେତେବେଳେ ବଜ ବଜ ହେଇ ଫେଣ ବାହାରୁଥାଏ ।

ପାଟି ଶୁଣି ଅଫିସ୍ ଭିତରୁ ଜ୍ୟୋତିଷ ବାବୁ ବାହାରକୁ ବାହାରି ଆସିଲେ ଏବଂ ଲୋକମାନଙ୍କୁ ଆଡ଼େଇ ସେ ଲୋକକୁ ଯାଇ ଦେଖିଲେ । ତା'ପରେ କଅଣ ଭାବିଲେ କେଜାଣି ନଇଁ ପଡ଼ି ତା ପକେଟ୍‌ରୁ କାଗଜ ଖଣ୍ଡେ ବାହାର କରି ଦେଇ ଚିକି ଚିକି କରି ଚିରି ଫୋପାଡ଼ି ଦେଲେ । ତା'ପରେ କହିଲେ ଆରେ ଠିଆ ହେଇ ସବୁ ଦେଖୁଚ କଅଣ ? ଯାଅ ତାକୁ ସେ ଗଛ ଛାଇକୁ ନେଇ ଯାଅ । ପାଣି ଆଣି ଛିଞ୍ଚ । ସେ ଅଫିସ୍ ଭିତରକୁ ଚାଲିଗଲେ ।

(ଓଡ଼ିଆ ପର୍ବ, ପୂଜା ବିଶେଷାଙ୍କ, ୨୦୦୧)

***

# ଭାରତବର୍ଷର ମଣିଷମାନେ, କୁଆଡ଼େ ଗଲ ?

ଏକବିଂଶ ଶତାବ୍ଦୀର ଚଉଠ ହେବ କି କଅଣ । ଭାରତବର୍ଷରେ ଗୋଟିଏ ଭୟଙ୍କର ଦୁର୍ଘଟଣା ଘଟିଲା । ଯେମିତି ଓଡ଼ିଶାର ଆକାଶରୁ ସେଦିନ ପ୍ରଚଣ୍ଡ ବିସ୍ଫୋରଣ ସହିତ ଉଲ୍‌କାପାତ ହେଲା, ଠିକ୍ ସେମିତି ଗୋଟିଏ ବିରାଟ ବିସ୍ଫୋରଣ ହେଲା । ଏଥିରେ ସମଗ୍ର ଭାରତବର୍ଷ କମ୍ପି ଉଠିଲା । ସମଗ୍ର ମାଟି ଥରି ଉଠିଲା । ସୂର୍ଯ୍ୟଙ୍କ ଅସ୍ତିତ୍ୱ ଲୋପ ପାଇଲା । ପ୍ରଳୟ ଘୋଟିଗଲା ।

ଭାରତର ସମସ୍ତେ ଏକା ସମୟରେ ମୃତ୍ୟୁବରଣ କଲେ । ଯିଏ ଯୋଉଠି ଥିଲେ ସେମାନେ ସେଇଠି ପଡ଼ି ରହିଲେ । ମଣିଷ, ପଶୁ, ପକ୍ଷୀ, ଗଛଲତା ସବୁ ଏକ ସମୟରେ ମରିଗଲେ । ପ୍ରଚଣ୍ଡ ବିସ୍ଫୋରଣ ସହିତ ବାୟୁମଣ୍ଡଳ ଶୂନ୍ୟ ହେବା ଦ୍ୱାରା ଜୀବମାନେ କେମିତି ବଞ୍ଚନ୍ତେ । ଭାରତବର୍ଷଟା ଶ୍ମଶାନରେ ପରିଣତ ହୋଇଗଲା । ଶ୍ମଶାନରେ ହେଲେ ପୋଡ଼ା ଗନ୍ଧ ଥାଏ । ଏ କ୍ଷେତ୍ରରେ ସେତକ ବି ନଥିଲା ।

ଆଶ୍ଚର୍ଯ୍ୟ ଏମିତି କେମିତି ହେଲା ? ତେବେ କଅଣ ବିଜ୍ଞାନ ଓଲଟି ଗଲା ? ଆମେରିକାର ରାଷ୍ଟ୍ରପତି ଓ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ପ୍ରଥମେ ଏକଥା ଜାଣି ପାରିଲେ । ସେମାନେ ସାରା ପୃଥିବୀକୁ ଏ ଦୁଃଖଦ ଘଟଣା ଜଣେଇଦେଲେ । ଗୋଟିଏ ମେସେଜ୍ ଜରିଆରେ ସେମାନେ କହିଲେ, ଆମର ପରମବନ୍ଧୁ ଭାରତବର୍ଷ ଏକ ଅସ୍ୱାଭାବିକ ବିସ୍ଫୋରଣରେ ସମ୍ପୂର୍ଣ୍ଣ ଲୋପ ପାଇଛି । ଆମେ ଏଥିପାଇଁ ମର୍ମାହତ । ମେସେଜ୍‌ରେ ଏକଥା ମଧ୍ୟ ଲେଖାଥିଲା ଯେ କିନ୍ତୁ ଏଥିପାଇଁ ପୃଥିବୀର ଅନ୍ୟାନ୍ୟ ଦେଶମାନେ ଭୟ କରିବାର କିଛି କାରଣ ନାହିଁ । ଆମେ କାରଣ ସମ୍ପର୍କରେ ଅନୁସନ୍ଧାନ କରୁଛୁ । ମେସେଜ୍‌ରେ ଶେଷ ଭାଗରେ ଯାହା ଥିଲା ତା'ର ସାରାଂଶ ହେଲା ଏ ଘଟଣା ପଛରେ କିଛି ସନ୍ତ୍ରାସବାଦୀ ହାତ ଅଛି କି ନା ଆମେ ଖୁବ୍ ଶୀଘ୍ର ଜଣେଇବୁ । ଯଦି ଥାଏ ତା'ର ମୂଳୋତ୍ପାଟନ ନ ହେବାଯାଏ ଆମେ ଜଳ ସୁଦ୍ଧା ସ୍ପର୍ଶ କରିବୁ ନାହିଁ ।

ତଦନ୍ତ ସଂଗେ ସଂଗେ ଆରମ୍ଭ ହେଲା । ଆମେରିକା ଓ ଇଂଲଣ୍ଡର ଯୁଗ୍ମ ଅନୁସନ୍ଧାନକାରୀ ଉଡ଼ାଜାହାଜ ଭାରତବର୍ଷ ଆକାଶରେ ଚକ୍କର କାଟିଲା । ସେମାନେ କାଶ୍ମୀର ଠାରୁ କୁମାରୀକା ଓ ନାଗାଲାଣ୍ଡଠାରୁ ନାସିକ୍‌ଯାଏ ସବୁଠି

ବୁଲିଲେ । ବାରମ୍ବାର ବୁଲିଲେ ଏବଂ ଦେଖିଲେ ଯେ କୋଉଠି ମାଟିତଳେ ମଧ ଜୀବର ସନ୍ଧାନ ନାହିଁ । ସବୁଠି ଶ୍ମଶାନର ରାଜତ୍ୱ । ଆମେରିକାର ରାଷ୍ଟ୍ରପତି ତାଙ୍କ କଣ୍ଟ୍ରୋଲ ରୁମ୍‌ରେ ପ୍ରତି ମିନିଟ୍ ଓ ପ୍ରତି ସେକେଣ୍ଡରେ ଆସୁଥିବା ଖବରକୁ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଥିଲେ ।

"କିନ୍ତୁ..."

"କିନ୍ତୁ କଅଣ ?" ରାଷ୍ଟ୍ରପତି ଅନୁସନ୍ଧାନକାରୀ ବୈଜ୍ଞାନିକଙ୍କୁ ରେଡିଓ ଫୋନ୍‌ରେ ପ୍ରଶ୍ନ କଲେ ।

"ଦିଲ୍ଲୀର ପାର୍ଲାମେଣ୍ଟ ଭବନ ଭିତରେ କିଛି ଲୋକ ଜୀବିତ ଥିବାର ଜଣାଯାଉଛି । ସେମାନେ ବେଶ୍ ହସଖୁସିରେ ଅଛନ୍ତି ବୋଲି ମନେ ହେଉଛି । ଭବନ ଭିତରକୁ ଶବ୍ଦ ପ୍ରବେଶ କରି ପାରୁ ନଥିବାରୁ ଏହା ସମ୍ଭବ ହେଇଛି ।"

"ଆଶ୍ଚର୍ଯ୍ୟ । ଏହା କିପରି ସମ୍ଭବ ହେଲା ? ଏତେ ବଡ଼ ବିସ୍ଫୋରଣର କାରଣ ସମ୍ପର୍କରେ ଅନୁସନ୍ଧାନ କଲ ?" ରାଷ୍ଟ୍ରପତି ପଚାରିଲେ ।

"ସେସବୁ ହୋଇସାରିଛି । ମିଳିଥିବା ପ୍ରମାଣରୁ ଆମେ ଏଇ ସିଦ୍ଧାନ୍ତରେ ଉପନୀତ ହୋଇଛୁ ଯେ ଭାରତବର୍ଷର୍ କୋଉଠି ଆଉ ଇଞ୍ଚେ ବୋଲି ଜାଗା ଖାଲି ନାହିଁ । ସବୁଠି ଗୋଟିଏ ଗୋଟିଏ ମନ୍ଦିର, ଦେବାଳୟ ବା ପ୍ରାର୍ଥନାଗୃହ । ପୂଜାର୍ଚ୍ଚନା ଧୂମ୍ ଚାଲେ । ଢୋଲ; ମାଦଳ, ମୃଦଙ୍ଗ ଓ ଶଙ୍ଖ ନାଦରେ ସମଗ୍ର ଆକାଶ କମ୍ପିଯାଏ । ସେସବୁ ଯଦି ଏକସଙ୍ଗେ ବାଜିଥିବା ତେବେ ସେଇ ଶବ୍ଦରୁ ଏ ବିସ୍ଫୋରଣ ସୃଷ୍ଟି ହୋଇଛି ବୋଲି ମନେ ହେଉଛି ।"

ଆଶ୍ଚର୍ଯ୍ୟ ହେଲେ ରାଷ୍ଟ୍ରପତି । "ଏମିତି କଅଣ ହେଇପାରେ ? ଧର୍ମ ମଣିଷକୁ ବଞ୍ଚାଏ ନା ମାରେ ?"

ରାଷ୍ଟ୍ରପତି ମହୋଦୟ ଗୋଟିଏ ସତନ୍ତ୍ର ଚାନେଲ୍ ଜରିଆରେ ପାର୍ଲାମେଣ୍ଟ ଭବନକୁ ଦେଶର ଅବସ୍ଥା କଥା ଜଣେଇ ଦେଲେ । ସେମାନେ ସେଯାଏ କିଛି ଜାଣି ନଥିଲେ । ମାନ୍ୟବର ସଦସ୍ୟମାନେ କଥାଶୁଣି ଥମ୍ ହୋଇ ବସିଗଲେ । ଜଣେ ସଦସ୍ୟ ହଠାତ୍ ପ୍ରଶ୍ନ କଲେ, ଏବେ କଅଣ ହେବ ? ଆମେ ଆମ ନିର୍ବାଚନ ମଣ୍ଡଳୀକୁ ଯିବା କେମିତି ?

ଟ୍ରେଜେରୀ ବେଞ୍ଚ ଆଡ଼େ କେହି ଜଣେ ଠିଆ ହେଲେ ଏବଂ ହସି ହସି କହିଲେ, ଆଉ ଚିନ୍ତା ନାହିଁ । କୁଆଡ଼କୁ ଯିବା ଦରକାର ନାହିଁ । ଆମେ ଏଇଠି ଅନିର୍ଦ୍ଦିଷ୍ଟ କାଳ ଯାଏ ଆରାମରେ ରହି ପାରିବା । ଆମକୁ ଆଉ କେହି ଡିଷ୍ଟର୍ବ କରିବେ ନାହିଁ ।

(ପ୍ରଜାତନ୍ତ୍ର - ୧୦.୧.୨୦୦୪)

***

# କରିସ୍ମା

ଏଇ କେତେଦିନ ହେଲା ଦେଖୁଛି ମୋ ସ୍ତ୍ରୀଙ୍କ ମୁହଁଟା ସବୁବେଳେ ଆଷାଢ଼ର ପ୍ରଥମ ମେଘ ପରି ଗମ୍ଭୀର ହେଇ ରହିଚି । ହେଇ ବରଷିବ କି ? କିନ୍ତୁ ବରଷୁ ନାହିଁ । ମୋତେ ବଡ଼ ବେଜାର ଲାଗୁଥାଏ । ଲାଗିବାର କଥା । ଘରେ ଆମେ ଦୁଇ ପ୍ରାଣୀ । ବିବାହର ଦଶ କଟିଗଲାଣି । ପିଲାପିଲି ନାହିଁ । ହେବାର ଉପକ୍ରମ ମଧ ନାହିଁ । ତେଣୁ ସାଇ ପଡ଼ିଶାଙ୍କ ସହ ମଧ ଆମର ସମ୍ପର୍କ ସେମିତି ଭଲ ନାହିଁ । ନାହିଁ ମାନେ, ସେମାନେ ଆମ ଘରକୁ ପ୍ରାୟ ଆସନ୍ତି ନାହିଁ । ଆମେ ଅବଶ୍ୟ କଥା ଛଳରେ ଅନେକ ଥର ସେମାନଙ୍କୁ ଆଜିର ଏ ବିଜ୍ଞାନ ଯୁଗରେ କୌଣସି ଅନ୍ଧବିଶ୍ୱାସକୁ ପ୍ରଶ୍ରୟ ଦେବା ଉଚିତ୍ ନୁହେଁ ବୋଲି କହିଥାଉ । କିନ୍ତୁ ଯେତେ କହିଲେ କଣ ହେବ ? ଯେତେ ଜଣେ ପାଠ ପଢ଼ିଥିଲେ କଅଣ ହେବ ? ଅନ୍ଧ ବିଶ୍ୱାସଟା ଯେମିତି ଜନ୍ମରୁ ଆମ ଅସ୍ଥି ମଜାଗତ । ତାକୁ ଦୂର କରିବ କିଏ ?

ସେମିତି କିଛି ହେଲା କି ଆଉ ? କେହି କିଛି କହି ଦେଲା କି ? ଆଃ, ତାକୁ ମୁଁ କଅଣ କରି ପାରିବି ? ମୁଁ ତ ଆଉ କାହା ମୁହଁରେ ବାଡ଼ବତା ଦେଇ ପାରିବିନି । ଆଜିକାଲି ବିଜ୍ଞାନ ଯୁଗରେ ସବୁ ସମ୍ଭବ । ବ୍ୟାଙ୍କରେ ଥୁଆ ହୋଇଛି । ଖାଲି ଡାକ୍ତରଙ୍କ ପାଖକୁ ଗଲେ ହେଲା । ଏଇଟା ତ ଆଉ ସାଧୁ ସନ୍ୟାସୀଙ୍କୁ ଯୁଗ ନୁହେଁ, କିମ୍ବା ପୁରାଣର ଯୁଗ ମଧ ନୁହେଁ । ଏବର ବିଜ୍ଞାନ ଯୁଗରେ ସେ ସବୁ ପ୍ରଣାଳୀକୁ ମଡର୍ଣ୍ଣାଇଜଡ୍ କରି ଦିଆଯାଇଛି । ତୋଗାଡ଼ିଆ ନଚେତ୍ ବାଜପେୟୀ ଯାହା ଚାହିଁବ । କ୍ଲୋନିଂରେ ସବୁ ସମ୍ଭବ ।

କଥାଟା ଥିଲା ଅତି ସାଧାରଣ । ଏଇ କେଇଦିନ ତଳର କଥା । ଦୀର୍ଘ ତିନିଦିନ କାଳ ଦହି ନ ବସିବାରୁ ସେ ସେଦିନ ସକାଳଟାରେ ମୋ ଉପରକୁ ଚିହିଁକି ଆସି କହିଲେ "ତୁମେ କି କ୍ଷୀର ଆଣୁଚ ? ଦହି ଟିକେ ବି ବସୁ ନାହିଁ ।

ତୁମେ ନିହାତି ଅପାରଗ ମଣିଷ ନ ହୋଇଥିଲେ ତୁମ ହାତରେ ଆସୁଥିବା ଦୁଧ ଦହିଟିକେ ବି ହୁଅନ୍ତା ନାହିଁ ?"

ମୁଁ ତାଙ୍କ ଆପେକ୍ଷଟା ବୁଝି ପାରୁଥିଲି । କଥାଟା ବଡ଼ ବାଧିଲା । ଏବେତ ଆଉ ଗୋଆଲାମାନଙ୍କୁ ବିଶ୍ୱାସ କରି ହୁଏ ନାହିଁ ବୋଲି ମୁଁ ଓମ୍‌ଫେଡ୍‌ରୁ କ୍ଷୀର ଆଣେ । କଥା ବାଧିଲେ ମୁଁ ରାଗି ଯାଏ । ବିଶେଷ କରି ତାଙ୍କର ମୋ ପ୍ରତି ଆକ୍ଷେପୋକ୍ତିକୁ ମୁଁ ସହ୍ୟ କରି ପାରିଲି ନାହିଁ । ମୁଁ ବିରକ୍ତ ହେଇ କହିଲି, ଦହି ମୋ ଦ୍ୱାରା ଆସିଥିବାରୁ ବସି ନାହିଁ ନୁହଁ, ତୁମେ ବସାଇ ଜାଣୁନ କୁହ ।

ସେ ଆହୁରି ରାଗିଗଲେ । କ୍ଷୀର ଡେକଚିଟିକୁ ମୋ ସାମନାରେ ଥୋଇ ଦେଇ କହିଲେ, "କେମିତି କାବୁଆ ପୁରୁଷଟାଏ, ଥରେ ଦହି ବସେଇ ଦେଖେଇ ଦିଅ ।"

ମୋ ମୁହଁ କଳାକାଠ ପଡ଼ିଗଲା । ଜାଣୁ ଜାଣୁ ବିପଦଟାକୁ ଡାକି ଆଣିଲି । ଏବେ ଆଉ କି ଉପାୟ ଅଛି ? ପୁରୁଷପିଲା । ଯାହା ହେଲେ ମଧ ମୁହଁଭୁରୁଡ଼ି ଛାଡ଼େ କି ? ମୁଁ ତ ରାଜନୀତି କରୁଛି ! 'ବାରବାଟୀ ଚାଷ' କେମିତି କରିବାକୁ ହୁଏ ମୁଁ ଜାଣେ । ମୁଁ ତାଙ୍କଠୁ ଆହୁରି ଜୋର୍‌ରେ କହିଲି, 'ମେଡମ୍, ମୁଁ ତୁମ ଚାଲେଞ୍ଜ ଗ୍ରହଣ କରୁଚି । ଦହି ବସୁଚି କି ନାହିଁ ଦେଖ ।'

ମୁଁ ମନ ଭିତରେ ଭୟ ଓ ଉପରେ ଭୁରୁଡ଼ି ରଖି ଡେକଚି ପାଖକୁ ଆଗେଇ ଗଲି । କ୍ଷୀରକୁ କଡ଼ମଡ଼ କରି ଚାହିଁଲି । ସତେ ଯେମିତି ମୁଁ ମନ୍ତ୍ର ପଢୁଛି । ତା'ପରେ ମୁଁ ସାମାନ୍ୟ ଉଚ୍ଚ ସ୍ୱରରେ କହିଲି, "ଏ କ୍ଷୀର ! ଦହି ବସିବୁ ଯଦି ବସ । ନଚେତ୍ ଏଇନେ ମୁଁ ତୋ ଈଶ୍ୱର ହୃଷିକେଶ ପଣ୍ଡା ପାଖକୁ ଫୋନ କରିବି ।" ବାସ୍ କଥା ଶେଷ ।

ସେଇ ଦିନଠୁ ସେ ମୋତେ ପଦେ ବି କିଛି କହି ନାହାନ୍ତି । ମୁହଁଟା ସଦା ହସ ହସ । ଆଦର ଯତ୍ନରେ ମୋତେ କାର୍ପଣ୍ୟ କରି ନାହିଁ । କିନ୍ତୁ ପୁଣି କଅଣ ହେଲା ? ପୁଣି ସେଇ ଅବସ୍ଥା । ପଚାରିବାକୁ ଏଥର ଡର ମାଡୁଥାଏ । ଆଉ ବାଜି ମାରିବିନି । ମୋ ଭିତରର ପୁରୁଷ ସିଂହଟା କେମିତି କେଜାଣି ବିଳପି ଉଠୁଥାଏ ।

ସନ୍ଧ୍ୟାବେଳେ ଚା'ପିଉ ପିଉ ସେ ପଚାରିଲେ, "ତମେ କେବେ ପୁଣି ଦିଲ୍ଲୀ ଯାଉଚ ? ମାସେ ହେଲା ତ ଯାଇନ ବୋଧେ ।"

"ନା ଯାଇନି । ସେମିତି କିଛି କାମ ପଡ଼ିନି । ଆମ ନେତା ସବୁବେଳେ କହୁଛନ୍ତି ଦଳ ଭିତରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବାକୁ ।" ମୁଁ କହିଲି ।

"ତା'ମାନେ ତୁମେ କରନ୍ତ ନାହିଁ କି ? ଶୃଙ୍ଖଳା ନ ମାନିଲେ ଦଳ କେମିତ ଚାଲିବ ? ଶୃଙ୍ଖଳା ରକ୍ଷା ପାଇଁ ମଧ ଦିଲ୍ଲୀ ଯିବାକୁ ପଡ଼େ ।"

ମୁଁ କହିଲି "ସେକଥା ଠିକ୍ । କିନ୍ତୁ ଏବେ ଦିଲ୍ଲୀରେ କିଛି କାମ ନାହିଁ ।"

ସେ ଖିଙ୍କାରି ଉଠିଲେ । "ମୁଁ ଏଇଥିପାଇଁ କହେ ତୁମେ ଗୋଟିଏ ଅପାରଗ ନେତା ।"

ମୋ କାନ ମୁଣ୍ଡ ଝାଁ ଝାଁ କଲା । ତାଙ୍କୁ କଅଣ କହିବି କିଛି ବୁଝି ପାରୁ ନଥିଲି ।

ସେ କହିଲେ, "କେତେ ଆଉ ବୁଝେଇବି ? ଯଦି କିଛି କାମନାହିଁ ତେବେ ତୁମ ନେତାଙ୍କ ବିରୁଦ୍ଧରେ ଅଭିଯୋଗ କରିବା ପାଇଁ, ମାନେ ଯେ କୌଣସି ବିଷୟରେ, ତୁମେ ଗୋଟିଏ ଡେଲିଗେସନ୍ ନେଇ ଯାଇ ପାରନ୍ତ ।" ତା'ପରେ ଟିକିଏ ନରମ୍ ଗଳାରେ କହିଲେ, "ଏଥର ସାଥିରେ ମୁଁ ଯିବି- ତାଜମହଲ ଦେଖିବାକୁ । ମତେ ନବନା ?"

(ପ୍ରଜାତନ୍ତ୍ର - ୧୨.୧୧.୨୦୦୩)

***

# ଦିନେ ସୂର୍ଯ୍ୟାସ୍ତ ପରେ

ଦିନ ଏଗାରଟା ବେଳେ ଯେତେବେଳେ ମୁଁ ଭାଇନାଙ୍କ ଘରେ ଯାଇ ପହଞ୍ଚିଲି ଦେଖିଲି ସେ ଶୋଇଛନ୍ତି । ଘରେ ଚାରିଆଡ଼କୁ ଅନେଇଲି । ଦେଖିଲି କେହି କୁଆଡ଼େ ନାହାନ୍ତି । ତେବେ ଦୂରରୁ ମନ୍ତ୍ର ପାଠର ଶବ୍ଦ ଭାସି ଆସୁଥିଲା । ବୋଧେ ଭାଉଜ ପୂଜା ଘରେ । ମୁଁ ଭାଇନାଙ୍କ ରୁମ୍ ଭିତରକୁ ପଶିଗଲି । ଯାହା ଦେଖିଲି ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । ଗତ ରାତିରେ ଘଟିଥିବା କାଣ୍ଡ କାରଖାନା ସବୁ ଏ ଯାଏ ଜୀବନ୍ତ ଛବି ପରି ଘରର ଚାରିଆଡ଼େ ଖେଳି ବୁଲୁଥିଲେ । ମାନେ ମୋର କହିବାର ଉଦ୍ଦେଶ୍ୟ ଭାଇନା ସେମିତି ଚିତ୍‌ମାତ୍ ହେଇ ଶୋଇ ଥାଆନ୍ତି । ତାଙ୍କ ଦେହକୁ ଦେଖି ହେଉ ନଥାଏ । ନିଘୋଡ଼ ନିଦରେ ଶୋଇବାର ଅବସ୍ଥା । ମୁଣ୍ଡ ପାଖ ସେଣ୍ଟର ଟେବୁଲ୍ ଉପରେ ଥିବା ଆସ୍‌ଟ୍ରେ ଉଛୁଳି ପଡ଼ିଛି । ଦୁଇଟା ଖାଲି ବୋତଲ୍ ତଳେ ଗଡୁଛି । ଗୋଟିଏ ଚୁରୁଟ୍ ଅଧା ଜଳିଛି । କିଛି ପୁଡ଼ିଆ, ମୁଁ ତା ନାଁ ଜାଣେ ନାହିଁ, ମଧ୍ୟ ଇତସ୍ତତଃ ପଡ଼ିଛି । ପାଖରେ କଠେ ବିଡ଼ି । କିଛି ଅଧା ପୋଡ଼ା ।

ଭାଇନା ଯେ ପ୍ରତିଦିନ ବାରଟାରେ ବିଛଣାରୁ ଉଠନ୍ତି ଏ କଥା ପ୍ରାୟ ସମସ୍ତେ ଜାଣନ୍ତି । ମୁଁ ତ ତାଙ୍କୁ ବହୁଦିନ ଦେଖି ଆସୁଛି । କିନ୍ତୁ ଆଜି ଦିନରେ ମଧ୍ୟ ତାଙ୍କର ଏଗାରଟା ଯାଏ ଶୋଇବାକୁ ମୁଁ ପସନ୍ଦ କରିପାରୁ ନଥିଲି । ଟିକିଏ ବୋଲି ଦାୟିତ୍ୱଜ୍ଞାନ ନାହିଁ । ଶୋଇବା ଲୋକକୁ କିଏ ଉଠେଇବ ? ଏମିତିତ ଓଡ଼ିଆମାନଙ୍କର କୁଆଡ଼େ ଶୋଇବା ସଉକ ଟିକିଏ ବେଶୀ ବୋଲି କୁହାଯାଏ । ଆଃ, ନ ଶୋଇ ସେମାନେ ଆଉ କଅଣ କରନ୍ତେ ? ଯଦି କିଛି କାମ କରିବାର ନାହିଁ ତେବେ ଶୋଇବା ବୁଦ୍ଧିମାନର କାମ । କିନ୍ତୁ ଭାଇନା କଅଣ ଶୋଇବାର ରେକର୍ଡ ଭାଙ୍ଗିବେ କି ? ମୁଁ ତାଙ୍କ ମୁଣ୍ଡ ପାଖରେ ବସିପଡ଼ି ତାଙ୍କୁ ଡାକିଲି ।, "ଭାଇନା, ଏଥର ଉଠ, ଏଗାରଟା ବାଜିଲାଣି ।"

ସେ ନିଦ ବାଉଳାରେ ଗାଁ ଗାଁ ହେଇ କହିଲେ, "ଆଃ ଆହୁରି ଘଣ୍ଟେ ବାକି ଅଛିରେ ଘନ ।"

"ତୁମକୁ ଅନେକ ଲୋକ ଅପେକ୍ଷା କରିଛନ୍ତି । ଏଇ କେଇଟା ଦିନ ଘଣ୍ଟେ ଆଗରୁ ଉଠିଲେ ଚଳିବ ନାହିଁ? କାମ ମୋଟେ ଆରମ୍ଭ ହୋଇନାହିଁ ।" ମୁଁ କହିଲି ।

"କି କାମ ?" ସେ ଆଖି ଖୋଲିଲେ ।

ମୁଁ ଭାବିଲି ଯା ହେଉ ଆଖି ଯେତେବେଳେ ଖୋଲିଲାଣି, ଆଉ ଚିନ୍ତା ନାହିଁ । ଆଉ ସେ ଆଖି ବନ୍ଦ ହେବନାହିଁ । ଜଗନ୍ନାଥଙ୍କ ଆଖି ପରି ବରାବର ଅନେଇଥିବ । କିନ୍ତୁ ଭାଇନାଙ୍କ ଆଖି ଯେ ସେ ଆଖିଠାରୁ ଭିନ୍ନ ସେ ଏ କଥା କିଏ ବୁଝିବ ? ମୁଁ ଦେଖିଲି ସେ ଆଖି ଖୋଲାଥିଲେ ମଧ ଜାଗ୍ରତ ନୁହେଁ । ସବୁ ଦେଖେ, ସବୁ ଦେଖେନି ।

ଏଥର ମୁଁ ତାଙ୍କ ମୁଣ୍ଡକୁ ଟିକିଏ ହଲେଇ ଦେଲି । କହିଲି, "କି କାମ ବୋଲି କଅଣ ପଚାରୁଚ ମ ?" ତୁମେ ପରା ନିର୍ବାଚନ ଲଢୁଛ ? ଆଉ ମାତ୍ର ଚାରିଦିନ ରହିଲା ନିର୍ବାଚନକୁ ।" ଏତିକିବେଳେ ଭାଉଜ ଭିତରକୁ ପଶି ଆସିଲେ । ମୁଁ ତାଙ୍କୁ ଦେଖି କହିଲି, "ସବୁ ନେତାଙ୍କର ନିର୍ବାଚନ ସମୟରେ ନିଦ ନଥାଏ । ଭାଇନା ଆମର ନିର୍ବାଚନ ସମୟରେ ଶୋଉଛନ୍ତି ।"

ସେ ମୋ ମୁହଁକୁ ଖାଲି ଟିକିଏ ଚାହିଁ ଦେଲେ । ତା'ପରେ କହିଲେ "ତୁମ ନିର୍ବାଚନକୁ ଲାଜ ନାହିଁ କି ତୁମ ନେତାଙ୍କୁ ବି ଲାଜ ନାହିଁ ।" ସେ ଚାଲିଗଲେ ।

ଏଥର ଭାଇନା କର ଲେଉଟାଇଲେ । ପଚାରିଲେ, "କଅଣ କହିଲୁ ? ନିର୍ବାଚନ ? ତା'ପରେ ଗର ଗର ହେଇ କହିଲେ "ବେ ଶଳା ନିର୍ବାଚନ ହେଲା ବୋଲି କଅଣ ଶୋଇବି ନାହିଁ ?"

ମୋତେ ଟିକିଏ ଖରାପ ଲାଗିଲା । ନିଦ ବାଉଳାରେ କି ମଦ ବାଉଳାରେ 'ଶଳା' ବୋଲି କହିଲେ ମୁଁ ବୁଝି ପାରୁ ନଥିଲି । ଟିକିଏ ରହି ମୁଁ ପୁଣି କହିଲି ତୁମେ କାହାକୁ କି କଥା କହୁଚ ଭାଇନା ? ତମର ହୋସ୍ ରହୁନି ?

ସେ ସେମିତି ଆଖି ବୁଜି କହିଲେ, "ଧେତ୍ ନିର୍ବାଚନ ବେଳେ ସେମିତି କୁହାଯାଏ ବୁଝିଲୁ ? ଭାଇ କୁ ଶଳା, ଶଳା କୁ ଭାଇ ।"

ମୁଁ ବା ତାଙ୍କ କଥାର କି ଉତ୍ତର ଦେବି ?

ସେ ପୁଣି ଥରେ କହିଲେ । ଆଖି ସେମିତି ବନ୍ଦ ଥାଏ । "ତୁ କାହିଁକି ବ୍ୟସ୍ତ ହେଉଛୁ କହିଲୁ ? ଆଉ ଚାରିଦିନ ପରେ ଭୋଟ୍ । ମୁଁ ସେକଥା ଜାଣିନାହିଁ ? ତୁ ଯାଆ ଚାରିଦିନ ପରେ ଆସିବୁ । ଏଇବେଳେ ନୁହେଁ ସନ୍ଧ୍ୟାବେଳେ । ବୁଝିଲୁ ?"

ମୁଁ ଦେଖିଲି ତାଙ୍କ ସହିତ ଆଉ କଥାବାର୍ତ୍ତା କରିବା ବୃଥା । ତେଣୁ ଉଠିବାବେଳେ କହିଲି, "ଏ ସୁଟ୍‌କେଶ୍‌ଟା ଏଇଠି ରଖିଯାଉଛି ।"

"କୋଉ ସୁଟ୍‌କେଶ୍? ମୁଁ ନେଇ କଅଣ କରିବି?" ପୁଣି ତାଙ୍କ ନାକ ଡାକିଲା ।

ଚାରିଦିନ ପରେ ମୁଁ ଯେତେବେଳେ ସୂର୍ଯ୍ୟାସ୍ତ ବେଳକୁ ଯାଇ ତାଙ୍କ ଘରେ ପହଞ୍ଚିଲି ଦେଖିଲି ପ୍ରବଳ ଭିଡ଼ । 'ରାଜୁ ଭାଯ୍ୟା ଜିନ୍ଦାବାଦ' ଧ୍ୱନିରେ ଗଗନ ପବନ କମ୍ପୁଛି । ମୁଁ ଆଶ୍ଚର୍ଯ୍ୟ ହେଲି । ଆରେ ୟା ଭିତରେ ଏତେ କଥା ହେଇ ସାରିଲାଣି? ସେ ଦିନ ତାଙ୍କ କଥା ଯାହା ଦେଖିଥିଲି ସେଥିରେ ସାମ୍ଭବ୍ୟ ଫଳାଫଳ କଥା ଚିନ୍ତା କରି ମୁଁ ମଧ ନିଶ୍ଚିନ୍ତରେ ଘରେ ରହିଗଲି । ମୁଁ ଘର ଭିତରକୁ ପଶିଗଲି । ଭିତରକୁ କଅଣ ପଶି ହଉଛି କି? ଏତିକି ବି ଭିଡ଼? ଅନେକ କଷ୍ଟରେ ଭିତରକୁ ଯାଇ ଦେଖିଲି ଭାଇନା ଖଟ ଉପରେ ଲୁଙ୍ଗି ପିନ୍ଧି ଖାଲି ଦେହରେ ଚକା ପକେଇ ବସିଛନ୍ତି । ଦୁଇ ହାତରେ ଦୁଇଟା ମୋବାଇଲ । ଆଉ ଗୋଟିଏ ଆଗରେ ତକିଆ ଉପରେ ପଡ଼ି ଦପ୍ ଦପ୍ କରୁଚି ।

"ଆ ଘନ ଆ । ମୁଁ ତୋତେଇ ଏ ଯାଏ ଅପେକ୍ଷା କରିଥିଲି । ବସ୍ ।"

ମୁଁ କହିଲି, "ଭାଇନା! କଅଣ ସବୁ ଏତେ କଥା ହେଇ ଗଲାଣି? ମୁଁ ତ କିଛି ବୁଝି ପାରୁନି?" ସେ ହସିଲେ, କହିଲେ, "ଭାରତୀୟ ରାଜନୀତିକୁ ବୁଝିବା କଅଣ ଏତେ ସହଜ ହେଇଛି କିରେ? ତୁ ଜାଣୁ, ଅନ୍ୟ ସମସ୍ତଙ୍କର ଅମାନତ ଉଡ଼ି ଯାଇଛି ।

"ତୁମେ କଅଣ କହୁଛ?" ମୁଁ ହାଁ କରି ତାଙ୍କୁ ଅନେଇ ରହିଲି । ତକିଆ ଉପରେ ପଡ଼ିଥିବା ମୋବାଇଲ୍‌ଟି ଏଥର ଗୀତ ଗାଇ ଉଠିଲା । ସେ ସେଇଟିକୁ ଉଠେଇ ନେଲେ ଏବଂ କହିଲେ, "ଟିକେ ରହ, ଶେଷ ଖବର ଆସୁଛି ।"

ସେ କଥା ହେଲେ, ମୁଁ ଶୁଣୁଥାଏ । କିନ୍ତୁ କିଛି ବୁଝି ପାରୁନଥାଏ ।

ସେ ମୋବାଇଲ୍ ଥୋଇଲେ ଏବଂ କହିଲେ, "ବୁଝିଲୁ ପାର୍ଟି ଅଫିସରୁ ଖବର ଆସିଲା । ମୋ ସପକ୍ଷରେ ୪୬ ଜଣ ବିଧାୟକ । ମୁଖ୍ୟମନ୍ତ୍ରୀଙ୍କର ମଧ ଏତେ ନାହିଁ ।" ସେ ଖୁବ୍ ଜୋରରେ ହସି ଉଠିଲେ ।

"ତେବେ କଅଣ ହେବ?" ମୁଁ ଆନନ୍ଦରେ କୁରୁଳି ଉଠିଲି ।

"କଅଣ ହେବ ଆଉ? ସେ ମୁଖ୍ୟମନ୍ତ୍ରୀ ହୁଅନ୍ତୁ । ମୁଁ ତ ଆଗରୁ କହି ଦେଇଛି ମୋର କେବଳ ଅବକାରୀ ବିଭାଗଟା ଲୋଡ଼ା ।"

(ପ୍ରଜାତନ୍ତ୍ର - ୨୯.୯.୨୦୦୩)

***

# ଅନୁସନ୍ଧାନ ଅଣୁବୀକ୍ଷଣରେ

ପ୍ରଧାନମନ୍ତ୍ରୀ ଦରଖାସ୍ତଟିକୁ ଦେଖି ଗୁମ୍ ମାରି ବସିଗଲେ । ସେ ତ ତାଙ୍କର ଦୀର୍ଘ ଦିନର ରାଜନୈତିକ ଅଭିଜ୍ଞତା ଓ ଗତ କେତେ ବର୍ଷର ପ୍ରଧାନମନ୍ତ୍ରୀତ୍ୱ ଭିତରେ ବହୁ ସିକ୍ରେଟ୍ ଓ ଟପ୍ ସିକ୍ରେଟ୍ ଚିଠି, ଆବେଦନ ଓ ଅଭିଯୋଗ ଦେଖିଛନ୍ତି । ତାଙ୍କ ଅଧୀନରେ ବହୁ ବିଭାଗ ଅଛି ଯାହା ଅତ୍ୟନ୍ତ ଗୋପନୀୟ । ସେ ସବୁ ଫାଇଲ ଓ କାଗଜପତ୍ର ଯେତେ ଗୋପନୀୟ ହୋଇଥିଲେ ମଧ୍ୟ ସେ ଦେଖନ୍ତୁ ଏବଂ ଯାହା ଲେଖିବାର କଥା ଲେଖି ସାରିଲା ପରେ ତାଙ୍କର ଗୋପନୀୟ ବିଭାଗକୁ ପଠାଇ ଦିଅନ୍ତି । ସେ ସେକ୍ସନ୍ ଯାହା କରିବାର କଥା କରନ୍ତି । କିନ୍ତୁ ଏ କାଗଜଟିରେ ଏତେ ବେଶୀ ଗୋପନୀୟତା ରକ୍ଷା କରିବାକୁ କୁହାଯାଇଛି ଯେ, ଯୋଉଥିରୁ ପ୍ରଧାନମନ୍ତ୍ରୀଙ୍କ ଧାରଣା ହେଲା ଯେ, ପତ୍ର ପ୍ରେରକ ଚାହୁଁ ନାହାନ୍ତି ପ୍ରଧାନମନ୍ତ୍ରୀ ନିଜେ ସବୁ କଥା ଜାଣନ୍ତୁ । ସେ ଭାବିଲେ ତେବେ କଅଣ ପତ୍ର ପ୍ରେରକ ପ୍ରଧାନମନ୍ତ୍ରୀଙ୍କୁ ମଧ୍ୟ ବିଶ୍ୱାସ କରୁ ନାହାନ୍ତି ?

ପ୍ରଧାନମନ୍ତ୍ରୀଙ୍କୁ ଅବଶ୍ୟ ମୋଟେ ସମୟ ନଥାଏ ଚିଠିର ଆମୂଳଚୂଳ ପଢ଼ିବା ପାଇଁ । ବଡ଼ ବଡ଼ ଅଫିସରଙ୍କ ଠାରୁ ମନ୍ତ୍ରୀଯାଏ ସମସ୍ତେ ଏଇ ଧାରାରେ ଗତି କରନ୍ତି । ଏହାହିଁ ନିୟମ । ଖୁବ୍ ବେଶୀରେ ଶେଷ ଅଂଶ ବା ଶେଷ ଧାଡ଼ିଟି ପଢ଼ି ମନ୍ତବ୍ୟ ଲେଖନ୍ତି । ପ୍ରଧାନମନ୍ତ୍ରୀ ଆଉ ଥରେ ଶେଷ ଧାଡ଼ିଟି ଉପରେ ନଜର ପକାଇଲେ । ସେଥିରେ ଲେଖାଅଛି, "ଆପଣଙ୍କୁ ଈଶ୍ୱରଙ୍କ ରାଣ, ଆପଣ ଏଇଠୁ ତଳକୁ ପଢ଼ିବେ, କିନ୍ତୁ ଉପରକୁ ପଢ଼ିବେ ନାହିଁ । ଦେଶର ସ୍ୱାର୍ଥ ଦୃଷ୍ଟିରୁ ତାହା ଏକଦମ୍ ଗୋପନୀୟ ।"

ପ୍ରଧାନମନ୍ତ୍ରୀ ଈଶ୍ୱରଙ୍କୁ ବହୁତ ମାନନ୍ତି । ଠାକୁରଙ୍କ ଠାରେ ତାଙ୍କର ପ୍ରଗାଢ଼ ଭକ୍ତି । 'ଈଶ୍ୱରଙ୍କ ରାଣ' ଶବ୍ଦ ଦୁଇଟି ଦେଖିଲା ପରେ ସେ ନିଜେ ମଧ୍ୟ ଦୁର୍ବଳ ହେଇ ପଡ଼ିଲେ । ସେ ତଳ ପହାଚରୁ ଉପରକୁ ଉଠୁଥିବା ଲୋକକୁ ପଛରୁ ଟାଣି ଧରିବା ପରି ସେଇ ଧାଡ଼ିକୁ ଉପରକୁ ଚଢ଼ିବାକୁ ବାରମ୍ବାର ଚେଷ୍ଟା କରୁଥିବା

ନିଜ ଆଖିକୁ ବାରମ୍ବାର ତଳକୁ ଟାଣୁଥିଲେ । ଶେଷରେ ସେ ଧର୍ମଦ୍ରୋହୀ ନ ହେବା ଆଶାରେ ନିଜକୁ ସେଥିରୁ କ୍ଷାନ୍ତ କରିବା ପାଇଁ ଆଖିରୁ ଚଷମାକାଢ଼ି ଖୋଲି ଟେବୁଲ୍ ଉପରେ ରଖିଦେଲେ ।

ଅର୍ଦ୍ଦଳି ପ୍ରବେଶ କଲା ଏବଂ କହିଲା, "ସେ ନିଜେ ଆସିଛନ୍ତି ହଜୁର । କିଛି ଗୋପନ କଥା ଆପଣଙ୍କୁ ଜଣେଇବେ । ସେ ଅନ୍ୟ କାହାକୁ ଏକଥା କହିବେ ନାହିଁ । ମୁଣ୍ଡ କଟିଗଲେ ମଧ ନୁହେଁ ।"

ସେ ଆସିଲେ ଏବଂ ଚିରାଚରିତ ପ୍ରଥାରେ ସେଲ୍ୟୁଟ ମାରି ଠିଆ ହେଲେ । ପ୍ରଧାନମନ୍ତ୍ରୀ କହିଲେ, 'ବସ ।" ସେ ଆସନ ଦେଖେଇ ଦେଲେ । ପୁଲିସ୍‌ବାବୁ ତାଙ୍କ ଡିପାର୍ଟମେଣ୍ଟର ଆଦବ କାଇଦା ଅନୁସାରେ ବସିଲେ । ହାତ ଦୁଇଟାକୁ ମୁଠା କରି ସିଧା ଆଣ୍ଠୁ ଉପରେ ରଖିଲେ । "କି ଗୋପନ ତଥ୍ୟ ତୁମ ପାଖରେ ଅଛି ?"

"ଦେଶଦ୍ରୋହ ସାର୍ । ଜଘନ୍ୟ ଅପରାଧ । ତାକୁ ମୋତେ ସହ୍ୟ କରାଯାଇ ନ ପାରେ । ମୁଁ ଆଦେଶ ପାଇଲାମାତ୍ରେ ଯିବି, ଆରେଷ୍ଟ କରି ନେଇ ଆସିବି ।"

"କିନ୍ତୁ କାହାକୁ ଆରେଷ୍ଟ କରିବ ?"

"କହିବି ? ନା କହିବି ନାହିଁ । କି ବିଶ୍ୱାସ, ଆପଣ ଯେ ଡିସ୍‌କ୍ଲୋଜ କରିଦେବେ ନାହିଁ ?" ସେ ଚମକି ପଡ଼ିଲେ । ଜିଭ କାମୁଡ଼ି ପକେଇ କହିଲେ, "ପୁଲିସି ପାଟିଟା ମୂଳରୁ ଖରାପ ହେଇ ଯାଇଛି । କାନ ମୋଡ଼ି ହଉଚି ।"

"ହଉ ଏଥର କୁହ । ମୋତେ ବିଶ୍ୱାସ କର । ମୁଁ କାହାକୁ କହିବି ନାହିଁ ।" ପ୍ରଧାନମନ୍ତ୍ରୀ ମନେ ମନେ ହସିବାକୁ ଲାଗିଲେ । କାମର ପ୍ରବଳ ଚାପରୁ ରକ୍ଷା ପାଇବା ପାଇଁ ସେ ବେଳେ ବେଳେ ଏମିତି ନିଜ କର୍ମଚାରୀଙ୍କ ସହିତ ମଧୁର କଥାବାର୍ତ୍ତା କରନ୍ତି । ଏହାହିଁ ତାଙ୍କୁ ପ୍ରିୟ ପ୍ରଧାନମନ୍ତ୍ରୀ ହିସାବରେ ପରିଚିତ କରାଇଛି ।

"ମୁଁ ସବୁ ସାକ୍ଷୀ ପ୍ରମାଣ ସଂଗ୍ରହ କରି ସାରିଛି । ସାକ୍ଷୀକୁ ମଧ ଥାନାରେ ଅଟକାଇ ରଖିଛି । ମୁଁ ତାକୁ 'ପୋଟା'ରେ ଆରେଷ୍ଟ କରି ଠୁଙ୍କି ଦେବି । ପୁଅ ସେଇଠି ବୁଝୁଥିବ । ମୋତେ ଖାଲି ଅନୁମତି ଦିଅନ୍ତୁ ।"

"କିନ୍ତୁ ତୁମେ ଅପରାଧଟା କଅଣ ଓ ଅପରାଧି କିଏ ସେ କଥା ଏଯାଏ କହୁନ ଯେ ?"

ପୁଲିସ୍ ଅଫିସର୍ ଚାରିଆଡ଼କୁ ସତର୍କ ଦୃଷ୍ଟିରେ ଦେଖିଲେ । ପ୍ରଧାନମନ୍ତ୍ରୀ କହିଲେ, "ଏଠି କେହି ନାହିଁ । ନିର୍ଭୟରେ କୁହ ।

"ସାର୍ ! ବମ୍ବେରେ ଯୋଉ ବମ୍ ବ୍ଲାଷ୍ଟ୍ ହେଲା, ଏତେ ଲୋକ ମଲେ...."

ପ୍ରଧାନମନ୍ତ୍ରୀ ଆଶ୍ଚର୍ଯ୍ୟ ହେଲେ । ସେ ତ ଏଯାଏ କଥାଟାକୁ ଥଙ୍ଗା ମଣୁଥିଲେ । ସେ ପଚାରିଲେ, "ତୁମେ ଜାଣିଚ ସେ କାମ କାହାର ?" ସେ ଉତ୍ସୁକତାର ସହିତ ଅନାଇ ରହିଲେ ।

"ଜାଣିଚି ମାନେ ? ନାସିକ୍ କୁମ୍ଭମେଳାରେ ଯାହା ହେଲା ଏବଂ ୟୁପିରେ ଯୋଉ ପଲିଟିକାଲ ଟ୍ରାଜେଡି ହେଲା - ସବୁ ତଥ୍ୟ ମୋ ପକେଟ୍‌ରେ ।"

"ତୁମେ କଅଣ କହୁଚ ମୁଁ ତ ବୁଝି ପାରୁ ନାହିଁ ?" ପୁଲିସ୍‌ବାବୁ ଟେବୁଲ ଉପରକୁ ଝୁଙ୍କିଆସି କହିଲେ, "ସବୁ କାମ ସେଇ ବଦମାସ୍ ମଙ୍ଗଳ ଗ୍ରହର । ମୁଁ ତାକୁ ଛାଡ଼ିବି ନାହିଁ । ଆଣିବି ଜ୍ୟୋତିଷକୁ ?"

(ପ୍ରଜାତନ୍ତ୍ର - ୬.୯.୨୦୦୩)

***

# ବଟି

ସେଦିନ ମନ୍ତ୍ରୀ ମହୋଦୟ ଯେତେବେଳେ ଜାଣିଲେ ଯେ, ରାଜ୍ୟରେ ବଟି ଦିଆନିଆ ଚାଲିଚି ସେ ବଡ଼ ଚିନ୍ତିତ ହୋଇପଡ଼ିଲେ । ତାଙ୍କୁ କିଏ କହିଲା ରାଜ୍ୟରେ ବଟି କାରବାର ଅତି ଦ୍ରୁତ ଗତିରେ ବୃଦ୍ଧି ପାଉଛି । ସେ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ବଟି, ଏଠି ସେଠି ସବୁଠି ତା'ର କାର୍ଯ୍ୟବିସ୍ତାର କରି ରହିଛି ; ଅଥଚ ସେ ମୋଟେ ଜାଣିନାହାନ୍ତି ଏହା କିପରି ସମ୍ଭବ ? ସେ ଭାବିଲେ ସେ ତ ରାଜ୍ୟଯାକ ବୁଲୁଛନ୍ତି, ବର୍ଷରେ ୩୬୦ ଦିନ ତାଙ୍କର ଟୋରରେ କେଟେ ବୋଲି ଏଥର 'ଅଲଇଣ୍ଡିଆ ଟୋର ଆଣ୍ଡ ଟ୍ରାଭେଲ୍ ଆସୋସିଏସନ୍' ତାଙ୍କୁ ରୂପାର ହାତୀ ଦେଇ ସମ୍ମାନୀତ କରିଛି । କିନ୍ତୁ କାହିଁ ବଟି କଥା ସେ କେବେ ଶୁଣିନାହାନ୍ତି । ତା' ନାଁ ମଧ କେହି ଉଚ୍ଚାରଣ କରିବାର ଶୁଣିନାହାନ୍ତି । ତେବେ କ'ଣ ବଟି ଛଦ୍ମ ବେଶରେ ବୁଲୁଛି ?

ତାଙ୍କର ଚିନ୍ତା ପଡ଼ିଲା, ଯଦି ମୁଖ୍ୟମନ୍ତ୍ରୀ କେବେ ବଟି କଥା ପଚାରିଦିଅନ୍ତି ସେ କ'ଣ କହିବେ ? ତାଙ୍କର ଅପାରଗପଣିଆ ସେଇଠି ଧରାପଡ଼ିବ ନାହିଁ ? ମନ୍ତ୍ରୀ ମହୋଦୟ ତାଙ୍କ ସେକ୍ରେଟାରୀକୁ ଡକେଇଲେ । କହିଲେ ହଇଓ ବାବୁ ! ଆରାମରେ ଏଆର୍‌କଣ୍ଡିସନ୍ ରୁମ୍‌ରେ ବସିଛ । ତମ ଆଖି ଆଗରେ ବଟି ଚଳପ୍ରଚଳ ହେଉଛି ତମେ ତାକୁ ଦେଖି ପାରୁନ ?

ସେକ୍ରେଟାରୀ ଆଶ୍ଚର୍ଯ୍ୟ ହେଲେ । କହିଲେ ସାର୍ ଆପଣଙ୍କୁ ଭୁଲ କଥା କେହି କହିଛି । ମୋର ସାକ୍ଷାତକାର ସମୟରେ ବଟି ମୋଟେ ଆସିନାହିଁ । ତା'ର କ'ଣ ଗ୍ରୀଭାନ୍ସ ଅଛି, ସେ କଥା ମଧ ମୁଁ ଜାଣେ ନାହିଁ । ସେ ମେନ୍‌ଗେଟ୍‌କୁ ଟେଲିଫୋନ କଲେ । ପଚାରିଲେ, ଗତ ମାସେ ଦି'ମାସ ଭିତରେ ବଟିକୁ ତମେ ପାସ୍ ଦେଇଛ କି ? ମନ୍ତ୍ରୀ କହିଲେ, ତୁମେ ଦୁଇ ଚାରିଜଣ ସାମ୍ବାଦିକଙ୍କୁ ଏ ବିଷୟରେ ପଚାରିଲ । ସେମାନେ ହୁଏତ ଜାଣିଥିବେ । ଦୁନିଆର ଏତେ କଥା ଜାଣୁଛନ୍ତି, ବଟି କଥା ଜାଣୁନଥିବେ ? ତେବେ ବଟି ଯଦି ତା'ର କାର୍ଯ୍ୟ

ବଦଳାଉଥିବ ଅର୍ଥାତ କେତେବେଳେ କାଗଜ ପରି ଆଉ କେତେବେଳେ ଗୋଲାକାର ଧାତୁରେ ପରିଣତ ହେଉଥିବ ତେବେ ଜାଣିବା ମୁସ୍କିଲ ।

ସେକ୍ରେଟାରୀ ଜଣେ ଦି'ଜଣଙ୍କୁ ନ ଡାକି ଗୋଟେପୁରା ପ୍ରେସ୍ କନ୍‌ଫରେନ୍ସ ଡାକିଦେଲେ । ହଲ ଭର୍ତ୍ତୀ ମାଇକ୍‌ରେ ସେ ପଚାରିଲେ ଆପଣମାନେ କେହି କେବେ ବଟିର ସାମନାସାମନି ହେଇଛନ୍ତି ? ଅଛି ତା'ର ଫଟୋ ଆପଣଙ୍କ କେମେରାରେ ?

ଅଛି, ଅଛି । ସମସ୍ତେ ହାତ ଟେକିଦେଲେ । ଆମେ ପ୍ରତିଦିନ ବଟିକୁ ଭେଟୁଛୁ । ଫଟୋ ବି ଅଛି ଆମ ପାଖରେ ।

ସେକ୍ରେଟାରୀ ଯାଇ ମନ୍ତ୍ରୀଙ୍କୁ କହିଲେ । ସେମାନେ ବଟିକୁ ଭେଟନ୍ତି ବୋଲି କହିଲେ । ଜଣେ ଏକଥା ମଧ କହିଲେ ଯେ, ଗୋଟିଏ ଅନୁଷ୍ଠାନ ବଟିକୁ ତା'ର ବାର୍ଷିକ ଉତ୍ସବରେ ଏଇ ରାଜଧାନୀରେ ମାନପତ୍ର ଦେଇ ସମ୍ମାନିତ କରିଛି ଏବଂ ସେଥିରେ ଅଧକ୍ଷତା କରିଥିଲେ ମାନ୍ୟଗଣ୍ୟ ନେତା ।

ମନ୍ତ୍ରୀ କହିଲେ, ମୁଁ ସେ କଥା ବୁଝୁଛି । କିନ୍ତୁ ଗୋଟିଏ କଥା ମୋତେ କୁହ, ମୋତେ ଆମ ଗୋଇନ୍ଦା ବିଭାଗ ଡାକରେକ୍ଟର କହିଲେ ବଟି ଏବେ 'ସଂସ୍କୃତି' ବେଶରେ ବୁଲୁଛି । ସେ ପାଣିପବନ ସାଥିରେ ମଧ ମିଶି ଯାଇପାରୁଛି । ରୂପ ବଦଳେଇ ପାରୁଥିବା ଶକ୍ତି ସେ ନିଶ୍ଚୟ ଈଶ୍ୱରଙ୍କଠାରୁ ହାସଲ କରିଥିବ । ଯଦି ସେମିତି ହେଇଥାଏ ତେବେ ତା'ର ଦୁଇଟି ଗୁଣ ଥିବ । ଗୋଟିଏ ଭଲ ଓ ଗୋଟିଏ ଖରାପ । ତୁମେ ସାମ୍ବାଦିକମାନଙ୍କୁ ପଚାର ବଟିର ଦୁଇଟା ଗୁଣ ସେମାନେ ଦେଖିଛନ୍ତି କି ? ମନ୍ତ୍ରୀ ଏକଥା କହିବାର ଉଦେଶ୍ୟ ହେଉଛି, ବଟି ଯଦି ଈଶ୍ୱରଙ୍କ ଆଶୀର୍ବାଦ ପାଇଥିବ ବା ଯାହାକୁ ଆଗରୁ 'ବର' ବୋଲି କୁହାଯାଉଥିଲା ତେବେ ଆମେ ତାର କିଛି କରି ପାରିବା ନାହିଁ; ବରଂ ତା'ବିରୋଧରେ ଅସ୍ତ୍ର ଧାରଣ କଲେ ଆମେ କ୍ଷତିରେ ପଡ଼ିବା । ଆମେ ଜାଣିଶୁଣି ଅସୁବିଧାରେ କାହିଁକି ପଡ଼ିବା ?

ସେକ୍ରେଟାରୀ ପୁଣିଥରେ ଯାଇ ସାମ୍ବାଦିକମାନଙ୍କ ସହିତ ପରାମର୍ଶ କଲେ । ସେଠୁ ଫେରି ମନ୍ତ୍ରୀଙ୍କୁ କହିଲେ ବଟିର ଦୁଇଟା ଗୁଣ ନିଶ୍ଚୟ ଅଛି । କେତେଜଣଙ୍କ ପାଇଁ ଯେତିକି ଭଲ, କେତେଜଣଙ୍କ ପାଇଁ ତାହା ଖୁବ୍ ଖରାପ । ସାମ୍ବାଦିକମାନେ ଏକଥା ମଧ କହିଲେ, ବଟି ଈଶ୍ୱର କିମ୍ବା ଅନ୍ୟ କୌଣସି ଦେବଦେବୀଙ୍କ

ବର୍ ପାଇନାହିଁ ଠିକ୍; କିନ୍ତୁ ସେମାନେ ଏହାକୁ ମନା କରନ୍ତି ନାହିଁ କି ହଁ ମଧ କରନ୍ତି ନାହିଁ ।

କାହିଁକି ? ସେମାନଙ୍କର ଏଥିରେ କିଛି ଲାଭ ଅଛି କି ? ମୁଁ ସାର୍, ସେ କଥା ପଚାରିନାହିଁ । ସେକ୍ରେଟାରୀ କହିଲେ ।

ମନ୍ତ୍ରୀ କହିଲେ, ଠିକ୍ ଅଛି, ତୁମେ ଯାଇ 'ଲ' ସେକ୍ରେଟାରୀଙ୍କୁ କୁହ ସେ ବଟିର ମୂଳୋତ୍ପାଟନ ପାଇଁ ଗୋଟିଏ ଆଇନ୍ ତିଆରି କରିବେ । ଆସନ୍ତା ବିଧାନସଭା ଅଧିବେଶନରେ ଆମେ ତାକୁ ପାସ୍ କରାଇନେବା । ଆଇନ୍‌ର ଚିଠା ମଧ ସେ ପନ୍ଦରଦିନ ଭିତରେ ମୋତେ ବୁଝାଇଦେବେ ।

ସେକ୍ରେଟାରୀ ଚାଲିଗଲେ । ମନ୍ତ୍ରୀ ସେହିଦିନ ସନ୍ଧ୍ୟାବେଳେ ଆଉ ଗୋଟିଏ ପ୍ରେସ୍ କନ୍‌ଫରେନ୍ସ ଡାକି ଘୋଷଣ କଲେ ଯେ ସରକାର ବଟି ଦୁଆର ସମ୍ପୂର୍ଣ୍ଣ ଉଚ୍ଛେଦେ ପାଇଁ ଖୁବ୍ ଶୀଘ୍ର ଆଇନ୍ ପ୍ରଣୟନ କରିବେ ।

ଜଣେ ସାମ୍ବାଦିକ ପ୍ରଶ୍ନ କଲେ, ସବୁ ଉଚ୍ଛେଦର ଥଇଥାନ ବ୍ୟବସ୍ଥା ମଧ ସରକାରଙ୍କ ନୀତି । ଏଥିରେ ସେ ବ୍ୟବସ୍ଥା ଅଛି କି ?

ମନ୍ତ୍ରୀ କହିଲେ, ମୁଁ ପଚାରି କହିବି । ସାତଦିନପରେ ମନ୍ତ୍ରୀ ପୁଣିଥରେ ସେକ୍ରେଟାରୀଙ୍କୁ ଡକାଇଲେ । ପଚାରିଲେ, ଚିଠା ପ୍ରସ୍ତୁତ ହେଲାଣି ? ଆଣ ମୁଁ ଦେଖେ । ଏଯାଏ ହେଇନି ସାର୍ । 'ଲ' ସେକ୍ରେଟାରୀ କହିଲେ ଆଗେ ବଟି ଆସୁ, ତା'ପରେ ଚିଠା ତିଆରି ହେବ ।

(ପ୍ରଜାତନ୍ତ୍ର - ୧୧.୧୧.୨୦୦୯)

***

# ବିଶ୍ୱ ହାତସଫେଇ ଦିବସ

ମନ୍ତ୍ରୀ ମହୋଦୟ ତାଙ୍କ ଅଧୀନରେ ଥିବା ସବୁ ଅଫିସରଙ୍କୁ ଡାକି ଗୋଟିଏ ମିଟିଂ କଲେ । ସେ କହିଲେ ଆମେ ଏହାକୁ ଏକ ଜାତୀୟ ଉତ୍ସବ ରୂପେ ପାଳନ କରିବା । ସାରା ପୃଥିବୀ ଏହାକୁ ପାଳନ କରୁଥିବାରୁ ଆମେ ଏଥିରେ ପଛେଇବା ନାହିଁ । ଆମେ ଏହାକୁ ଏକ ଜାତୀୟ କର୍ତ୍ତବ୍ୟ ଭାବେ ପାଳନ କରି ସମଗ୍ର ବିଶ୍ୱକୁ ଦେଖାଇଦେବା ଯେ ଆମେ ଏ କାମରେ ମଧ୍ୟ ଅନ୍ୟ ସମସ୍ତଙ୍କ ଆଗରେ । ଦାରିଦ୍ର୍ୟ ଦୂରୀକରଣ, ଅସ୍ପୃଶ୍ୟତା, ଓ କୋଷ୍ଠ ନିବାରଣ, ଦୁର୍ନୀତି ନିବାରଣ ପ୍ରଭୃତି ଯେତେସବୁ ଜାତୀୟ ଯୋଜନା ଆମ ହାତକୁ ଆସିଛି, ତାକୁ ଆମେ ଯେମିତି ସଫଳ ଭାବରେ ରୂପାୟିତ କରି ଆମେ ସାରା ବିଶ୍ୱରେ ଆମର ଟେକ ରଖିପାରିଛୁଁ । ଆମର ଏ ବିଶ୍ୱ ହାତ ସଫେଇ ଦିବସକୁ ମଧ୍ୟ ସେମିତି ପାଳନ କରି ସମଗ୍ର ବିଶ୍ୱକୁ ଚମକେଇଦେବା ।

ମନ୍ତ୍ରୀ କହିଲେ ପ୍ରତ୍ୟେକ ଅବସ୍ଥାରେ, ପ୍ରତ୍ୟେକ କ୍ଷେତ୍ରରେ ଆମେ ଆମର ହାତ ସଫା ରଖିବା ଉଚିତ । ହାତଟା ସଫା ଥିଲେ କେହି କହିବାକୁ ନଥିବ । ଜୀବାଣୁ ଆସୁଥିବ କିନ୍ତୁ ଆମ ଭିତରକୁ ପ୍ରବେଶ କରିବାକୁ ବାଟ ପାଉ ନଥିବ । ସେ କହିଲେ ତୁମେ ଜାଣିଚ ନା, ବ୍ରାହ୍ମଣମାନେ ପୂଜା ଆରମ୍ଭ ପୂର୍ବରୁ ପ୍ରଥମେ କାହିଁକି ଦୁବପତ୍ରରେ ପାଣି ଛିଞ୍ଚନ୍ତି ? ସେଇଟା ମଧ୍ୟ ଗୋଟିଏ ପ୍ରକାର ସଫେଇ । ଏଠି ସଫେଇ ଅର୍ଥ ପବିତ୍ରକରଣ । ଠାକୁରଙ୍କୁ ଯାହା ଦିଆଯାଏ ତାକୁ ପ୍ରଥମେ ପବିତ୍ର କରି ଦିଆଗଲା । ଥରେ ପବିତ୍ର ବୋଲି ବ୍ରାହ୍ମଣ ଘୋଷଣା କରିଦେଲା ପରେ ସେ ଭୋଗ ଚୋରାମାଲ୍ ହେଉଥିଲେ ମଧ୍ୟ ତାହା ସଫା ହେଇଯାଏ । ହାତ ସଫେଇଟା ସେଇ ପବିତ୍ରକରଣ ଉଦ୍ଦେଶ୍ୟରେ ।

ମନ୍ତ୍ରୀ ଟିକିଏ ରହିଗଲେ ଓ ତା'ପରେ କହିଲେ ତୁମେ ସବୁ ଜାଣି ନଥିବ ମୋ ହାତ ସବୁବେଳେ ସଫା । ଟିକିଏ ବୋଲି ମଳି ଲାଗେନି । ଚାନ୍ସ କାହିଁ ଲାଗିବାର ପ୍ରତ୍ୟେକ କାମ ପୂର୍ବରୁ ଓ ପରେ ହାତ ସଫା କରିନେଲେ ଆଉ

ଧୂଳିମଳି ଲାଗିବ ? ଏଇଟା ମୋର ଗୋଟିଏ ଆଜନ୍ମ ଅଭ୍ୟାସ । ମୋ ବାପା ମୋତେ ଶିଖାଇଥିଲେ, କହିଥିଲେ, ପୁଅରେ ! ଯାହା କର, ସବୁବେଳେ ହାତ ସଫା ରଖିବୁ । ମୋ ମାଆ ତାଙ୍କଠୁ ଆହୁରି ସାବଧାନ ଓ ହୁସିଆର । ସେ କହୁଥିଲା 'ପୁଅ ! ଯାହା ଖାଉଚୁ ଖାଆ, ଯେତେ ଖାଉଚୁ ଖାଆ । ହାତ ସବୁବେଳେ ସଫା ରଖୁଥିବୁ ।' ସେ କହିଲେ, ମୁଁ ଭାବେ ହାତ ସଫା ରଖିବା ଆମର ଧର୍ମ । ଗଣତନ୍ତ୍ରମାନେ ଆଉ କଅଣ ? ଖାଲି ହାତ ନୁହେଁ, ପ୍ରତ୍ୟେକ ଜିନିଷ ଆମର ସଫା । ମୁଁ ତ ଆମ କିରାଣୀ ଭାଇମାନଙ୍କୁ କୁହେ, ଫାଇଲ୍ ସଫା ରଖିବାକୁ ହେଲେ ହାତ ପ୍ରଥମେ ସଫା ରଖ । ଏବେ ପୁଣି କଥାଟାକୁ ଓଲଟାଇ ଦିଅ । ହାତ ଆଗରୁ ସଫା ରଖିଥିଲେ, ଫାଇଲ୍ ସଫା ଇମିତି ରହିବ ଯେ ସେସବୁରୁ ଆଉ କେହି ଧୂଳିମଳି ପାଇବେନି ।

ଜଣେ କେହି ମଝିରୁ କହିଉଠିଲେ, ସାର୍ ଆମେ ତ ସବୁବେଳେ ହାତ ସଫା ରଖୁଛୁ ତଥାପି ସେମାନେ ହାତରେ ମଳି ଅଛି ବୋଲି ଧରି ପକାଉଛନ୍ତି । ଏଇଟା ଅନ୍ୟାୟ ନୁହେଁ ?

ମନ୍ତ୍ରୀ ହସିଲେ । କହିଲେ, ଏଇଥିରୁ ଜଣାପଡୁଛି ତୁମେ କେତେ ସଫ । ହଇଓ, ତୁମେ ଯଦି ଚତୁରତାର ସହିତ ହାତ ସଫା ରଖିବ ତେବେ ଦୂରବିକ୍ଷଣ ଯନ୍ତ୍ର ମଧ ଧରି ପାରିବ ନାହିଁ । ମୋତେ ଏଥର ମୁଖ୍ୟମନ୍ତ୍ରୀ କହିଛନ୍ତି, ତୁମେ ଏବେ ସବୁ ମନ୍ତ୍ରୀ, ବିଧାୟକ ଓ ସାଂସଦମାନଙ୍କୁ ସେମାନେ କିପରି ହାତ ସଫା ରଖିପାରିବେ, ସେ ବିଷୟରେ ଟ୍ରେନିଂ ଦିଅ । ମୁଁ ସେମାନଙ୍କୁ କହିଛି ମୋ ପାଖକୁ ଦୈନିକ ଜଣେ ଜଣେ ଆସନ୍ତୁ । ମୁଁ ତାଲିକା ତିଆରି କରି ଦେଇଛି । ପ୍ରଥମେ ଗୋଟିଏ ଡିପାର୍ଟମେଣ୍ଟକୁ ଦେଇ ସାରିଲା ପରେ ଅନ୍ୟ ଡିପାର୍ଟମେଣ୍ଟ । ଏହି କ୍ରମରେ ପ୍ରଥମେ ଘରୋଇ ବିଭାଗ । ପରେ ଏକ୍ସାଇଜ୍ ବା ମଦ, ତା'ପରେ ଖଣି ଇତ୍ୟାଦି ଇତ୍ୟାଦି । ଜଣେ କହିଲେ ଶିକ୍ଷା ବିଭାଗକୁ ପ୍ରଥମେ ରଖିଥିଲେ ସେମାନେ ଅନ୍ୟମାନଙ୍କୁ ଦେଇଥାନ୍ତେ ।

ମନ୍ତ୍ରୀ କହିଲେ, ଶିକ୍ଷାରେ ଅଛି କ'ଣ ? ସବୁ ତ ସଫା ହେଇ ସାରିଛି । ତେଣୁ ତା'କଥା ମୁଁ ଆଉ ଭାବୁନାହିଁ ।

ସେଦିନ ମିଟିଂରେ ଗୋଟିଏ ଦୀର୍ଘମିଆଦି କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା । ଏହି କାର୍ଯ୍ୟକ୍ରମ ଅନୁସାରେ ସାରା ରାଜ୍ୟରେ ସଭାସମିତି ହେବ । ସଭାସମିତି ସହିତ ସାଂସ୍କୃତିକ କାର୍ଯ୍ୟକ୍ରମମାନ ହେବ । ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ରାଜ୍ୟ

ବାହାରୁ ଶିଳ୍ପୀମାନଙ୍କୁ ଅଣାଯିବ । ବମ୍ବେରୁ ଫିଲ୍ମଷ୍ଟାର ମଧ୍ୟ ଆସିବେ । ଅସଲ ଉଦ୍ଦେଶ୍ୟ ହେଲା ଏହି ବିରାଟ କାମରେ ଜନସାଧାରଣଙ୍କୁ ମଧ୍ୟ ସାମିଲ କରାଯିବ । ସେମାନଙ୍କୁ ତା ଭିତରେ ନ ରଖିଲେ ହାତ ସଫେଇ କାମ କେବଳ ନେତୃମଣ୍ଡଳୀ ଭିତରେ ସୀମାବଦ୍ଧ ହେଇ ରହିଯିବ । ଏପରି ଗୋଟିଏ ବଦନାମ ସରକାର ନେବାକୁ ଚାହୁଁନାହାନ୍ତି ।

ଜଣେ କହିଲେ, ସ୍କୁଲ କଲେଜ୍‌ରେ ଏଥିପାଇଁ 'ଡିମୋ'ର ବ୍ୟବସ୍ଥା କରାଯାଉ । ଏହା ଦ୍ୱାରା ଆମେ ତଳସ୍ତରରୁ ତା'ର କାର୍ଯ୍ୟକାରିତା ପାଇଁ ଚେଷ୍ଟା କରିପାରିବା ।

ମନ୍ତ୍ରୀ ମନାକଲେ । କହିଲେ, ପିଲାମାନଙ୍କ ହାତରେ ଏ ଯାଏ ଧୂଳି ଲାଗିନାହିଁ । ସେମାନେ ଧୂଳି ମଳିର ଅନେକ ଉର୍ଦ୍ଧ୍ୱରେ । ତେବେ ସେମାନେ ବଡ଼ ହେଲାବେଳକୁ ଆମ ହାତ ସଫେଇ କାର୍ଯ୍ୟକ୍ରମ ଯଦି ସଫଳ ହେଇନଥାଏ ତେବେ ସେମାନଙ୍କୁ ଏଥିରେ ପୁଣି ସାମିଲ କରିବା ।

ଠିକ୍ ବର୍ଷକ ପରେ ସେ ମୁଖ୍ୟମନ୍ତ୍ରୀଙ୍କୁ ଭେଟିଲେ । ବର୍ଷକ ଭିତରେ ଯେତେ ଯାହା ସବୁ ହେଇଚି, ଯେତେ ନେତା ଓ ଅଫିସରଙ୍କୁ ଟ୍ରେନିଂ ଦିଆଯାଇଛି ତା'ର ବିସ୍ତୃତ ବିବରଣୀ ଦେଲେ । ସେ ମୁଖ୍ୟମନ୍ତ୍ରୀଙ୍କୁ ଗୋଟିଏ ରିଭ୍ୟୁ କମିଟି ଆହ୍ୱାନ କରିବାକୁ ଅନୁରୋଧ କଲେ ।

ମୁଖ୍ୟମନ୍ତ୍ରୀ ହସିଲେ । ସେ କହିଲେ ଆପଣଙ୍କ କାର୍ଯ୍ୟକ୍ରମ ଯେ ଆପଣ ଅତି ସଫଳତାର ସହିତ ସମ୍ପନ୍ନ କରିପାରିଛନ୍ତି ଏ ଖବର ଆଗରୁ ମୁଁ ପାଇ ସାରିଛି । ଏଥିପାଇଁ ଆଉ ଡିମୋର ଆବଶ୍ୟକତା ନାହିଁ ।

ମନ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ମୁଖ୍ୟମନ୍ତ୍ରୀଙ୍କୁ ଅନେଇଲେ ।

ମୁଖ୍ୟମନ୍ତ୍ରୀ କହିଲେ ଆମ ଅର୍ଥମନ୍ତ୍ରୀଙ୍କ ରିପୋର୍ଟ ଅନୁସାରେ ଏ ସଫେଇ କାମ ଏତେ ସୁନ୍ଦର ଭାବରେ ହେଇଛି ଯେ, ଆମ କୋଷାଗାର ସମ୍ପୂର୍ଣ୍ଣ ଖାଲି ହେଇଯାଇଛି । ଡିମୋ ପାଇଁ ମଧ୍ୟ କାଣି କଉଡ଼ିଟିଏ ନାହିଁ ।

(ପ୍ରଜାତନ୍ତ୍ର - ୨୫.୧୨.୨୦୦୯)

***

# ଛେପ ପକାଇବା ଅଧିକାର

ଏବେ ଅଘଟଣ ଘଟିଛି ଆମ ରାଉରକେଲାରେ । ସେଥିପାଇଁ ଚହଳ ସୃଷ୍ଟି ହୋଇଛି । ରାଉରକେଲା ଆର.ଟି.ଓ. ଅଫିସ୍‌ଟି ବହୁ ଦିନରୁ ପୁରୁଣା ଦୋମହଲା କୋଠାରେ ଚାଲୁଥିଲା । ଏବେ ତାର କେତେକାଂଶ ନବୀକରଣ କରାଯାଇଛି । କୌଣସି କାମ ପାଇଁ ସରକାରଙ୍କ ପାଖରେ ପଇସା ନଥିଲାବେଳେ ଗୋଟାଏ କୋଠାକୁ ଯେମିତି ଭାବରେ ସୁନ୍ଦର ଓ ଚକ୍‌ଚକ୍ କରି ଦିଆଗଲା ତାହା ପ୍ରଶଂସାର କଥା । ଅନ୍ତତଃ ଏବେ ଭଦ୍ରଲୋକଟିଏ ଲାଇନ୍‌ରେ ହେଲେ ମଧ କିଛି ସମୟ ଠିଆ ହେବାକୁ ଇଛା କରିବ । ତାକୁ ଖରାପ ଲାଗିବ ନାହିଁ କିମ୍ବା ବିରକ୍ତିକର ପରିବେଶ ପାଇଁ ଆଗ ପରି ନାକରେ ରୁମାଲ ଦେବାକୁ ପଡ଼ିବ ନାହିଁ । ଗୋଟିଏ ସୁଖକର ପରିବେଶ ସୃଷ୍ଟି ହେଉଥିଲା ।

କିନ୍ତୁ ଏହା ଯେ ଆମ ସଂସ୍କୃତି ବିରୋଧି ସେ କଥା ବୋଧେ ଆମ ସରକାର କିମ୍ବା ଆର.ଟି.ଓ. ଅଫିସ୍ ବୁଝି ନଥିବେ । ଆମ ପରିବେଶ ଯେତେ ଅପରିଷ୍କାର ଓ ଆବର୍ଜନାପୂର୍ଣ୍ଣ ଥିବ ସେତେ ଭଲ । ଆମେ ସେଠି ପଚ୍‌ପଚ୍ ଛେପ ପକେଇ ପାରିବା, ଛେପ ପକେଇବା ପାଇଁ ଆମେ ଦୂରକୁ କାହିଁକି ଯିବା ? ଯିବାକୁ ବେଳ କାହିଁ ? ସେ ସବୁ କାମ ଆମେ ବସିବା ସ୍ଥାନରେ ବା ଠିଆ ହେବା ସ୍ଥାନରେ କରିବା । ଅଫିସ୍‌ରେ ବାବୁମାନେ କାମ କଲାବେଳେ ଛେପ ପକେଇବା ପାଇଁ ଟେବୁଲ୍ ତଳେ ଡବାଟିଏ ରଖିଥାଆନ୍ତି । ସେମାନେ ବାହାରକୁ ଉଠିଲେ କାମ କେତେବେଳେ କରିବେ । ଯେଉଁଠି ଡବା ନଥାଏ ସେଠି ଝରକାକୁ ବ୍ୟବହାର କରାଯାଏ । ସେମାନେ ଅଫିସରରେ ଥାଆନ୍ତୁ, ବସ୍ କିମ୍ବା ଟ୍ରେନ୍‌ରେ ଥାଆନ୍ତୁ, କାର୍ ମୋଟର ସାଇକେଲ୍‌ରେ ଯାଉ ଥାଆନ୍ତୁ, ଛେପ ସେମାନେ ନିଶ୍ଚୟ ପକାଇବେ । ଏଇଟା ଗୋଟେ ଜନ୍ମଗତ ଅଧିକାର । ସେ ଅଧିକାରରୁ ବଞ୍ଚିତ କରିବା ଅର୍ଥ ଆମର ପାନ ଖାଇବାର ସଂସ୍କୃତିକୁ ଅସ୍ୱୀକାର କରିବା । ମଡର୍ଣ୍ଣ ଯୁଗରେ ପାନର ସ୍ଥାନ ପୁଡ଼ିଆ, ଗୁଟଖା ନେଲାଣି । ତେବେ ସୁବିଧା ପକେଟରେ

ଛୋଟ ପୁଡ଼ିଆଟେ ଥିବ । ରାସ୍ତାରେ ଗାଡ଼ିର ଗତି କମେଇ, ଯେତେ ମଇଳା ଆବର୍ଜନା ଲାଗିଥାଉ ପଛକେ ତାକୁ ଦାନ୍ତରେ ଛିଣ୍ଡେଇ ପାଟିରେ ପକାଅ ଏବଂ ତା ପରେ ଛେପ ପକାଅ । ଯୋଉଠି ପଡୁଛି ପଡୁ । ସେ ପଡ଼ିବା ଜାଗା ଅନ୍ୟର ମୁଣ୍ଡ, ଦେହ ହେଉ ବା ଦେବତାଙ୍କ ଦେହ ହେଉ ସେଥିରେ କିଏ କଅଣ କରିବ ?

ଆର.ଟି.ଓ. ଅଫିସ୍ ଏପରି ଅବିବେକୀ କାମ କରିବା ଉଚିତ୍ ନଥିଲା । ଅଫିସର କାନ୍ଥ କୋଣ, ଶିଡ଼ି କାନ୍ଥ ଏସବୁ ଜାଗାରେ ଛୋପ ପକେଇବା ଆମର ପବିତ୍ର ପରମ୍ପରା । ଓଡ଼ିଆର ଚିହ୍ନ । କଥା ହେଉ ହେଉ ସଭା ସମିତିରେ ପାଟିଟା ଯେ ସବୁବେଳେ ଚାଲିଥିବ ଏବଂ କଥା କହିଲାବେଳେ ଛେଳି ପରି ମୁହଁକୁ ଉପରକୁ ଟେକୁଥିବ ଏସବୁ ଉଚ୍ଛଳୀୟ ବିଧି । ଆର.ଟି.ଓ. ଅଫିସ୍ ଏହିପରି ଛେପ ପକେଇବା ଜାଗାରେ ଦେବଦେବୀଙ୍କ ଛବି ଥିବା ଟାଇଲ୍ ଲଗେଇ ବୁଦ୍ଧିମାନର କାମ ତ ମୋଟେ କରି ନାହାନ୍ତି, ଅଧିକନ୍ତୁ ଉଚ୍ଛଳୀୟ ବିରୋଧି କାମ କରିଛନ୍ତି । ପାନ ଛେପ ଆମେ ଯେଉଁଠି ଇଚ୍ଛା ଏବଂ ଯେତେବେଳେ ଇଚ୍ଛା ପକେଇବୁ । ସେ ଅଧିକାରରୁ ଆମକୁ କିଏ ଅଲଗା କରିବ ?

ଏଥିପାଇଁ ତ ଆମେ ଆମ ଅରାଧ ଦେବତା ଜଗତର ନାଥ ଜଗନ୍ନାଥଙ୍କୁ ମଧ କ୍ଷମା କରିପାରିବୁ ନାହିଁ । ଶ୍ରୀମନ୍ଦିର ହେଲା ବୋଲି ଯେ ଆମେ ସେଠି ଛେପ ପକେଇବା ନାହିଁ ତାର କିଛି ମାନେ ନାହିଁ । 'ଏଠାରେ ଛେପ ପକାନ୍ତୁ ନାହିଁ' ଲେଖାଥିଲେ ମଧ ଆମେ ସେଠାରେ ପକେଇବୁ । ଆମେ ଭକ୍ତିରେ ଗଦ୍‌ଗଦ୍ ହୋଇ ଏବଂ ଅନ୍ୟ ଦିଗରେ ପାନର ପ୍ରୀତିରେ ମଜିଯାଇ ଯଦି ରତ୍ନବେଦୀ ପାଖରେ ଛେପ ପକାଉ ଜଗନ୍ନାଥ ଏଥିରେ ଆମକୁ ଆଶୀର୍ବାଦ କରିବେ ସିନା ଅଭିଶାପ ଦେବେ ନାହିଁ । ଆମର ଛେଳି ସଂସ୍କୃତି କଥା କଅଣ ସେ ଜାଣିନାହାନ୍ତି ?

(ପ୍ରଜାତନ୍ତ୍ର - ୫.୧.୨୦୧୦)

***

# ଭୂତତନ୍ତ୍ର

ସେଦିନ ସ୍ୱର୍ଗଲୋକରେ ଏକ ଆଲୋଡ଼ନ ସୃଷ୍ଟି ହେଲା । ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଇଏ କଅଣ ? ସେମିତି କେବେ ଦେଖା ନଥିଲା । ଭୂତମାନଙ୍କର ସଭା ଏମିତି ହୋଇଥାଏ କି ? କଅଣ ଏ ସଭାର ଉଦ୍ଦେଶ୍ୟ ? କିଏ ତା'ର ଆୟୋଜନ କରୁଛି ? ତା'ର ନେତା କିଏ ? ତା'ପଛରେ କୌଣସି ଦଳ ଅଛି ନା କେତେ ଜଣ ମିଶି ଏମିତି କରୁଛନ୍ତି ? ଅସଲ କଥା ହେଲା ଏହା ରାଜନୈତିକ ନା ଅଣ-ରାଜନୈତିକ ? ଧାର୍ମିକ ନା ବ୍ୟବସାୟିକ ।

କେହି ଏସବୁ ପ୍ରଶ୍ନର ଉତ୍ତର ଦେଇ ପାରିଲେନି । ସମସ୍ତେ ଖାଲି ଯା ତା ମୁହଁକୁ ଚାହିଁଲେ । ଜଣେ ପୁଲିସ୍ ଅଫିସର କିନ୍ତୁ ପଚାରିଲେ "ସଭା କରିବା ପାଇଁ ପରମିଶନ୍ ନେଇଚନ୍ତି କି ?" ଜଣେ କହିଲେ, "ଆପଣତ ଆଗରୁ ଗୋଏନ୍ଦା କାମ କରୁଥିଲେ । ସବୁ କଥା ଟିକିଏ ଭିତରେ ପଶି ବୁଝୁ ନାହାନ୍ତି ! ମୁଁ ଭାବୁଚି, କଥାଗୁଡ଼ାକ ଦେବଲୋକର ସେକ୍ରେଟାରୀଏଟ୍‌ରେ ମଧ୍ୟ ଏଯାଏ ପହଞ୍ଚି ନ ଥିବ ।" ପୁଲିସ୍ ଅଫିସର କହିଲେ, ମୁଁ ସିନା ମର୍ତ୍ତ୍ୟରେ ଥିଲାବେଳେ ଗୋଏନ୍ଦାଗିରି କରୁଥିଲି । ଏଠିତ ଚାକିରି କରୁ ନାହିଁ । ମୋତେ ଆପେଏଣ୍ଟମେଣ୍ଟ୍ ଦଉ ନାହାନ୍ତି !"

ପୁଲିସ୍ ଅଫିସର ଜଣକ ପୁଣି କହିଲେ, ମୋର କହିବାର କଥା, ଏଠିତ ସମସ୍ତେ 'ଫିଲ୍‌ଗୁଡ଼୍ ଫେକ୍‌ଟର'ରେ ଅଛନ୍ତି' । ରହିବାର କଥା । ସେଥିରେ କାହାରି କିଛି ଆପତ୍ତି ଅଭିଯୋଗର ପ୍ରଶ୍ନ କୋଉଠି ଉଠୁଛି । ଜଣେ ସମାଜସେବୀ କହିଲେ, "ସ୍ୱର୍ଗ ଲୋକର ଭୂତମାନଙ୍କ ପାଇଁ ମହାରାଜ ଯମଙ୍କ ଦ୍ୱାରା ପ୍ରଦତ୍ତ 'ଫିଲ୍‌ଗୁଡ଼୍ ଫେକ୍‌ଟର୍' କୁ ଭାରତର ନେତାମାନେ ଏଇଠୁ ନେଇଥିବେ ।"

ଭୂତମାନେ ଧୀରେ ଧୀରେ ଯାଇ ସଭାସ୍ଥଳରେ ପହଞ୍ଚିଲେ । ସଭାଟା ଠିକ୍ ଗୋଟିଏ ଭାରତର ପ୍ରାକ୍ ନିର୍ବାଚନୀ ସଭା ପରି ଦେଖାଯାଉଥିଲା । କିଛି

ଯମଦୂତ ଯୋଉମାନେ ଶାନ୍ତି ଶୃଙ୍ଖଳା ଦାୟିତ୍ୱରେ ଥାଆନ୍ତି, ଖଣ୍ଡେ ଦୂରରେ ବସି ହାତରେ କଅଣ ଦଳୁଥିଲେ ।

ସଭା ଆରମ୍ଭ ହେଲା । ସେଥିରେ କୋଉମାନେ ନେତୃତ୍ୱ ନେଉଥିଲେ, ଏପରିକି କୋଉମାନେ ଭାଷଣ ଦେଲେ ସେକଥା ଠିକ୍ ଭାବରେ ବୁଝି ହେଲାନି । ତାର କାରଣ ଭୂତମାନଙ୍କର ମୁଣ୍ଡ ନଥାଏ । ଆଉ ସବୁ ଥାଏ । ବେକଠାରୁ ଉପରକୁ କଥାଟା ଭୁସ୍‌ଭୁସ୍ ବାହାରୁ ଥାଏ । ତେବେ ମୁଣ୍ଡ ନଥାଇ ମଧ୍ୟ ସେମାନେ ଯୋଉ ଓଜସ୍ୱିନୀ ଭାଷଣ ଦେଲେ ସେଥିରୁ ସେମାନେ ଯେ ଭାରତୀୟ ନେତା ଏ କଥା ବୁଝି ହେଇ ଯାଉଥାଏ । ସ୍ୱର୍ଗଲୋକରେ ମାଇକ୍‌ର ବ୍ୟବହାର ମନା ଅଛି । ତେଣୁ ଦୂରରେ ବସିଥିବା ଲୋକମାନେ କିଛି ଶୁଣି ପାରିଲେନି ।

ସଭା ଶେଷରେ ସେମାନେ ଗୋଟିଏ ଶାନ୍ତପୂର୍ଣ୍ଣ ଶୋଭାଯାତ୍ରାରେ ଯମରାଜଙ୍କ ଅଫିସ୍ ଆଡ଼କୁ ଗଲେ । ସେଠି ସେମାନେ ଯମକୁ ଭେଟିଲେ ଏବଂ କହିଲେ "ଭାରତରେ ଏବେ ଆଉ ଗୋଟିଏ ନିର୍ବାଚନ ହେବାକୁ ଯାଉଚି । ଗତ ନିର୍ବାଚନରେ ଯୋଉମାନେ ଆପଣଙ୍କଠାରୁ ଅନୁମତି ନେଇ ଯାଇଥିଲେ ସେମାନେ ଏଯାଏ ଫେରି ନାହାନ୍ତି । ଆମେ ଶୁଣିବାକୁ ପାଉଛୁ ସେମାନେ ଏଥର ପ୍ରତିନିଧି ସଭା ଗୁଡ଼ିକୁ ଭାଙ୍ଗି ଦେଇଛନ୍ତି ଏବଂ ଆଗୁଆ ନିର୍ବାଚନ କରାଉଛନ୍ତି । ଏହାଦ୍ୱାରା ଆପଣ ସେମାନଙ୍କୁ ଅନ୍ୟାୟ ଭାବରେ ଅଧିକ ସୁଯୋଗ ଦେଉଚନ୍ତି । ଏଥର ଆପଣ ଆମକୁ ପଠାନ୍ତୁ । ଆମେ ସମାନ ସୁଯୋଗ ପାଇବା କଥା ।"

ଯମରାଜ ହସିଲେ । କହିଲେ ତୁମ ଅଭିଯୋଗ ଠିକ୍ ନୁହେଁ । ଆମ ରେକର୍ଡ ଅନୁସାରେ ଯୋଉମାନେ ସେଠି ରହିଗଲେ ସେମାନଙ୍କ ଧର୍ମବଳ ବେଶି । ନିର୍ବାଚନ ପରେ ପରେ ସେମାନଙ୍କଠାକୁ ନୋଟିସ୍ ଯିବ । କିନ୍ତୁ ତମେମାନେ ଯୋଉ ପାପ ସେଠାରେ କରିଥିଲ ସେଥିରେ ତୁମମାନଙ୍କ ନାଁ ଏଯାଏ ମର୍ତ୍ତ୍ୟକୁ ଯିବାକୁ ଆସି ନାହିଁ । ଆହୁରି କିଛି ଦିନ ଅପେକ୍ଷା କର ।

ଆମର ପାପ ସେମାନଙ୍କ ଅପେକ୍ଷା କେମିତି ବେଶି ହେଲା?

ସେ ସବୁର ହିସାବ ମୋ ପାଖରେ ଅଛି । କହିଲେ କମ୍ପ୍ୟୁଟରରୁ ବାହାର କରିଦେବି । ସେସବୁ ରେକର୍ଡ ମୁଁ ତିଆରି କରିନାହିଁ । ତୁମ ମୁଖ୍ୟ ନିର୍ବାଚନ କମିଶନ୍ ମୋତେ ଯାହା ଦେଇଚନ୍ତି । ତା'ର ଛୋଟିଆ ଅଂଶଟିଏ ତୁମକୁ କହୁଚି ।

ତୁମ ଉପରେ ବାକି ଥିବା ଶହ ଶହ କୋଟି ଟଙ୍କାର ସରକାରୀ ଦେୟ ତୁମେ ଦେଇନ । ବିଜୁଳି ପାଣି, ଟେଲିଫୋନ୍, ଘରଭଡ଼ା, ବେଙ୍କ ଲୋନ୍, ରାଜ୍ୟ ଅତିଥିଶାଳାରେ ଖାଇବା ଖର୍ଚ୍ଚ କିଛି ବି ପଇଠ କଲନାହିଁ । ତୁମକୁ ଦିଆଯାଇଥିବା କମ୍ପ୍ୟୁଟର ଇତ୍ୟାଦି ମଧ ବିକି ଦେଲ । ଏହା ଦେଶବାସୀଙ୍କ ପ୍ରତି ବିଶ୍ୱାସଘାତକତା । ସେମାନେ ନ ଖାଇ ମରୁଥିବା ବେଳେ ତୁମେ ସରକାରୀ ରିପୋର୍ଟକୁ ବଦଳ କରି ସେମାନେ ରୋଗରେ ମରିଛନ୍ତି ବୋଲି କହିଲ । ସ୍ୱର୍ଗରାଜ୍ୟରେ ମଣିଷ ମାରିବା ଅପେକ୍ଷା ଜନସାଧାରଣଙ୍କୁ ଠକିବା ଓ ତାଙ୍କ ସମ୍ପତ୍ତି ଲୁଟି କରିବାକୁ ଅଧିକ ଗୁରୁତର ଅପରାଧ ହିସାବରେ ଧରାଯାଏ ।

ଭୂତ ନେତାମାନେ ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ସେମାନେ କହିଲେ, ଯମରାଜାଙ୍କ ଭାରତୀୟ ଗଣତନ୍ତ୍ର ବିଷୟରେ ଧାରଣା ନଥିବାରୁ ଏପରି କହୁଛନ୍ତି । ଆମ ଅପେକ୍ଷା ସେମାନେ ଅଧିକ ଧାର୍ମିକ ତଥା ସଚ୍ଚୋଟ ରାଜନେତା କଦାପି ହେଇ ନ ପାରନ୍ତି । ଆପଣ ସେମାନଙ୍କ ପାଇଁ ଅନୁଚିତ ଭାବେ ଉଦାରତା ପ୍ରଦର୍ଶନ କରୁ ଥିବାରୁ ଆମେ ଆପଣଙ୍କ ବିରୋଧରେ ବିଷ୍ଣୁଙ୍କ ପାଖରେ ଫେରାଦ ଦେବୁଁ ।

ଯମରାଜ ପୁଣି ଥରେ ହସିଦେଲେ । ତାଙ୍କ ହସରୁ ଜଣା ପଡ଼େନାହିଁ ସେ ଆଶୀର୍ବାଦ କରୁଚନ୍ତି କି ଅଭିଶାପ ଦଉଚନ୍ତି । ସେ ଭୂତମାନଙ୍କ କଥାକୁ ପସନ୍ଦ କଲେ କି ନାହିଁ ଜଣା ପଡ଼ିଲା ନାହିଁ ।

ଭୂତମାନେ ଯାଇ ବିଷ୍ଣୁଙ୍କ ଠାରେ ପହଞ୍ଚିଲେ । ସେମାନେ 'ଯମରାଜ ପାତର ଅନ୍ତର କରୁଛନ୍ତି ଯାହା ଫଳରେ ଜଣେ ବିଶିଷ୍ଟ ଦେଶସେବୀ ହିସାବରେ ପୃଥିବୀରେ ସେମାନଙ୍କ ଇମେଜ୍ ନଷ୍ଟ ହେଉଛି' ବୋଲି ଅଭିଯୋଗ କଲେ । ଜଣେ ପୁରୁଣା ଭୂତ ନେତା କହିଲେ ଆପଣ ନୀତି ନିର୍ଦ୍ଧାରିତ କରି ସାରିଛନ୍ତି ଯେ ଆମେ ସବୁ ଆତ୍ମାକୁ ନେଇ ପୁଣି ଥରେ ମର୍ତ୍ତ୍ୟକୁ ଯାଇ ପାରିବୁ । ମଣିଷର ଲୀଳାଖେଳା କେବେ ସରେ ନାହିଁ । ସେଇ ଅନୁସାରେ ଆମେ ଯଦିବା କିଛି ପାପ କରିଛୁ ବା କରିବୁ, ସେ ସବୁ ତା ପରଜନ୍ମରେ ପ୍ରାୟଶ୍ଚିତ୍ତ ହେବ । ଯଦି ଗତ ଜନ୍ମର ପାପ ପାଇଁ (ଯଦିଓ ଯମଙ୍କ କଥାରେ ଆମେ ଏକମତ ନୁହେଁ) ଆମକୁ ଦଣ୍ଡ ମିଳିବାର ଅଛି ତେବେ ଆଗେ ଜନ୍ମ ଦିଆଯାଉ । ଏବଂ ସେ କାମଟା ତ୍ୱରାନ୍ୱିତ ହେଉ । ନିର୍ବାଚନ ସରିଗଲେ ଆଉ କି ଲାଭ ? ଆଉ ଜଣେ କହିଲେ, ଏବେ ତ ନିର୍ବାଚନ ପରେ ଜଣେ ନେତାଙ୍କ ଯେତିକି ଲାଭ ନିର୍ବାଚନ ପୂର୍ବରୁ

କଣ୍ଭେଷ୍ଟ କଲେ (ମନ୍ତ୍ରୀ ହେବାର ଆଶା ନରଖି) ତା'ଠୁ ବେଶୀ ଲାଭ । ତେଣୁ ଆମ କଥା ଜଲ୍‌ଦି ବିଚାର କରାଯାଉ । ଜଣେ ମଧ୍ୟସୟସ୍କ ଭୂତ କହିଲେ, ଯୋଉ ଦଳ ମୋ ସହିତ ବିଶ୍ୱାସଘାତକତା କରି ଅନ୍ୟ ଦଳ ଗଢ଼ିଥିଲେ ସେମାନଙ୍କୁ ଆପଣ ଆଖିବୁଜି ଦେଉଚନ୍ତି ବୋଧହୁଏ ।

ବିଷ୍ଣୁ ସବୁ କଥା ଶୁଣିଲେ ଏବଂ କହିଲେ, ମର୍ତ୍ତ୍ୟରେ ନିର୍ବାଚନ ବାଜା ବାଜିଲେ ତମେ ଏଠି ସ୍ଥିର ହେଇ ରହିପାରିବ ନାହିଁ ଏକଥା ମୁଁ ଜାଣେ । ସେ ସମୟରେ ତମେ ସେଠି ଥିଲେ ଯେତିକି ଉତ୍ପାତ କରନ୍ତ ଏଠି ରହିଲେ ତା ଅପେକ୍ଷା ବେଶି 'ଲ ଆଣ୍ଡ ଅର୍ଡର' ସୃଷ୍ଟି କରୁଛ । ତେଣୁ ତୁମମାନଙ୍କୁ ଅନ୍ତତଃ ସେଇ ସମୟ ପାଇଁ ସେଠାକୁ ପଠାଯିବା କଥା ମୁଁ ଚିନ୍ତା କରୁଚି ।

ଭୂତମାନେ କହିଲେ - ହେ ବିଷ୍ଣୁ! ରାଜନୀତି ଆମେ ଆପଣଙ୍କଠାରୁ ଶିକ୍ଷା କରିଛୁ । ଆମେ କେବଳ ଆପଣଙ୍କ ନୀତି ନିୟମର ସଫଳ ରୂପାୟନ ପାଇଁ କାମ କରୁ । ତେଣୁ ଆପଣ ଆମକୁ ଅସ୍ଥାୟୀ ନୁହେଁ ସ୍ଥାୟୀ ଭାବରେ ସେଠାକୁ ପ୍ରେରଣ କରନ୍ତୁ । ଆପଣ ଆମକୁ ଏପରି ବର ଦିଅନ୍ତୁ ଯେ ଆମେ ଆପଣ ଓ ଆପଣଙ୍କ ଭକ୍ତଙ୍କ ସମ୍ପର୍କକୁ ସେଠି ଦୃଢ଼ କରି ପାରିବୁ । ଲୋକମାନେ ଯେମିତି ଆମକୁ କୌଣସି କାମରେ ଦୋଷ ଦେଇ ନ ପାରନ୍ତି ।

ବିଷ୍ଣୁ ବହୁତ ଖୁସି ହୋଇଗଲେ । ସେ କହିଲେ - ତଥାସ୍ତୁ । ତୁମେ ଯେତେଦିନ ଯାଏ ମୋ ନୀତି ନିୟମ ଅନୁସାରେ ରାଜନୀତି କରୁଥିବ ସେତେଦିନ ଯାଏ ଲୋକେ ତୁମକୁ ଦୋଷ ଦେବେ ନାହିଁ । ଅର୍ଥାତ ତୁମେ ଲୋକମାନଙ୍କୁ ଯେଉଁ ପ୍ରତିଶ୍ରୁତିମାନ ଦେଉଥିବ ପର ମୁହୂର୍ତ୍ତରେ ସେବୁ ତୁମେ ଭୁଲି ଯାଉଥିବ ।

(ଶ୍ରୀହରିବୋଲ)

***

# ଶୋକ ସଭା

ରଘୁରାଜ ବାବୁ ଯେତେଥର କହନ୍ତି 'ଲୋକସଭା' ତାଙ୍କ ମାଆ ସେତେଥର କହନ୍ତି 'ଶୋକ ସଭା' । ଥରେ ରଘୁରାଜ ବାବୁଙ୍କୁ କଥାଟା ବଡ଼ ବାଧିଲା । ତାର କାରଣ ସେ ସେଥର ଅନେକ ଦିନ ପରେ ଲୋକସଭାର ଅଧିବେଶନକୁ ଯାଉଥିଲେ । ଯିବାର ଅନେକ ପୂର୍ବରୁ ସେ ଜ୍ୟୋତିଷ ଡକେଇ ଶୁଭ ଦିନ ଓ ଶୁଭ ମୁହୂର୍ତ୍ତ ଦେଖି ଯାତ୍ରାରମ୍ଭର ବ୍ୟବସ୍ଥା କରିଥିଲେ । ଏଥିରେ ପାଞ୍ଚ ସାତ ଦିନ ଅବିବାହିତ ହେଲାଣି ବୋଲି ଦଳର ନେତା ତାଙ୍କୁ ତାଗିଦ୍ କରି ସାରିଲେଣି । ସେ ଅବସ୍ଥାରେ ତାଙ୍କ ମା' ଯେତେବେଳେ ପଚାରିଲେ - ପୁଅରେ ତୁ କଅଣ ଆଜି ଶୋକସଭାକୁ ଯିବୁ କି ? ତାଙ୍କ ମୁଣ୍ଡ ବିଗିଡ଼ି ଗଲା । ସେ ପ୍ରଥମେ ଘର ଭିତରକୁ ଯାଇ ତାଙ୍କ ସ୍ତ୍ରୀଙ୍କ ଉପରେ ବିରକ୍ତ ହେଲେ । କହିଲେ ମୁଁ କହିଚି ଶୁଭ କାମରେ ଯାଉଥିଲା ବେଳେ ମାଆକୁ ଭିତରକୁ ନେଇଯିବ ବୋଲି, ସେତକ ହେଉନାହିଁ । କିନ୍ତୁ ଯେତେହେଲେ ମାଆ । ସେ ତୁରନ୍ତ ତାଙ୍କଠାକୁ ଫେରି ଆସି କହିଲେ - ମାଆ, ତୁ ଛେନା ସନ୍ଦେଶ କଥା କହୁଚୁ ତ ? ମୁଁ ତୋ ପାଇଁ ନିଶ୍ଚୟ କିଲେ ଦି'କିଲେ ଆଣିବି । ତାଙ୍କ ମାଆ ଛେନା ସନ୍ଦେଶ ଖାଇବାକୁ ଖୁବ୍ ଭଲ ପାଆନ୍ତି । ପାର୍ଲାମେଣ୍ଟ ଭବନରେ ଥିବା ଭିଆଇପି ମାନଙ୍କ କେଣ୍ଟିନ୍‌ରେ ସବୁ ଜିନିଷ ବହୁତ ଶସ୍ତାରେ ମିଳେ । ଛେନା, ସନ୍ଦେଶ, ହରେକ୍ ରକମ୍‌ର ମିଠା, ମାଂସ ପଲାଉ ଓ ଅନେକ ପ୍ରକାର କଣ୍ଟିନେଣ୍ଟାଲ ଖାଦ୍ୟ, ବଜାର ଅପେକ୍ଷା ଅନେକ ଶସ୍ତା । ମାଗଣାରେ ମଧ ମିଳେ । 'ପରେ ପଇସା ଦେବି, ଲେଖିଦିଅ' କହିଲେ ଚଳେ । ପରେ ମନେ ଥିଲେ ତ ? ମନେ ପଡ଼ିଲେ ମଧ କିଏ ଦଉଚି ? ଏମିତି ଅନେକ ସୁବିଧା । ଏଇଥି ପାଇଁ ବୋଧେ ପେଟ୍ରୋଲ ଦାମ ବଢ଼ିଲେ ଯେ ବଜାର ଦର ବଢ଼ିଯାଏ ଏକଥା ଭିଆଇପି ମାନେ ଜାଣି ପାରନ୍ତି ନାହିଁ ।

ମାଆକୁ ଛେନା ସନ୍ଦେଶର ପ୍ରତିଶ୍ରୁତି ଦେଇ ରଘୁରାଜବାବୁ ଯେ ସନ୍ତୁଷ୍ଟ ହେଇଗଲେ ତା ନୁହେଁ । ସେ ତାଙ୍କ ପାଖରେ ବସି ପଡ଼ିଲେ ଏବଂ ଅତି କଅଁଳ

ସ୍ୱରରେ ପଚାରିଲେ - ମାଆଲୋ ! ମୋତେ ତୁ ଗୋଟିଏ କଥା କହିବୁ ? ତୁ ଏ ଲୋକସଭାଟିକୁ ସବୁ ବେଳେ ଶୋକସଭା କାହିଁକି କହୁ, କହିଲୁ ?

- ଆରେ ପୁଅ ସେଇଟା ଏକାକଥା । କି ଫରକ ଅଛି କହତ ? ତୋତେ ସମସ୍ତେ ଡାକୁଛନ୍ତି ରଘୁରାଜ । ମୁଁ ତୋତେ ଡାକେ 'ପୁଅ', ଏକା ଜଣେ, ନାଁ ଦୁଇଟା । ରଘୁରାଜ ବାବୁ ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ସେ କହିଲେ କିନ୍ତୁ ଶୋକସଭାର ଅର୍ଥ ଯେ ଖରାପ ଏ କଥା ତୁ ଜାଣୁ ? କେହି ମଲେ ଶୋକସଭା ହୁଏ । କିନ୍ତୁ ଏଇଠି ସମସ୍ତେ ବଞ୍ଚିଚନ୍ତି ।

ମାଆ କହିଲେ - ଆରେ ପୁଅ ! କଥାଟା ଏତେ ଗହୀରରେ ଅଛି ବୋଲିତ ଜାଣି ନଥିଲି । ତୋ ଗୋସାଁବାପ ନାଁ କଣ କହିଲୁ ? ରଘୁରାଜବାବୁ କହିଲେ - ଲୋକନାଥ । ମାଆ କହିଲେ - ବାସ୍ ସେଇଥିପାଇଁ ମୁଁ ସେ ଅକ୍ଷର ପାଟିରେ ଧରି ପାରେ ନାହିଁ । ଯେତେହେଲେ ଗୁରୁଜନ । ସେମାନଙ୍କ ନାଁ ଧଇଲେ ପାପ ହବ । ଆଉ ଶୋକସଭାଟା ଯଦି ଖରାପ, ସେ ଖରାପଟା ସେମାନଙ୍କ ପାଖରେ ଥାଉ । ମୁଁ ଭଲ ଉଦ୍ଦେଶ୍ୟରେ କହୁଚି ।

ରଘୁରାଜ ବାବୁ ମୁଣ୍ଡରେ ହାତ ଦେଇ ବସିଲେ । ସେ ଆଉ ମାଆକୁ କଅଣ କହିବେ ? ସେ ସେଠୁ ଉଠି ଚାଲିଗଲେ ।

କିନ୍ତୁ ତାଙ୍କ ମନ ଭିତରେ ସବୁବେଳେ ଗୋଟିଏ ଖୁଟ୍‌କା ରହିଲା । ଠିକ୍ ଯାତ୍ରାରମ୍ଭ କରିବା ପୂର୍ବରୁ ମାଆ ପାଟିରୁ ଅଚାନକ ଯାହା ବାହାରିପଡ଼ିଲା ତାହା ଅମଙ୍ଗଳ ସୂଚନା ଦେଉଚି । ଏଥିରେ କାହାରି କିଛି କ୍ଷତି ହେବ ନାହିଁତ ? ସତକୁ ସତ କେହି ଆଜି.... ? ସେ ଆଉ ଲୋକସଭା ଯିବେ କଅଣ ? ସିଧା ଚାଲିଲେ ଜ୍ୟୋତିଷ ସମ୍ରାଟ ନିମାଇଁ ଶର୍ମାଙ୍କ ପାଖକୁ । ଏଇ କେତେ ଦିନ ହେଲା ପ୍ରଧାନମନ୍ତ୍ରୀ, ଗୃହମନ୍ତ୍ରୀ ଆଉ କେତେକ ମନ୍ତ୍ରୀଙ୍କ ଦେହ ଭଲ ରହୁନି । ସେମାନଙ୍କ ହାର୍ଟ ପ୍ରୋବ୍ଲେମ୍ । ନିମାଇଁ ବାବୁ ତାଙ୍କର ପରମ ବନ୍ଧୁ । ସେ ତାଙ୍କ ପାଖକୁ ଯାଇ ପଚାରିଲେ, ଅତ୍ୟନ୍ତ ସିଧା ସଳଖ ପ୍ରଶ୍ନଟିଏ । ବନ୍ଧୁ! ଟିକିଏ କହିଲ, ଆଜି ଲୋକସଭାରେ ଶୋକସଭା ପାଳିତ ହେବାର ଅଛିକି ?

ନିମାଇଁବାବୁ କମ୍ପ୍ୟୁଟର ଉପରେ ଆଉ ଟିକିଏ ଅଧିକ ମନୋନିବେଶ କରି କହିଲେ ସେ ସବୁ ଲକ୍ଷଣ ତ ପ୍ରକାଶ ପାଉନାହିଁ । ସମସ୍ତଙ୍କ ଗ୍ରହ ଏବେ ଯେଝା ସ୍ଥାନରେ ଆରାମରେ ଅବସ୍ଥାନ କରୁଛନ୍ତି । ସେମାନେ ଏବେ ଅନ୍ୟ ଗ୍ରହକୁ ଯାତ୍ରା କରିବାର ସମ୍ଭାବନା ମୋତେ ନାହିଁ ।

ରଘୁରାଜ ବାବୁ ଖୁସି ହୋଇଗଲେ । ଯା ହେଉ ଚିନ୍ତାଗଲା । ସେ ସିଧା ପାର୍ଲାମେଣ୍ଟ ଗୃହ ଆଡ଼କୁ ମୁହେଁଇଲେ । କିନ୍ତୁ ଲୋକସଭା ଆଡ଼କୁ ଯାଉଥିଲା ବେଳେ ତାଙ୍କର ମନେ ପଡ଼ିଲା ଛେନା ସନ୍ଦେଶଟା ଏତେ ସୁସ୍ୱାଦୁ ଓ ଉନ୍ନତମାନର ଯେ ତାହା ଦିନ ଗୋଟାଏ ପୂର୍ବରୁ ସରିଯାଏ । ସେ ଆଗ ଗୋଟାଏ ପ୍ଲେଟ୍ ସେଥିରୁ ନେଇ ନିଜେ ଖାଇବାକୁ ବସିଲେ ଏବଂ ଆଉ ଗୋଟିଏ କିଲୋ ପ୍ୟାକ କରିବାକୁ ଅର୍ଡର ଦେଲେ । ହଠାତ୍ ତାଙ୍କ ପକେଟ୍‌ର ମୋବାଇଲ୍ ବାଜି ଉଠିଲା । ପାଟିର ଗୋଟିଏ ପାଖକୁ ସନ୍ଦେଶକୁ ନେଇ କହିଲେ – "ହାଲୋ" । ସେ ପଟରୁ ସ୍ୱର ଭାସି ଉଠିଲା ! ତୁ ଏବେ କୋଉଠି ଅଛୁ ?"

"ପାର୍ଲାମେଣ୍ଟ ଭବନ କେଣ୍ଟିନ୍‌ରେ ସାର୍ ।"

"ଆରେ ତୁ ସେଠି ଏବେ ସନ୍ଦେଶ ଖାଉଥା, ଏଆଡ଼େ ସବୁ ସରିଗଲାଣି ।"

"ସାର୍ କଅଣ ହେଲା ସାର୍ ?"

"ତୁ ଆହୁରି ପଚାରୁଛୁ ? ମୁଁ ତୋତେ ଏଇଥିପାଇଁ ସେଠାକୁ ପଠାଇଥିଲି ?"

"ସାର୍... ସାର୍.... !"

"ଆଉ କଅଣ 'ସାର ସାର୍' ହେଉଛୁ ? ତୁ ନ ଯିବା ଦ୍ୱାରା ଗୋଟିଏ ଭୋଟରେ ସେ ବିଲ୍‌ଟା କାଟ ଖାଇଗଲା । ମୋର କେତେ ହଜାର କୋଟି ଟଙ୍କା ବୁଡ଼ିଗଲା ଜାଣୁ ? ଏବେ ତୋତେ ରଖି ଲାଭ କଅଣ ?"

ମୋବାଇଲ୍ ଅଫ୍ ହେଲା ।

(ହରିବୋଲ)

***

# ଚୋରାଧନ

ମହାରାଜା ସେ ଦିନ ଯେତେବେଳେ ଶୁଣିଲେ ତାଙ୍କ ରାଜ୍ୟର ଲୋକମାନଙ୍କ ପାଖରେ ଚୋରାଧନ ଗଚ୍ଛିତ ଅଛି ସେ ଆଶ୍ଚର୍ଯ୍ୟ ହୋଇଗଲେ । ଲୋକଙ୍କ ପାଖକୁ ଏତେ ଚୋରାଧନ କୋଉଠୁ ଆସିଲା ? କେମିତି ଆସିଲା ? ସେ ଭାବିଲେ ଯଦି ସମସ୍ତଙ୍କ ପାଖରେ କିଛି ନା କିଛି ଚୋରାଧନ ଅଛି ତେବେ ତାଙ୍କ ରାଜ୍ୟ ଚୋରାଧନର ରାଜ୍ୟ ଛଡ଼ା ଆଉ କଅଣ ହୋଇପାରେ ? ତାଙ୍କ ମନ ଭାରାକ୍ରାନ୍ତ ହୋଇ ଉଠିଲା । ସେ ଯେ ଭାବୁଥିଲେ ନ୍ୟାୟୋଚିତ ଉପାୟରେ ଅର୍ଜିତ ଧନ କେବଳ ତାଙ୍କ ଦେଶବାସୀଙ୍କ ଠାରେ ଅଛି ଏବଂ ଏହା ଦ୍ୱାରା ପ୍ରକୃତ ରାମରାଜ୍ୟ ପ୍ରତିଷ୍ଠା ସମ୍ଭବ, ସେ ସ୍ୱପ୍ନ ଏବେ ତାଙ୍କର ମଉଳି ଯାଉଛି ।

ମନ୍ତ୍ରୀ ତାଙ୍କୁ କହିଲେ ଏଇ ପ୍ରଚୁର ଚୋରାଧନ ହିଁ ମୂଳ କାରଣ ଯୋଉଥିପାଇଁ ରାଜ୍ୟରେ ଅଶାନ୍ତି ବୃଦ୍ଧି ପାଉଛି । ଆଇନ୍ ଶୃଙ୍ଖଳା ପରିସ୍ଥିତି ରସାତଳକୁ ଗଲାଣି । ଚୋରୀ,ଡକାୟତି, ହତ୍ୟା, ନାରୀଅପହରଣ ଓ ଧର୍ଷଣ ଅତି ମାତ୍ରାରେ ବୃଦ୍ଧି ପାଉଛି । ଲୋକେ ଆଇନ୍‌କୁ ଆଉ ମୋଟେ ମାନୁନାହାନ୍ତି । ଗୋଟିଏ ପରେ ଗୋଟିଏ ଅପରାଧ କରି ଚାଲିଛନ୍ତି । ଯେତେ କଠୋର ଦଣ୍ଡ ଦେଲେ ମଧ ଖାତିର କରୁନାହାନ୍ତି ।

ଦଣ୍ଡକୁ ଖାତିର କରୁନାହାନ୍ତି ? ତା ମାନେ ? ଜଣକୁ ବେତ୍ରାଘାତ ହେଉଥିଲା ବେଳେ ସେ କଅଣ ହସୁଥାଏ ? ରାଜା ପଚାରିଲେ ।

ନା ମହାରାଜ ସେ କଥା ନୁହେଁ । ଆମେ ଦେଖୁଛୁଁ ଜଣେ ଅପରାଧୀକୁ ରାଜପୋଲିସ୍ ବାନ୍ଧି ନେଉଥିଲା ବେଳେ ସେ ହସୁଥାଏ ଏବଂ ଲୋକମାନଙ୍କୁ ଦୁଇ ଆଙ୍ଗୁଳି ଦେଖାଇଥାଏ । ଦୁଇ ଆଙ୍ଗୁଳିର ଅର୍ଥ ଭିକ୍ଟ୍ରି ବା ବିଜୟ ସୁନିଶ୍ଚିତ ।

ସେମାନେ ଆଗରୁ କେମିତି ଜାଣି ପାରୁଛନ୍ତି ଯେ ଏଥିରେ ଜୟଲାଭ କରିବେ ବୋଲି ? ଏଥିରେ କିଛି ଦୁର୍ନୀତି ଅଛି କି ?

ଥିବ । ଏଥିରେ ଅସମ୍ଭବ କିଛି ନାହିଁ । ଦୁର୍ନୀତି ତ ଆଜିକାଲି ଆମ ବେଡରୁମ୍‌ରେ ମଧ୍ୟ ପଶି ସାରିଲାଣି । ସ୍ୱାମୀସ୍ତ୍ରୀର ସମ୍ପର୍କ ମଧ୍ୟ ଏବେ ଦୁର୍ନୀତିର ଅଧୀନ । ବିନା ଲାଞ୍ଚରେ ଆଉ ସ୍ତ୍ରୀ କିମ୍ବା ସ୍ୱାମୀ ବୋଲ ମାନୁନାହାନ୍ତି ।

ଏ କଥା ସତ ମହାମନ୍ତ୍ରୀ । ମୋ ନିଜ କଥାରୁ ମୁଁ ବୁଝୁଛି । ହେଇ ଦେଖ, ମହାରାଣୀ ତାଙ୍କ ଜନ୍ମ ଦିନରେ ଗୋଟିଏ ହୀରାମୁଦି ଉପହାର ମାଗିଥିଲେ । ମୁଁ ଦେଇନଥିଲି ବୋଲି ସେ ଦୁଇଦିନ କାଳ ଶୟନ କକ୍ଷକୁ ଆସିନଥିଲେ । ତୁମେ ତ ଜାଣ ସେ ମୋର ସର୍ବକନିଷ୍ଠା ରାଣୀ । ମହାରାଜ ଦୀର୍ଘଶ୍ୱାସ ପକାଇଲେ ।

ରାଣୀମାନେ ତ ଦୁର୍ନୀତିର ମୂଳ । ମନ୍ତ୍ରୀ କହିଲେ ।

ସତେ ? ତୁମେ କିପରି ଜାଣିଲ ମନ୍ତ୍ରୀ ? ମୁଁ ଭାବୁଛି ରାଣୀମାନେ ଯାହା ପାଆନ୍ତି ସେ ସବୁ ସେମାନଙ୍କର ପ୍ରାପ୍ୟ । ଉପହାର ଉପଢୌକନକୁ ଦୁର୍ନୀତି ଭିତରେ ରଖି ହେବ ନାହିଁ । ତାକୁ ରାଜକୀୟ ସମ୍ମାନ ଭିତରେ ଗଣାଯିବା ଉଚିତ୍ । ଏ ନିୟମତ ଯୁଗେ ଯୁଗେ ଚଳି ଆସିଛି ।

ମନ୍ତ୍ରୀ ଚୁପ୍ ରହିଲେ ।

ରାଜା କହିଲେ । ହଉ, ଉପହାର କଥା ଛାଡ଼ । ଉପହାର ସବୁ ସିନା ରାଜାଙ୍କ ପାଖକୁ ଆସେ । ସାଧାରଣ ଜନତାଙ୍କ ପାଖକୁ ଯାଏ ନାହିଁ । ସେମାନଙ୍କ ପାଖକୁ ଚୋରାଧନ କୁଆଡୁ ଆସୁଛି ? ତୁମେ ତ କହୁଛ ଚୋରଧନ ହିଁ ସବୁ ଅନର୍ଥର ମୂଳ ।

ମନ୍ତ୍ରୀ କହିଲେ ଏ ସବୁର ଗୋଟିଏ ତଦନ୍ତ ହେବା ଉଚିତ୍ ।

ମନ୍ତ୍ରୀ ହସିଲେ ଏବେ ଆଉ ସାଧୁ ସନ୍ୟାସି କାହାନ୍ତି ମହାରାଜ ? ସମସ୍ତେ କୋଟିପତି । ସେମାନଙ୍କର ରତ୍ନ ସିଂହାସନ ଅଛି । ସେମାନେ ମଧ୍ୟ ହାତୀଦାନ୍ତ ପଲଙ୍କରେ ଶୁଅନ୍ତି । ସେମାନଙ୍କର ଖାଦ୍ୟ କୌଣସି ଗୁଣରେ ରାଜାଙ୍କ ଖାଦ୍ୟଠାରୁ କମ୍ ନୁହେଁ । ସେମାନେ ମଧ୍ୟ ରାଜକୀୟ ସମ୍ମାନ ପାଆନ୍ତି । ସେମାନଙ୍କ ଚଲାବାଟରେ ଫୁଲ ବିଛା ହୁଏ । ପଦ୍ମ ଓ ଗୋଲାପ ପାଖୁଡ଼ା ସବୁ ତାଙ୍କ ପାଦତଳେ ଥାଏ ।

ରାଜା ହଠାତ୍ ପଚାରିଲେ ସେମାନଙ୍କର କିନ୍ତୁ ଏକାଧିକ ରାଣୀ ନଥିବେ । ଥିଲେ ଏତେ ସୁନ୍ଦରୀ ନଥିବେ ।

ମନ୍ତ୍ରୀ ଚୁପ୍ ରହିଲେ ।

ମନ୍ତ୍ରୀ ଚୁପ୍ ହେବାର ଦେଖି ରାଜା କହିଲେ ଠିକ୍ ଅଛି । ମୋ ରାଜ୍ୟରେ କାହାରି ସୁନ୍ଦରୀ ସ୍ତ୍ରୀ ଥିଲେ କ୍ଷତି ନାହିଁ । କିନ୍ତୁ ଚୋରାଧନ ଆସିଲା କୁଆଡ଼ୁ ? କିଏ ଆଣିଲା ? ସେ ଟିକିଏ ରହିଗଲେ, ତା ପରେ କହିଲେ ମୁଁ ତୁମକୁ ବର୍ଷଟିଏ ସମୟ ଦେଲି । ସେଇ ସମୟ ଭିତରେ ଏ ରାଜ୍ୟରେ କାହାର କେତେ ଚୋରାଧନ ଅଛି ତାକୁ ବାହାର କର । ତୁମର ବର୍ଷଯାଏ ରାଜପ୍ରାସାଦକୁ ଆସିବା ଦରକାର ନାହିଁ, ବର୍ଷକ ପରେ ଆସିବ ।

ମନ୍ତ୍ରୀ ଚାଲିଗଲେ ।

ଇତିମଧ୍ୟରେ ରାଜା ମନ୍ତ୍ରୀଙ୍କ କଥା ସମ୍ପୂର୍ଣ୍ଣ ଭୁଲି ଯାଇଥିଲେ । ବର୍ଷେ ଗଲା, ଦୁଇବର୍ଷ ଗଲା । ପାଞ୍ଚବର୍ଷ ପରେ ତାଙ୍କର ମନେ ପଡ଼ିଲା । ସେ ମନ୍ତ୍ରୀଙ୍କୁ ଡକାଇଲେ । ସେତେବେଳେ ମନ୍ତ୍ରୀଙ୍କ ଲମ୍ବା ନିଶଦାଢ଼ୀ ହୋଇଯାଇଥାଏ । ସେ ଯେ ଦିନରାତି କାମରେ ବ୍ୟସ୍ତ ଥିଲେ ନିଶଦାଢ଼ୀ ତାହା ହିଁ ପ୍ରମାଣିତ କରୁଥିଲା ।

ରାଜା ଖୁସି ହେଲେ । କହିଲେ, ହଉ ଏଥର ରିପୋର୍ଟ ଦିଅ ।

ଚାରିଭାଗରୁ ଭାଗେ କାମ ବି ସରିନାହିଁ ମହାରାଜ । ମୋତେ ଅଧିକ ସମୟ ଦିଅନ୍ତୁ ।

ଯାହା ହେଇଛି ଦିଅ । ମୁଁ ଦେଖିବି କିଏ ସେହି ଭାଗ୍ୟବାନ ?

ମହାରାଜ ମୁଁ ରାଜପ୍ରାସାଦରୁ ଆରମ୍ଭ କରିଛି । ତାକୁ ସାରିବାକୁ ଆଉ ଦର୍ଶବର୍ଷ ଲାଗିବ । ମୋତେ କ୍ଷମା କରନ୍ତୁ ମହାରାଜ । ମନ୍ତ୍ରୀ ତଳକୁ ମୁହଁ ପୋତିଲେ ।

(ପ୍ରଜାତନ୍ତ୍ର - ୨୭.୧୧.୨୦୦୯)

***

# ଭଗବାନ ତାଙ୍କୁ ଡରନ୍ତି

ସେ ଦିନ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ବଡ଼ ଅଡୁଆରେ ପଡ଼ିଗଲେ । ଏମିତି ଅଡୁଆ ଯେ ତାଙ୍କର ଦୀର୍ଘ ୩୦ ବର୍ଷର ରାଜନୈତିକ ଜୀବନରେ ମଧ୍ୟ ସେମିତି ଅଡୁଆର ସେ କେବେ ସମ୍ମୁଖୀନ ହୋଇ ନଥିଲେ । ସେ ଗୁମ୍‌ମାରି କିଛି ସମୟ ଅଫିସରେ ବସିଗଲେ । ଏତେ ବଡ଼ ଜଟିଳ ସମସ୍ୟାଟିକୁ ସେ କେମିତି ସମାଧାନ କରିବେ ବୁଝିପାରୁ ନଥିଲେ ।

ତାଙ୍କ ରୁମ୍‌କୁ ଘରୋଇ ବିଭାଗ ସେକ୍ରେଟାରୀ ଏବଂ ତାଙ୍କ ସହିତ ରାସ୍ତା ଓ କୋଠାବାଡ଼ି ନିର୍ମାଣ ବିଭାଗ ଚିଫ୍ ଇଂଜିନିୟର ମଧ୍ୟ ପଶି ଆସିଲେ । ସେମାନେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ମତେ ଆସନ ଗ୍ରହଣ କଲେ ଏବଂ ଭାରାକ୍ରାନ୍ତ ମନ ନେଇ ବସିଥିବା ମୁଖ୍ୟମନ୍ତ୍ରୀଙ୍କୁ ଅନେଇ ରହିଲେ ।

ଏଥର ମୁଖ୍ୟମନ୍ତ୍ରୀ ସିଧା ହୋଇ ବସିଲେ ଏବଂ କହିଲେ କଥାଟା ଆଉ ଥରେ ମୋତେ କହିଲେ ।

ହୋମ ସେକ୍ରେଟାରୀ ଆରମ୍ଭ କଲେ । ସେ କହିଲେ ଆମ ଆନ୍ତର୍ଜାତୀୟ ବିମାନ ବନ୍ଦର ସଂପ୍ରସାରଣ କାମ ଚାଲିଛି । ଏଥିପାଇଁ ଆମକୁ କେନ୍ଦ୍ର ସରକାର ଅର୍ଥ ଯୋଗାଇ ଦେଇଛନ୍ତି । ତା ସହିତ ବାରମ୍ବାର କାମ ଶୀଘ୍ର ଶେଷ କରିବାକୁ ଚାପ ମଧ୍ୟ ଦେଉଛନ୍ତି । ତେଣୁ ଆମେ କାମ ଜୋର ସୋରରେ ଆରମ୍ଭ କରି ଦେଇଛୁ । କିନ୍ତୁ ହଠାତ୍ ୩/୪ ଦିନ ହେଲାଣି ଆମ କାମ ସେଠି ବନ୍ଦ ହେଇ ଯାଇଛି । ଘଟଣାଟି ଛୋଟ ଜଣା ଯାଉଥିଲେ ମଧ୍ୟ ଛୋଟ ନୁହେଁ ।

ହଁ, ସେଇଠୁ ମୋତେ ଆଉ ଥରେ କୁହନ୍ତୁ । ମୁଁ ଟେଲିଫୋନ୍‌ରେ କଥାଟାକୁ ଠିକ୍ ରୂପେ ବୁଝି ପାରିଲି ନାହିଁ । ମୁଖ୍ୟମନ୍ତ୍ରୀ କହିଲେ ।

ହଠାତ୍ ସେ ଦିନ ସକାଳେ ଆମେ ଦେଖିଲୁଁ ବିମାନ ବନ୍ଦରର ପଶ୍ଚିମ ପାଖ ପାଚେରୀ ବାହାରେ ଗୋଟାଏ ପୁରୁଣା କାଳିଆ ଘର ରହିଛି । ଜମି ଅଧିକରଣ ଆଗରୁ ସରିଚି । ତେଣୁ ଆମେ ଚାହିଁଲୁ ତାକୁ ଭାଙ୍ଗି ଦେବାକୁ ।

କି ଘର ? କିଏ ରହୁଚି ସେଥିରେ ? ମୁଖ୍ୟମନ୍ତ୍ରୀ ପ୍ରଶ୍ନ କଲେ । ଗୋଟିଏ ପକ୍କା ଘର । କେହି ରହୁ ନାହାନ୍ତି । ପରିତ୍ୟକ୍ତ ବି ହେଇଥିବ । ଠିକ୍ ଭାବେ କେହି କିଛି କହି ପାରୁ ନାହାନ୍ତି । ବାହାରୁ ଦେଖିଲେ ତାକୁ ମନ୍ଦିର କହି ହେବ କିମ୍ବା ମସଜିଦ୍ ମଧ କହିହେବ । କେହି ସେଠାକୁ ପୂଜା କରିବାକୁ କି ପ୍ରାର୍ଥନା କରିବାକୁ ଯାଆନ୍ତି ସେ ପ୍ରମାଣ ମଧ ମିଳୁ ନାହିଁ । ତେବେ ଆଖ ପାଖରେ ଥିବା କଦବା କେତେଜଣ ବୁଲୁଥିବା ଗାଈଆଳ ଟୋକା କହୁଛନ୍ତି ସେଠି ସେମାନେ ବେଳେବେଳେ କେହି ଜଣେ ଥିବାର ଦେଖିଛନ୍ତି । ବୁଲା ଫକିର ପରି ଦେଖାଯାଏ । କିନ୍ତୁ ଆମେ ଯାଇ ଦେଖିଲୁ ଘରେ କେହି ନାହିଁ, କବାଟ ଝରକା ଖୋଲା । ଜିନିଷପତ୍ର ମଧ କିଛି ନାହିଁ । କିନ୍ତୁ କେହି ଜଣେ ଯିବା ଆସିବା କରୁଥିବା କଥା ଜଣାପଡୁଛି । ହେଇପାରେ କେହି ଜଣେ ରାତିରେ ଆଶ୍ରୟ ନିଏ । ପାଦ ଚିହ୍ନ ଅଛି ।

ସେ କଥା ରାତିରେ ଦେଖିଲେ ଜଣା ପଡ଼ନ୍ତା । ଯିଏ ଅଛି ତାକୁ ଆଉ ଗୋଟିଏ କୋଉଠି ଘର କରି ଦିଆଯାଇପାରେ । ମୁଖ୍ୟମନ୍ତ୍ରୀ କହିଲେ ।

ସେତକ ମଧ ଆମେ ଦେଖି ସାରିଲୁଣି । ରାତିରେ ମିଂଜି ମିଂଜି ଆଲୁଅ ଜଳୁଥିବାର ଦେଖି ପୁଲିସ୍ ଯେତେବେଳେ ସେଠାକୁ ଯାଏ, ଦେଖେ କେହିଁ ନାହାନ୍ତି ଆଲୁଅ ମଧ ଆଉ ଜଳୁ ନାହିଁ ।

ତେବେ ଘରଟା ଭାଙ୍ଗି ଦିଅନ୍ତୁ । କାମ କୌଣସି ପ୍ରକାରେ ସେଠି ବନ୍ଦ ରଖି ହେବ ନାହିଁ । ପରେ ଯଦି କେହି ଆସେ ତାକୁ, ଭିକାରୀ ହେଇଥିଲେ ମଧ, କ୍ଷତିପୂରଣ ଦେଇ ଥଇଥାନ କରେଇ ଦିଆଯିବ । ମୁଖ୍ୟମନ୍ତ୍ରୀ କହିଲେ ।

ସାର୍, କଥାତ ସେଇଠି । ଘରଟା ଯେତେ ଚେଷ୍ଟା କଲେ ମଧ ଭାଙ୍ଗି ହେଉନାହିଁ । କୋଉଥିରେ ତିଆରି କେଜାଣି ? ଚିଫ୍ ଇଂଜିନିୟର କହିଲେ ।

ମାନେ ? ଘର କେମିତି ଭଙ୍ଗାହେବ ସେ କଥା ମୋତେ କହିବାକୁ ପଡ଼ିବ ? ମୁଖ୍ୟମନ୍ତ୍ରୀ ଟିକିଏ ବିରକ୍ତ ହେଲେ ବୋଧେ ।

ସାର୍, ଅସୁବିଧାଟି ସେଇଠି । ଆମେ ବୁଲ୍‌ଡୋଜର ଠାରୁ ଆରମ୍ଭ କରି ଖୁବ୍ ଶକ୍ତିଶାଳୀ କ୍ରେନ୍ ମଧ ଲଗେଇ ସାରିଲୁଣି । କିନ୍ତୁ କୌଣସି ପ୍ରକାରେ ଖଣ୍ଡେ ଇଟା ଖସେଇବା ଦୂରର କଥା ତା ଦେହରୁ ଚୁନ ଟିକିଏ ମଧ ଖସେଇ ହେଉ ନାହିଁ ।

ମିରାକଲ୍ ? ଆପଣ ମୋତେ ମିରାକଲ୍ କଥା କହୁଛନ୍ତି ?

ସାର୍, ଟିକିଏ ଶୁଣି ସାରନ୍ତୁ । ଯେତେବେଳେ ସବୁଚେଷ୍ଟା ଆମର ବିଫଳ ହେଲା ସେତେବେଳେ ଆମେ ତା ତଳେ ଡିନାମାଇଟ୍ ଲଗେଇ ଉଡ଼େଇ ଦେବାକୁ ଚେଷ୍ଟା କଲୁ । କି ଆଶ୍ଚର୍ଯ୍ୟ, ଏତେ ଶକ୍ତିଶାଳୀ ବିସ୍ଫୋରକ ଦିଆ ଯାଇଥିଲା ଯେ ପଚାଶ ଫୁଟର ଗାତଟିଏ ହେଇଗଲା । କିନ୍ତୁ ଘରଟି ଉଁ କି ଚୁଁ ମଧ କଲା ନାହିଁ । ସେମିତି ଠିଆ ହେଇଚି, ସମ୍ପୂର୍ଣ୍ଣ ଅକ୍ଷତ ଶରୀରରେ ।

ଆଖ ପାଖରେ ଜୁନିଅର ପି. ସି. ସରକାର ଥିଲେ କି ? ମୁଖ୍ୟମନ୍ତ୍ରୀ ସାମାନ୍ୟ ହସିଲେ ଏବଂ କହିଲେ ।

ଚିଫ୍ ଇଂଜିନିୟର କହିଲେ ମନ୍ଦିର ଏବଂ ମସଜିଦ୍ ଭଳିଆ ଦେଖା ଯାଉଥିବା ଘରଟିକୁ ଭାଙ୍ଗିଲା ବେଳେ କାଳେ କିଛି ଗୋଳମାଳ ହେବ ଭାବି ଆମେ ପ୍ରଚୁର ପରିମାଣରେ ସିକ୍ୟୁରିଟି ଫୋର୍ସ ନେଇଥିଲୁ । ସେମାନେ ବିରାଟ ଅଞ୍ଚଳଟାକୁ ଘେରି ରଖିଛନ୍ତି । ଖଣ୍ଡ ମଣ୍ଡଳରେ କେହି କୁଆଡ଼େ ନାହାନ୍ତି । ସେଠି ଜୁନିଅର ପି.ସି. ସରକାର କୁଆଡୁ ଆସିବେ ? ମୁଁ ତାଙ୍କୁ ଚିହ୍ନିଛି ।

ହୋମ୍ ସେକ୍ରେଟାରୀ କହିଲେ, ସେ ବିତ ଏବେ ଦୁଇ ମାସ ହେଲା ଜାପାନ ଅଞ୍ଚଳକୁ ଯାଇଚନ୍ତି । ଏ ବର୍ଷ ଫେରିବାର ସମ୍ଭାବନା କମ୍ ।

ମୁଖ୍ୟମନ୍ତ୍ରୀ ଏଥର ପୁଣି ଥରେ ଚିନ୍ତାମଗ୍ନ ହେଇଗଲେ । ସେ ଆଖି ବୁଜି କିଛି ସମୟ ଚେଆରକୁ ଆଉଜି ବସିଗଲେ ।

କିଛି ସମୟ ପରେ ସେ ହଠାତ୍ ସିଧା ହେଇ ବସିଲେ ଏବଂ ହୋମ୍ ସେକ୍ରେଟାରୀଙ୍କୁ କହିଲେ ଆପଣ ଶୀଘ୍ର ଗୋଟିଏ ଉଡ଼ାଜାହାଜ ଠିକ୍ କରନ୍ତୁ ।

ଗୋଟିଏ, କାହିଁକି ସାର୍, ମୁଁ ଏବେ ଆପଣଙ୍କ ଆଦେଶ ପାଇଲେ ପାଞ୍ଚଟି ଉଡ଼ାଜାହାଜ ଠିକ୍ କରି ଦେବି । ଏଇଟା କୋଉ ବଡ଼ କଥା ? କିନ୍ତୁ ଅସଲ କଥା ହେଉଚି ଗୋଟିଏ ବୋଲି ସେମିତି ଡେଡିକେଟେଡ ପାଇଲଟ୍ ପାଇବିନି ।

ମାନେ ?

ସାର୍, ଯେମିତି ଉଡ଼ାଜାହାଜ ନେଇ ବିଶ୍ୱ ବାଣିଜ୍ୟ କେନ୍ଦ୍ର ଭାଙ୍ଗିବା କଥା କହୁଚନ୍ତି କି ?

ଧେତ୍, ମୁଁ ସେକଥା ମୋଟେ କହୁନାହିଁ । ମୁଁ ଦିଲ୍ଲୀ ଯିବା କଥା କହୁଚି ।

ଓହୋ ଦିଲ୍ଲୀ ଯିବେ ? ମାନେ ଘରୋଇ ମନ୍ତ୍ରୀଙ୍କୁ ସାକ୍ଷାତ କରି ଅଧିକ କେନ୍ଦ୍ରୀୟ ଫୋର୍ସ ଆଣିବା କଥା କହିବେ ? କଅଣ ଦରକାର ? ଆମ ପାଖରେ ଯଥେଷ୍ଟ ଅଛି । ସେମାନେ ବରଂ ବେଶୀ ଲୟାଲ । ଆମେ ତାକୁ ଛାଡ଼ି ..... ।

ଓହୋ - ମୁଁ କେବଳ ଦିଲ୍ଲୀ ଯିବା ପାଇଁ ଉଡ଼ାଜାହାଜଟିଏ ଠିକ୍ କରିବାକୁ କହୁଚି । ମୁଁ ଏବେ ଯିବି । ସଂନ୍ଧ୍ୟା ସୁଦ୍ଧା ଆପଣଙ୍କର ସବୁ କାମ ହେଇଯିବ । ଆପଣ ମୋଟେ ଚିନ୍ତା କରନ୍ତୁ ନାହିଁ ।

ତେବେ ଆପଣ ଏବେ ଆସନ୍ତୁ । ଉଡ଼ାଜାହାଜ ପ୍ରସ୍ତୁତ ଅଛି ।

ସେମାନେ ସମସ୍ତେ ବିମାନ ବନ୍ଦରକୁ ବାହାରି ଗଲେ । ବିମାନ ବନ୍ଦରକୁ ଯାଇ ସିକ୍ୟୁରିଟି ଏରିଆ ପାର ହେଇ ସେମାନେ ଯେତେବେଳେ ରାଜ୍ୟ ସରକାରଙ୍କ ବିମାନର ସିଡି ପାଖରେ ଯାଇ ପହଞ୍ଚିଲେ ମୁଖ୍ୟମନ୍ତ୍ରୀ ଦେଖିଲେ ତାଙ୍କ ସାମନାରେ ଜଣେ ବୁଲା ଫକୀର ଠିଆ ହୋଇଛନ୍ତି ।

ମୁଖ୍ୟମନ୍ତ୍ରୀ ଆଶ୍ଚର୍ଯ୍ୟ ହେଲେ । ତାଙ୍କ ସିକ୍ୟୁରିଟି କର୍ମଚାରୀମାନେ ଯାଇ ଫକୀରଙ୍କୁ ଘେରିଗଲେ । ସେମାନେ ତାଙ୍କ ପିସ୍ତଲ ଓ ଅଟୋମେଟିକ୍ ବନ୍ଧୁକର ମୁହଁ ଫକୀରଙ୍କ ଛାତି ପାଖରେ ରଖିଦେଲେ । ହୋମ ସେକ୍ରେଟାରୀ ପ୍ରମାଦ ଗଣିଲେ । ଏତେ ଦୃଢ଼ ନିରାପତ୍ତା ସତ୍ତ୍ୱେ ଏ ବାରବୁଲା ଲୋକଟା ୟା ଭିତରକୁ କେମିତି ଆସିଲା ? ବିଦେଶୀ ଗୁପ୍ତଚର ନା ସନ୍ତ୍ରାସବାଦୀ ? ଏ ବିମାନରେ କିଛି ଖଞ୍ଜି ଦେଇ ନାହିଁ ତ ? କିଏ ଇଏ ? ଆମ ଦୃଢ଼ ସୁରକ୍ଷାରେ କିଛି ଦୁର୍ବଳତା ରହିଗଲା କି ? ହୋମ ସେକ୍ରେଟାରୀ ଏଇ ସବୁ କଥା ଭାବୁଥିଲା ବେଳେ ମୁଖ୍ୟମନ୍ତ୍ରୀ କହିଲେ, ତାକୁ ଛାଡ଼ ମୋ ପାଖକୁ ଆସିବାକୁ ଦିଅ । ମୁଁ ତାଙ୍କ କଥା ଶୁଣିବାକୁ ଚାହେଁ ।

ହୋମ ସେକ୍ରେଟାରୀ ଆହୁରି ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ସେ'ତ ୟାଙ୍କୁ ଜାଣନ୍ତି । ଇଏତ ଆଉ ପୂର୍ବତନ ମୁଖ୍ୟମନ୍ତ୍ରୀ ନୁହନ୍ତି ଯେ ସଂଗେ ସଂଗେ କିଛି ନା କିଛି କରି ପକେଇବେ । ଇଏ ସଦା ଧୀର ସ୍ଥିର । ହାଓଡ଼ା ପାଖରେ ଗଂଗା ନଦୀର ପାଣି ପରି । ଗଭୀର ଓ ଗଂଭୀର । ତେଣୁ ସେ ନିଜକୁ ଏକ ଆସନ୍ନ ବିପଦରୁ ମୁକ୍ତ ବୋଲି ମନେ କରି ପକେଟ୍‌ରୁ ମୋବାଇଲ ବାହାର କଲେ ପୁଲିସ୍ ହେଡକ୍ୱାଟର୍ସ ସହିତ କଥା ହେବାକୁ । ଏତିକିବେଳେ ମୁଖ୍ୟମନ୍ତ୍ରୀ ତାଙ୍କୁ ହାତଠାରି ସେଥିରୁ ନିବୃତ୍ତ ହେବାକୁ କହିଲେ ।

ଲୋକଟି ମୁଖ୍ୟମନ୍ତ୍ରୀଙ୍କ ସାମନାକୁ ଆସିଲା ଏବଂ କହିଲା ଆପଣ କଅଣ ଦିଲ୍ଲୀରେ ହୋମ୍ ମିନିଷ୍ଟରଙ୍କ ପାଖକୁ ଯାଉଛନ୍ତି ?

ମୁଖ୍ୟମନ୍ତ୍ରୀ ଆହୁରି ଆଶ୍ଚର୍ଯ୍ୟ ହେଲେ । ଆରେ, ଏ ଲୋକଟି ଆମର ଗୋପନ ଗନ୍ତବ୍ୟ ସ୍ଥାନ କଥା କେମିତି ଜାଣିଲା ? ତାଙ୍କର ଦିଲ୍ଲୀ ଗସ୍ତ କଥା

ଏଇ ଘଣ୍ଟାଏ ଆଗରୁ ସ୍ଥିର ହେଲା ବେଳେ ଏ କେମିତି ଜାଣିଲା ? ହୁଏତ ଏଆର ଟ୍ରାଫିକ୍ କଣ୍ଟ୍ରୋଲ ଟାୱାର'ରୁ ଜାଣି ପାରିଥିବ । ସେଠୁ ବିମାନର ଗତି ବିଧି ଜାଣିବା କିଛି ବଡ଼ କଥା ନୁହେଁ ।

ଆପଣଙ୍କର କଅଣ ଦରକାର କହୁ ନାହାନ୍ତି ? ମୁଖ୍ୟମନ୍ତ୍ରୀ ପଚାରିଲେ ।

ମୋର କିଛି ଦରକାର ନାହିଁ । ଆପଣ ଦୟାକରି ତାଙ୍କଠାକୁ ଯାଆନ୍ତୁ ନାହିଁ ।

ସେ ଟିକିଏ ରହିଗଲେ ଏବଂ ତାପରେ କହିଲେ ଆପଣତ ଜାଣନ୍ତି ସେ ଯେତେବେଳେ ରଥରେ ସମଗ୍ର ରାଜ୍ୟ ପରିକ୍ରମା କରୁଥିଲେ, ଯେଉଁ ରାସ୍ତାରେ ରଥ ଯାଉଥିଲା ତାର ଦୁଇ ପାଖରେ ଥିବା ଘର, କୋଠା, ଗଛ ଲତା ସବୁ ପୋଡି ଯାଉଥିଲା ନଚେତ୍ ଭାଙ୍ଗି ପଡୁଥିଲା । ଆପଣ ଏ କଥା ମଧ୍ୟ ଜାଣନ୍ତି ସେ ଠିଆ ହେଇ ପଡ଼ିଲା ମାତ୍ରେ ପାଞ୍ଚ ଶହ ବର୍ଷର ପୁରୁଣା ସୌଧଟି ମାନେ ସେ ବାବରୀ ମସ୍‌ଜିଦ୍ ମାଟିରେ ମିଶି ଗଲା । ତେଣୁ ତାଙ୍କୁ ଏଠାକୁ ଡାକନ୍ତୁ ନାହିଁ । ମୋର ଛୋଟିଆ ଘରଟି ପାଇଁ ଅନ୍ୟ ଶହ ଶହ ଲୋକ ଦୁଃଖ କଷ୍ଟ ନ ପାଆନ୍ତୁ । ସେ ଆଖିରୁ ଲୁହ ପୋଛିଲେ ।

ଫକୀର ଜଣକ ସଂଗେ ସଂଗେ ଅଦୃଶ୍ୟ ହୋଇଗଲେ ।

ମୋ ନିଦ ଚାଏଁ କିନା ଭାଙ୍ଗି ଗଲା ।

(ଅଧିକାର)

***

# ମିଛ ସପକ୍ଷରେ

କେମିତି କେଜାଣି ପିଲାଟି ଖୁବ୍ କମ୍ ବୟସରୁ ମିଛ କହିବା ଆରମ୍ଭ କରିଦେଲା । ସେ ମିଛ କହିବାରେ ଏତେ ଏକ୍ସପାର୍ଟ୍ ହେଇଗଲା ଯେ ସେ ପ୍ରତି କଥାରେ ମିଛହିଁ କହି ଚାଲିଥାଏ । ସତେ ଅବା ସେ ସତ ବୋଲି କିଛି ଅଛି ସେ କଥା ସେ ମୋଟେ ଜାଣିନାହିଁ । ସେ ଯେତେ ବଢୁଥାଏ ସେତିକି ଅଧିକ ମିଛ କହୁଥାଏ । ତାର ସାଙ୍ଗମାନେ ବେଳେବେଳେ ହିସାବ କରି କହନ୍ତି ଆଜି ଦିନ ଯାକ ମିଛୁଆ ଗୋଟିଏ ବୋଲି ସତ କହି ନାହିଁ । କେହି କେହି ଯେତେବେଳେ ପଚାରନ୍ତି ଦିନକ ଭିତରେ ସେ ଆଉ କେତେଟା ମିଛ କହିଛି ? ବନ୍ଧୁମାନଙ୍କ ଉତ୍ତର ସଂଗେ ସଂଗେ ଆସିଯାଏ । ସତେ ଅବା ସେମାନେ ତାକୁ ସବୁବେଳେ ଘେରି ଯାଆନ୍ତି ଏବଂ ସତରୁ ମିଛକୁ ଅଲଗା କରି ଗଣି ପକାନ୍ତି । ତେବେ ସେ ଯା ହେଉ ପିଲାଟାର ମିଛ କହିବା ଏକ ପ୍ରକାର ଅଭ୍ୟାସରେ ପରିଣତ ହୋଇଗଲା ।

ତା ପିତାମାତା ଏବଂ ବନ୍ଧୁବାନ୍ଧବ ଏଥିପାଇଁ ଦୁଃଖ କରନ୍ତି । ସେମାନେ ଦୁଃଖ କରି କହନ୍ତି ପିଲାଟା ଏତେ ବଡ଼ ହେଲାଣି ତଥାପି ଏ ଯାଏ ସତ କଅଣ ଜାଣିଲା ନାହିଁ । ସତ ପ୍ରତି ତାର ଆଗ୍ରହ ନାହିଁ । ଥରେ ଏମିତି ହେଉଥିଲା । ତା ଘରକୁ ଜଣେ ବାବା ଆସିଥିଲେ । ବାବାଙ୍କର ଲମ୍ବା ଦାଢ଼ି ନିଶ । ଗେରୁଆ ବସ୍ତ୍ର, କାନ୍ଧରେ ଗୋଟିଏ ଲମ୍ବା ଝୁଲି । ବେକରେ ମୋଟା ରୁଦ୍ରାକ୍ଷ ମାଳା । ତାଙ୍କୁ ଯେତେବେଳେ ପିଲାର ବାପ ମାଆ ଏକଥା କହିଲେ ଓ ତାର କାରଣ ସମ୍ପର୍କରେ ପଚାରିଲେ ବାବା ଜଣକ ପିଲାକୁ ପାଖକୁ ଡାକି ପ୍ରଶ୍ନ କଲେ ତୁମେ କାହିଁକି ମିଛ କହୁଚ ? ମିଛ କହିବା ପାପ ଏ କଥା ଜାଣିଛ ତ ? ପିଲାଟି ଉତ୍ତର ଦେଲା । "ମୁଁ ସେ କଥା ଜାଣେ 'ମିଥ୍ୟାକୁ ପାପ ବୋଲି ଜାଣି, କହିବ ସଦା ସତ୍ୟବାଣୀ ।" ଏକଥା ମୁଁ ବହିରେ ପଢ଼ିଛି । କିନ୍ତୁ ଆଶ୍ଚର୍ଯ୍ୟର କଥା ମୁଁ ଯେତେବେଳେ ଯାହା କହୁଛି ତାକୁ ଅନ୍ୟମାନେ ମିଛ ବୋଲି କହୁଛନ୍ତି ।" ବାବା ଏଥିରେ ଆଶ୍ଚର୍ଯ୍ୟ

ହେଲେ ଏବଂ କହିଲେ ପିଲାର କୌଣସି କାରଣରୁ ମିଥ୍ୟା ପ୍ରତି ପ୍ରବଳ ଆକର୍ଷଣ ରହିଛି । ଏଥିପାଇଁ ବିଶେଷଜ୍ଞମାନଙ୍କ ପରାମର୍ଶ ନିଅ । ପିଲାଟି ସବୁବେଳେ ମିଛ କହୁଛି, ଏ ବିଷୟରେ କି ପ୍ରକାର ବିଶେଷଜ୍ଞମାନଙ୍କ ପରାମର୍ଶ ନିଆଯିବ ସେ କଥା ସେମାନେ ବୁଝି ପାରିଲେନି । କେହି ଜଣେ ପରାମର୍ଶ ଦେଲେ ପିଲାକୁ ପୋଲିସ୍ ଥାନାକୁ ନେଲେ ଭଲ ହେବ । ପୋଲିସ୍ ତାକୁ ସତ କହିବାକୁ ବାଧ କରିବ ଏବଂ ଏହାଦ୍ୱାରା ସତ କହିବା ତାର ଅଭ୍ୟାସରେ ପରିଣତ ହେଇଯିବ । କଥାଟା ସେମାନଙ୍କ ମନକୁ ପାଇଲା । ସେମାନେ ପିଲାକୁ ନେଇ ଥାନାବାବୁଙ୍କ ଠାରେ ପହଞ୍ଚିଲେ । କହିଲେ ମହାଶୟ । ଆପଣ ହେଲେ ସତ୍ୟର ଅବତାର । ଆପଣ ଆଇନର୍ ଦଣ୍ଡଧାରୀ । ଏହି ଦଣ୍ଡ ଦ୍ୱାରା ଆପଣ ମହାନ୍ ମିଥ୍ୟାବାଦୀଙ୍କ ଠାରୁ ସତ୍ୟ ବାହାର କରି ନିଅନ୍ତି । ତେଣୁ ଯୁଗେ ଯୁଗେ ଆପଣଙ୍କ ରେକର୍ଡ ପତ୍ର ସବୁକୁ "ସତ୍ୟର ବେଦ" ବୋଲି ଧରାଯାଇଚି ଏବଂ ତାକୁଇ ମହାମାନ୍ୟ ନ୍ୟାୟପାଳ ସସମ୍ମାନେ ଗ୍ରହଣ କରି ନିଅନ୍ତି । ଏ ପୃଥିବୀରେ ମିଥ୍ୟାଚାରକୁ ବହୁଲୋକ ବୃତ୍ତି ଭାବେ ଗ୍ରହଣ କରି ଆସିଛନ୍ତି । ଏ ପିଲାଟି ସେଇ ଆଡ଼କୁ ଯିବାକୁ ବସିଛି । ଆପଣ ମିଥ୍ୟାଚାରୀକୁ ଯେ ଖାଲି ଦଣ୍ଡିତ କରନ୍ତି ତା ନୁହେଁ ମିଥ୍ୟାଚାରର ବିଲୋପ ପାଇଁ ଆପଣଙ୍କ ଜନ୍ମ । ଆପଣ ଦୟାକରି ଏହାକୁ ବଦଳାଇ ଦିଅନ୍ତୁ ।

ପୋଲିସ୍ ବାବୁ ଲୋକଟି ମୁଖରୁ ପୋଲିସ୍‌ର ପ୍ରଶଂସା ଶୁଣି ପ୍ରୀତ ହେଲେ । ସେ ଭାବିଲେ ଏ ଲୋକଟିକୁ ସାହାଯ୍ୟ କରିବା ତାଙ୍କର କର୍ତ୍ତବ୍ୟ । ସେ କହିଲେ ଆଧୁନିକ ଯୁଗରେ ସତ୍ୟର ଆବିଷ୍କାର ପାଇଁ ଯନ୍ତ୍ର ତିଆରି ହେଲାଣି । ମଣିଷର କାମରେ ସବୁବେଳେ ସ୍ୱଚ୍ଛତା ରହୁନାହିଁ । ତେଣୁ ଯନ୍ତ୍ରର ଆବଶ୍ୟକତା ଜରୁରୀ ହେଇ ପଡ଼ିଛି । ମଣିଷ ଏପରି ଏକ ଯନ୍ତ୍ର ତିଆରି କରିଛି ଯାହା ଦ୍ୱାରା ସେ ମଣିଷ ଭିତରୁ ସତ୍ୟଟାକୁ ବାହାର କରି ଆଣି ପାରିବ । ସୁଇଚ୍ ଟିପି ଦେଲେ ମଣିଷ ଭିତରୁ ମିଥ୍ୟା ଓ ସତ୍ୟ ଛାଣି ହେଇ ଅଲଗା ଅଲଗା ହେଇଯିବ । କିନ୍ତୁ ମଣିଷର ପ୍ରତ୍ୟେକ କଥାରେ ଏହି ଯନ୍ତ୍ରକୁ ବ୍ୟବହାର କରି ହେବ ନାହିଁ । ତୁମର ଏହି ପିଲାଟି ଯେ ସବୁବେଳେ ମିଛ କହୁଛି ତାର ପ୍ରମାଣ ଆବଶ୍ୟକ । ଆମେ ସବୁବେଳେ ପ୍ରମାଣ ଉପରେ କାମ କରୁଁ । ଯନ୍ତ୍ର ସତ୍ୟ ଓ ମିଥ୍ୟାକୁ ଅଲଗା କରି ପାରୁଥିଲେ ମଧ ତାହା ଉପଯୁକ୍ତ ପ୍ରମାଣ ଅଭାବରେ ମିଥ୍ୟାରେ ପରିଣତ ହେଇ ଯାଏ । ଆମ ଆଇନ୍ ତାହାରି ଉପରେ ତିଷ୍ଠି ଥାଏ । ସତ୍ୟ ଏକ ପ୍ରମାଣ-ସିଦ୍ଧ କଥା । ତେଣୁ ତୁମେ ଏ ପିଲାଟିକୁ ପ୍ରଥମେ ଜଣେ ଆଇନ୍ ବିଶାରଦ

ପାଖକୁ ନିଅ । ସେ ତାକୁ ପରୀକ୍ଷା କରି, ପ୍ରଥମେ ତାର ସତ୍ୟ ଓ ମିଥ୍ୟା ପ୍ରମାଣିତ ହେଇ ପାରିବ - ଏହି ନ୍ୟାୟରେ ସାର୍ଟିଫିକେଟ୍ ଦେଲେ ଆମେ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବୁ ।

ପିଲାଟିକୁ ଶେଷରେ ଜଣେ ଆଇନ୍ ବିଶାରଦଙ୍କ ଠାକୁ ନିଆଗଲା । ଆଇନ୍ ବିଶାରଦ ପିଲାଟିକୁ ଦେଖିଲେ । ଡାକୁ ଡାକ୍ତର ମଣିଷର ସ୍ୱାସ୍ଥ୍ୟ ପରୀକ୍ଷା କଲା ପରି ପରୀକ୍ଷା କଲେ । ବିଭିନ୍ନ କଥା ପ୍ରସଂଗରେ ତାର ମନ ପରୀକ୍ଷା କଲେ ଏବଂ ଶେଷରେ କହିଲେ ମୁଁ ନିଜେ ମଧ ଜାଣି ପାରୁନାହିଁ ପିଲାର କୋଉଟା ସତ୍ୟ ଓ କୋଉଟା ମିଥ୍ୟା । କାରଣ ଆମ ଆଇନ୍ ଅନୁସାରେ ନ୍ୟାୟାଳୟରେ ଯିଏ ସତ୍ୟ ପ୍ରକାଶ କରେ ତାକୁ ପ୍ରଥମେ ମିଥ୍ୟା ବୋଲି ଗ୍ରହଣ କରାଯାଏ ଏବଂ ତାକୁ କିଛି ଦିନ ପରେ ଆଉ ଥରେ ଆସିବାକୁ କୁହାଯାଏ । ଦ୍ୱିତୀୟ ଥର ଲୋକଟି ଯଦି ସମ୍ପୂର୍ଣ୍ଣ ମିଥ୍ୟା ପ୍ରକାଶ କରେ ତାକୁ ସତ୍ୟ ବୋଲି ଗ୍ରହଣ କରାଯାଏ । ତେଣୁ ଏହି ପିଲାଟିକୁ ପରୀକ୍ଷା କରି ସାର୍ଟିଫିକେଟ୍ ଦେବା ମୋ ପକ୍ଷେ ସମ୍ଭବ ନୁହେଁ ।

ନିରାଶ ହେଇ ଭଦ୍ରଲୋକ ପୁଅକୁ ନେଇ ସେଠାରୁ ଫେରିଗଲେ । ବାଟରେ ବିଧାନସଭା ପଡ଼ିଲା । ବିରାଟ ପ୍ରାସାଦ । ବାପା ପୁଅକୁ ନେଇ ତା ଭିତରକୁ ଚାଲିଗଲେ । ବିରାଟ ହଲ୍‌ଟି ଥିଲା ସମ୍ପୂର୍ଣ୍ଣ ଶୀତତାପ ନିୟନ୍ତ୍ରିତ । ସବୁଠି ସୁନ୍ଦର ଓ କୋମଳ ଗାଲିଚା । ଚାଲିଲା ବେଳେ ଫୁଲର ପାଖୁଡ଼ା ଉପରେ ପାଦ ପଡୁଥାଏ ପରି ଲାଗୁଥାଏ । ଦୁହିଁଙ୍କୁ ଭୋକ ହେଉଥାଏ । ସେମାନେ ପ୍ରଥମେ ଖାଇବାକୁ ଗଲେ । ସେମାନଙ୍କ ପାଖରେବି ବେଶୀ ପଇସା ନ ଥାଏ । ତେଣୁ ଭଲ ଭଲ ଜିନିଷ ଖାଇବାକୁ ଡର ମାଡୁଥାଏ । କିନ୍ତୁ ସେମାନେ ଯେତେବେଳେ ଦେଖିଲେ ମାଂସ ବିରିଆନୀ ସବୁ ପକୁଡ଼ି ଦରରେ ମିଳୁଛି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସେଥିରେ ପେଟେ ଖାଇ ସେମାନେ ହଲ ଭିତରକୁ ଗଲେ । ସେଠି ବହୁତ ଲୋକ ବସିଥାଆନ୍ତି ଏବଂ ଦେଶର ଅବସ୍ଥା ବିଷୟରେ ଆଲୋଚନା ହେଉଥାଏ । ଦଳେ ଦାରିଦ୍ର୍ୟ ପ୍ରବଳଭାବରେ ବଢ଼ି ଗଲାଣି କହିଲା ବେଳକୁ ଆଉ ଦଳେ ଦାରିଦ୍ର୍ୟ ମୋଟେ ନାହିଁ ବୋଲି ଖୁବ୍ ଜୋର୍‌ରେ କହିଲେ ।

ବାପା କହିଲେ ପୁଅରେ ଚାଲ, ସଂଜ ହେଲାଣି ଘରକୁ ଯିବା । ପୁଅ କହିଲା ବ୍ୟସ୍ତ କାହିଁକି ବାପା ! ଭଲ ଆଲୋଚନା ହେଉଚି । ଆହୁରି ଶୁଣିବା । ସଭା ପରେ ଏଇଠି ପୁଣିଥରେ ଖାଇ ଶୋଇ ପଡ଼ିବା । ଘରେ ଯାଇ କଅଣ କରିବା ?

***



ଓଡ଼ିଆ ଗଳ୍ପ ସାହିତ୍ୟରେ ଭୂପେନ୍ ମହାପାତ୍ର ଏକ ଶ୍ରଦ୍ଧାଶୀଳ ତଥା ସୁପରିଚିତ ନାମ। କେବଳ ଗଳ୍ପ ନୁହେଁ– ଉପନ୍ୟାସ, ଭ୍ରମଣ କାହାଣୀ, ପ୍ରବନ୍ଧ, ରମ୍ୟରଚନା ଏବଂ ଅନୁବାଦରେ ମଧ୍ୟ ତାଙ୍କର ସ୍ୱାକ୍ଷର ସୁସ୍ପଷ୍ଟ। ରବୀନ୍ଦ୍ରନାଥଙ୍କ ବିରଳ ୧୦୭ଟି ଚିଠି ଓ ମହାପଣ୍ଡିତ ରାହୁଲ ସଂକୃତାୟନଙ୍କ ଜୀବନୀର ଅନୁବାଦ ସମେତ ଭାରତୀୟ ସାହିତ୍ୟରୁ ବେଶ୍ କିଛି ଚର୍ଚ୍ଚିତ ଗଳ୍ପକୁ ସେ ଓଡ଼ିଆରେ ଅନୁବାଦ କରିଛନ୍ତି।

ତାଙ୍କର ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ଗଳ୍ପ ଲେଖନର ବିଶେଷତ୍ୱ ହେଉଛି ତାଙ୍କ ଗଳ୍ପର ଚରିତ୍ର ଓ କଥାବସ୍ତୁ ସୀମିତ ସୀମା ଭିତରେ ଆବଦ୍ଧ ନ ରହି ବ୍ୟାପିଥାଏ ଦିଗରୁ ଦିଗନ୍ତକୁ। ପ୍ରଗତିଶୀଳତା ତଥା ସାମାଜିକ ବାସ୍ତବବାଦରେ ବିଶ୍ୱାସ ରଖୁଥିବା ଏହି ଲେଖକଙ୍କର ବେଶ୍ କିଛି ଗଳ୍ପ ବହୁ ଭାଷାରେ ଅନୂଦିତ ହୋଇ ଭାରତୀୟ ସାହିତ୍ୟକୁ ସସମ୍ମାନେ ପ୍ରବେଶ କରିପାରିଛି, ଏହାହିଁ ବଡ଼ କଥା। ତାଙ୍କର ଏଯାବତ୍ ପନ୍ଦରଟି ଗଳ୍ପ ସଂକଳନ, ଗୋଟିଏ କବିତା ସଂକଳନ, ପାଞ୍ଚଟି ଉପନ୍ୟାସ, ଦୁଇଟି ଭ୍ରମଣ କାହାଣୀ, ଦୁଇଟି ଅନୁବାଦ, ତିନୋଟି ପ୍ରବନ୍ଧ (ସ୍ତମ୍ଭ) ଓ ଦୁଇଟି ସଂପାଦନା ପୁସ୍ତକ ପ୍ରକାଶିତ।

ଲେଖକ ଜଣେ ସୁପରିଚିତ ସ୍ତମ୍ଭକାର ମଧ୍ୟ। ଓଡ଼ିଶାର ସୁପ୍ରସିଦ୍ଧ ସଂବାଦପତ୍ର-ମାନଙ୍କରେ ତାଙ୍କର ଲେଖା ପ୍ରକାଶ ପାଇ ପାଠକୀୟ ଶ୍ରଦ୍ଧା ହାସଲ କରିସାରିଛି। ଜଣେ ଉତ୍ତମ ସଂଗଠକ ହିସାବରେ ମଧ୍ୟ ସେ ଓଡ଼ିଶା ଓ ଓଡ଼ିଶା ବାହାରେ ପରିଚିତ।

ଆଜି ତାଙ୍କର ବହୁଚର୍ଚ୍ଚିତ ବ୍ୟଙ୍ଗ ଗଳ୍ପକୁ ନେଇ 'ଚର୍ଚ୍ଚିତ ବ୍ୟଙ୍ଗ' ସଂକଳନର ବର୍ଣ୍ଣାଢ୍ୟ ବିଭବକୁ ଆମେ ପାଠକଙ୍କ ଆଗରେ ସାନନ୍ଦେ ଉପସ୍ଥାପିତ କରୁଛୁ।

ପ୍ରକାଶକ



**Publishing House**
Bhubaneswar, Odisha, India
Email : contact@gyanajuga.com
website : www.gyanajuga.com

